ମୋକ୍ଷ ପୁରାଣ—

# ସୂଚିପତ୍ର ।



—› ମୋକ୍ଷ ପୁରାଣ ସୂଚିପତ୍ର ସମାପ୍ତ ।←—

# ମୋକ୍ଷ ପୁରାଣ

ଶ୍ରୀ ଗଣେଶାୟ ନମଃ ।

ଏକଦନ୍ତଂ ମହାକାୟଂ କପିଳଂ ଗଜ କର୍ଣ୍ଣିକଂ ।
ଲମ୍ବୋଦରଂ ଚ ବିକଟଂ ବିଘ୍ନରାଜଂ ନମାମ୍ୟହଂ ॥

* * * * * * * * * * * * * * * * * * * * * * * * * * *

## ବନ୍ଦନା

ନମୋ ନମୋ ନାରାୟଣ ପରଂବ୍ରହ୍ମ ହରି ।
ଏ ଭବସାଗରୁ ନାଥ ମୋତେ କର ପାରି ॥
ନମୋ ନମୋ ନାରାୟଣ ଅଭୟ ଚରଣ ।
ଯେବଣ ପାଦପଦ୍ମକୁ ଭୃତ୍ୟଙ୍କ ଶରଣ ॥
ନମୋ ନମୋ ନାରାୟଣ ଜଗତ କରତା ।
ନମୋ ନମୋ ନାରାୟଣ ଗତି ମୁକ୍ତିଦାତା ॥
ଅପାରୁଁ ଅପାର ନାଥ ତୁମ୍ଭର ମହିମା ।
ଅନ୍ତ କରି ନ ପାରିଲେ ଯାହା ବେଦବ୍ରହ୍ମା ॥
ଈଶ୍ୱରହିଁ ନ ଜାଣନ୍ତି ଯାର ଆଦିଅନ୍ତ ।
ମାନବ ସ୍ତୁତି କହିବା କାହିଁ ସାମରଥ ॥
ହେ ଦୀନବନ୍ଧୁ ତୁ ବାରେ ମୋତେ ଦୟା କର ।
ପଦ ପ୍ରସରିବ ଯେହ୍ନେ ହୃଦରୁ ମୋହର ॥
କାହିଁ ମୋର ଜ୍ଞାନ ଅବା କିସ ଅଛି ବୁଦ୍ଧି ।
ତୁମ୍ଭେ ଅଟ ମହାପ୍ରଭୁ କରୁଣାବାରିଧି ॥
ସକଳ ଜୀବଙ୍କ ହୃଦେ କରିଅଛ ବାସ ।
ଅନାଥର ନାଥ ପ୍ରଭୁ କମଳାବିଳାସ ॥
ଜୟ ଜୟ ଦେବ ତୁମ୍ଭେ ଆର୍ତ୍ତତ୍ରାଣ ହରି ।
ଏହି ଭବଜଳଧିରୁ ମୋତେ କର ପାରି ॥
ତୁମ୍ଭର ବଚନେ ନାଥ ଅଛି ଏ ଜଗତ ।
ତହୁଁ ଉଦ୍ଧାରି ଦେବାକୁ କେହୁ ସାମରଥ ॥
ଯାକୁ ଯେଉଁ ମାର୍ଗ ତୁମ୍ଭେ ଦିଅ ଭବରାଣୀ ।
ସେହ୍ନେ ସେହି ମାର୍ଗ ଦେଇ ଆତଯାତ ହୋଇ ॥
ତାହା ଆନ କରିବାକୁ କେ ଅଛି ସୁଜନ ।
ସକଳ ଲୋକର କର୍ତ୍ତା ଅଟ ଭଗବାନ ॥
ପତିତ ଜନମାନଙ୍କ ଉଦ୍ଧାରିବା ପାଇଁ ।
ପତିତପାବନବାନା ଅଛି ତୁମ୍ଭେ ବହି ॥
ତେଣୁକରିଣ ଭରସା ଅଛଇ ଅପାର ।
ହେବା ନୋହିବାକୁ ତୁମ୍ଭେ କରିବ ବିଚାର ॥
ହେବା ନୋହିବାର ତୁମ୍ଭେ ଜାଣ କୃପାନିଧି ।
ତୁମ୍ଭେ ସିନା ଦେଲ ମୋତେ ଏସନେକ ବୁଦ୍ଧି
ଜାତ ଜାତ ମନରେ ମୁଁ କରଇଁ ବିଚାର ।
ଗୋବିନ୍ଦର ନାମ ଗୋଟି ଅଟଇ ସୁଧାଧାର ॥
ଏହିରୂପେ କୃପା ମୋତେ କର ନାରାୟଣ ।
ଗୀତ ଅର୍ଥରେ କରିବ ତାହା ଉଚ୍ଚାରଣ ॥
ପୁଣି ବିଚାରଇ ମନେ ଜ୍ଞାନ ମୋର ନାହିଁ ।
କିସ ଲେଖିବ ତଦନ୍ତ କିଛି ନ ଜାଣଇ ॥
ଆହେ ସାଧୁଜନେ ମୋର ନ ଧରିବ ଦୋଷ ।
ସର୍ବଦା ଅଟଇ ମୁହିଁ ତୁମ୍ଭ ନିଜ ଦାସ ॥
ତେଣୁ କରିଣ ତୁମ୍ଭଙ୍କ କୃପା ଅନୁରାଗେ ।
ଥୋକେ ଚରିତ୍ର କହିବି କରି ଗୀତ ଛପାଗେ ॥
ସାଧୁଜନେ ନ କରିବ ମୋତେ ଉପହାସ ।
ସୁଜନଙ୍କୁ ସୁଧାସମ ମୂର୍ଖଙ୍କୁ ଏ ବିଷ ॥

ପିଣ୍ଡେ ଜୀବନ ନିଶ୍ଚଳ ହୋଇଅଛି ରହି ।
ବିସ୍ତରିଲେ ଜଳ ବାୟୁ ପୃଥ୍ୱୀ ଅନଳ ॥
ପରମ ମଙ୍ଗଳ ପ୍ରଭୁ ତୁମ୍ଭ ନାମ ଗୁଣ ।
ପଢିଲେ ଶୁଣିଲେ ନରେ ପାଇବେ କାରଣ ॥
ଯାହାଙ୍କୁ ଯୋଗିଏ ଧ୍ୟାନମାର୍ଗେ ସଦା ଚିନ୍ତି ।
ହର ବ୍ରହ୍ମା ଯା ଚରଣେ ସର୍ବଦା ସେବନ୍ତି ॥
ଏମନ୍ତ ଯେ ପ୍ରଭୁଙ୍କର ପାଦସେବା ଛାଡ଼ି ।
ବିଅର୍ଥେ ନ ମର ନରେ ଭବଜଳେ ବୁଡ଼ି ॥
ସେ ମହାପ୍ରଭୁଙ୍କ ପାଦପଦ୍ମେ ମୋ ଶରଣ ।
କହେ ମାଧବ ଈଶ୍ୱର ପ୍ରଭୁ ନାରାୟଣ ॥
ସାଧୁଜନ ମାନଙ୍କର ଚରଣରୁ ଆଶ ।
କରୁଣାଚକ୍ଷୁରେ ମୋତେ ରଖ ତୁମ୍ଭ ପାଶ ॥
ଆହେ ସାଧୁମନ ତୁମ୍ଭେ ପରମ ପ୍ରକୃତି ।
ତୁମ୍ଭଙ୍କୁ ବନ୍ଦଇ ମୁହିଁ କରେଁ ନିତି ନିତି ॥
ଅନ୍ୟ ଅନ୍ୟ ମାର୍ଗେ ମୋତେ ନ ଚଳାଅ ପୁଣ ।
ସୁପନ୍ଥେ ଚଳାଇଲେ ଗୀତ କରିବି ବଖାଣ ॥
ଶ୍ରୀହରିଙ୍କି ଆଜ୍ଞେ କରି ସୁଖେ ଥାଅ ରହି ।
ମୋ ଆଶାକୁ ଅବଗୁଣ କଥିତ ନ ବହି ॥
ରାମ ନାରାୟଣ ବିଷ୍ଣୁ କୃଷ୍ଣ ନରହରି ।
ଏ ନାମକୁ ଆଶ୍ରୟ କରି ଭବୁଁ ହେବି ପାର ॥
ଆହେ ସୁଜ୍ଞଜନେ ମୋର କର ପ୍ରତିକାର ।
ବିନା ଦୋଷେ ନ କରିବ କେବେ ନାରଖାର ॥
ତୁମ୍ଭେ ସଦୟ ଯଦ୍ୟପି ହେବ ଶୁଦ୍ଧଚିତ୍ତେ ।
ଗୋବିନ୍ଦର ଚରିତ୍ର ମୁଁ ଲେଖିବି କଥିତେ ॥
ସଂସାରଜନଙ୍କୁ ତାହା ଜାଣିଣ ହେବ ହିତ ।
ତୁମ୍ଭେ ଦୟା ନ କରିଲେ ନୋହିବ କୃତାର୍ଥ ॥
ବିଷ୍ଣୁଙ୍କର ସେବାକାରୀ ଯେତେ ଋଷିଗଣ ।
ତାହାଙ୍କର ଚରଣେ ମୁଁ ସର୍ବଦା ଶରଣ ॥
ତୁମ୍ଭେମାନେ ଅଟ ଯେଣୁ ଶ୍ରୀହରିଙ୍କ ଦାସ ।
କରୁଣାଚକ୍ଷୁରେ ମୋତେ ରଖ ତୁମ୍ଭ ପାଶ ॥
ଭବତଳରେ ଅଛନ୍ତି ଯେତେକ ବ୍ରାହ୍ମଣ ।
ତାହାଙ୍କ ଚରଣେ ମୁହିଁ ସର୍ବଦା ଶରଣ ॥
ସାକ୍ଷାତେ ଦ୍ୱିଜ ଅଟନ୍ତି ବିଷ୍ଣୁଙ୍କର ଦେହୀ ।
ତାହାଙ୍କୁ ଯେ ସେବା କଲେ ପାପ ନ ରହଇ ॥
ଶୁଦ୍ଧଚିତ୍ତେ ସେବା ମୁହିଁ କରେଁ ନିତି ନିତି ।
ହେ ବିପ୍ରରାଜ ମୋହର ଘେନିବା ଭକତି ॥
ଆହେ ବିଧାତା ତୁମ୍ଭର ସମସ୍ତ ଆୟୁଧ ।
ମୋତେ ଦୟାକର ପ୍ରଭୁ ଜଗତର ତାତ ॥
ତୁମ୍ଭେ ଯେବେ ପ୍ରାଣିକି ହୋଇବ ଅବଳ ।
ଆଉ ନ ରହିବ ତାର କଷ୍ଟ ଅଳ କୂଳ ॥
କିଞ୍ଚିତରେ ଦୟା ମୋତେ କର ଦେବରାଜ ।
ମୋର ସେବା ଘେନି ମୋତେ ଦିଅ ପାଦରଜ ॥
ଗୋବିନ୍ଦର ଚରିତ ଏ ଅଟେ ସୁଧାରସ ।
ଏହା ମୁଁ ଶ୍ରବଣ ପଥେ କରିବଇଁ ଗ୍ରାସ ॥
ଶ୍ରୀକୃଷ୍ଣଙ୍କ ଆଶ୍ରୟରେ ଯାଉ ମୋର ଦିନ ।
ଏହି କୃପାକର ମୋତେ ଚତୁର ବଦନ ॥
ଆହେ ସଦାନନ୍ଦ ସ୍ୱାମି ପାର୍ବତୀର ବର ।
ଯୋଗ ଆରୂଢ ପୂର୍ଣ୍ଣର୍ଷି ଅଟ ଅଜାମର ॥
ହେ ମହାଦେବ ତୁମ୍ଭେତ ଅଟ ମହାଜ୍ଞାନୀ ।
ଅଶେଷ ଲୋକଙ୍କର ଯେ ଅଟ ସୁଖଦାନୀ ॥
ଜଗତ ରକ୍ଷାନିମନ୍ତେ ବିଷ ପାନ କରି ।
କଣ୍ଠରେ ଅର୍ଦ୍ଧଇନ୍ଦୁ ଶିରେ ସୁରେଶ୍ୱରୀ ॥
ପିନାକ ଯେ ପାଶୁପତ ସଂଗ୍ରାମରେ ଧରି ।
ପୃଥ୍ୱୀପାଳ ଚକ୍ରି କଲ ତ୍ରିପୁର ସଂହାରି ॥
ତେଣୁକରି ତ୍ରିପୁରାରି ନାମ ଯେ ତୁମ୍ଭର ।
ଏ ମୋହର କଳୁଷକୁ ଖଣ୍ଡ ଦେବ ହର ॥
ତ୍ରୈଲୋକଙ୍କ ନାଥ ଅଟ ଆହେ ଲୋକେଶ୍ୱର ।
ସୁପ୍ରସନ୍ନ ହୁଅ ବାରେ ଦେବଦେବ ହର ॥
ଶ୍ମଶାନେ ବାସ କର ଭୂତ ପ୍ରେତ ମେଳେ ।
ପୃଥ୍ୱୀ ସଂହାର କର ପୁଣି ଅନ୍ତକାଳେ ॥
ତୁମ୍ଭର ଚରଣତଳେ ରହୁ ମୋର ସେବା ।
ଆହେ ସଦାନନ୍ଦ ସ୍ୱାମି ଶରଣ ରଖିବା ॥



ମନ ଚୈତନ୍ୟ ସମ୍ବାଦ ।

ଏଥୁ ଅନ୍ତରେ ସୁମନ ନାମେ ନରନାଥ ।
ଚଇତନ ପାଦେ ପଡ଼ି କରନ୍ତି ଭକତ ॥
ଆହେ ଚଇତନ ମୋତେ ପ୍ରତିକାର କର ।
କେମନ୍ତେ ତରିବି ମୁହିଁ ଏ ଭବସାଗର ॥
ଏହି ଭବଜଳେ ପଡ଼ି ହଜିଲି ମୋ ଜ୍ଞାନ ।
କେମନ୍ତେ ତରିବ ଏହି ଗହନ କାନନ ॥
ଯେମନ୍ତେ ଜଳରେ ବୁଡ଼ି ମରିଯାନ୍ତି ପ୍ରାଣୀ ।
ନାସା ତାଳୁରେ ଝୋଲକି ଉଠିବାରୁ ପାଣି ॥

ପ୍ରାଣ ଯିବାବେଳେ ସେହୁ ହୁଅଇ ଯେମନ୍ତ ।
ତେତେବେଳେ ରଖିବାକୁ କେହୁ ସାମରଥ ॥
ଗୃହେଁ ଗୃହେଁ ବୟସ ମୋ ହେଉଅଛୁ ଶେଷ ।
ଏ ପିଣ୍ଡରୁ ପ୍ରାଣଗଲେ କରିବ ମୁଁ କିସ ॥
କୁଟୁମ୍ବ ଜଞ୍ଜାଳେ ମୁହିଁ ହରାଇଲି ଜ୍ଞାନ ।
ଧନ ସଞ୍ଚୟେ ରହିଲା ପୁଣି ମୋର ମନ ॥
ପୁତ୍ର ଦାରା ସମ୍ପଦରେ ସଦା ହେଲି ମୋହ ।
ଆତ୍ମାର ଉଦ୍ଧାରପାଇଁ କିଛୁ ନ କଲଇଁ ॥
ସଂସାରରେ ଦେଖିଲି ମୁଁ ବହୁ ଧନବନ୍ତ ।
ବଡ଼ ବଡ଼ ରାଜା ପୁଣି ଆବର ସାମନ୍ତ ॥
ବହୁତ ପ୍ରକାରେ ସେହୁ ଥାଆନ୍ତି ଆଚାର ।
କେହୁ କାହାର ଉପରେ ଅଧିକାର କରି ॥
କେ କାହାକୁ ବଳେ ଛଳେ ଦିଅନ୍ତି ଦଣ୍ଡ ମଣ୍ଡ ।
କିଏ କାହାକୁ ନେଇଣ ଫିଙ୍ଗେ ନର୍କକୁଣ୍ଡ ॥
ଏହା ବିଚାରି ବ୍ୟାକୁଳ ମୋର ସର୍ବମନ ।
ଏଥି ପ୍ରତିକାର ମୋତେ କୁହ ଚଇତନ ॥
ଏତେକ ଦୁଃଖରେ ଯେହୁ ଧନ ସଞ୍ଚିଥିବ ।
ସେ କେମନ୍ତେ ପରଲୋକେ ପ୍ରାପତ ହୋଇବ ॥
କାରପେଷ ଭୁବନ ଯେ ଅଟେ ଯମପୁର ।
ସେଠାବରେ କେହି ନାହିଁ ଶାଖା ସହୋଦର ॥
ସେଠାବରେ କେଉଁମାନେ ହୋଇବେଟି ଶାଖା ।
ଯେଉଁରୂପେ ପ୍ରବେଶିବ ସେହି ମାର୍ଗ ଦେଖା ॥
ଆଗମ ନିଗମ ଆଦି ଶାସ୍ତ୍ର ଅଛି ଯେତେ ।
ଶୁଣିଲି ଶ୍ରବଣେ ସବୁ ନ ରହିଲା ଚିତ୍ତେ ॥
ସକଳ ଜନ୍ତୁରୁ ଅଟେ ନରଜନ୍ମ ସାର ।
ସର୍ବ ଜୀବଙ୍କ ଉପରେ କରେ ଅଧିକାର ॥
ଆପଣା ଜୀବର ଆପେ ନ ଜାଣଇ ଗତି ।
ଅନେକ ପ୍ରକାରେ ପୁଣି କରଇ ଅନୀତି ॥
ସବୁଦିନେ ଜୀଇଥିବା ପରାୟେ ମଣଇ ।
ବଡ଼ିମାପଣ କରିଣ କାହାରି ନ ଗଣଇ ॥
ସାଧୁସଙ୍ଗ ଚରଣରେ ନ କରେ ଭକତି ।
ବନ୍ଧୁ ପ୍ରୀତି ଅର୍ଥେ ପୁଣି ନାହିଁ ଧର୍ମ କୀର୍ତ୍ତି ॥
ଏଣିକବ ମନେ ମନେ ଭାଳଇ ମୋ ମତି ।
କେମନ୍ତ ପ୍ରକାର କରି ତରିବ ଏ ସିତି ॥
ଗୋ ବ୍ରାହ୍ମଣଠାରେ ଭକତି ନ ଥାଇ ଆବର ।
କେମନ୍ତେ ତରିବ ମୁହିଁ ଏ ଭବ ସାଗର ॥

ମାତା ପିତାଙ୍କୁ ମୁଁ ଭ୍ରମେ ନ କଲଇଁ ସେବା ।
ଜନ୍ତୁପତି କେଉଁ ଦଣ୍ଡ ମୋତେ ଦେବ ଅବା ॥
ମୃତ୍ୟୁକର ଆକୁଳରେ ଭାଳଇ ମୋ ମନ ।
ଅବଶ୍ୟ ପିଣ୍ଡରୁ ଦିନେ ଛାଡ଼ିଯିବ ପ୍ରାଣ ॥
ତେତେବେଳକୁ ମୋହର ବୁଦ୍ଧିଅଛି କିସ ।
ଗଳାଦେଶେ ଲାଗିଥିବ ଯମ କାଳପାଶ ॥
ଆପଣାର କଲକର୍ମ ଭୁଞ୍ଜିବ ସେ କାଳେ ।
ନୋହିଲେ କାଟିଣ ପଡ଼ିବ ଘୋର ରସାତଳେ ॥
ତେତେବେଳେ ସବୁ ବୁଦ୍ଧି ହୋଇଯିବ ବଣା ।
ଲମ୍ଫି ହଜାଇ ଯେସନ୍ତେ ହେଉଥାଇ କଣା ॥
ଏ ପିଣ୍ଡରୁ ପ୍ରାଣଗଲେ ସର୍ବଗଲା ସରି ।
ପରହୋଇ ଏଥେଁ କିଛି ନାହିଁନା କାହାରି ॥
ଏଣୁ କାରଣ ମୁହିଁ ଯେ ବିଚାରଇ ମନ ।
ଶ୍ରୀଗୋବିନ୍ଦଙ୍କର ନାମ ଅଟେ ମୋକ୍ଷପାନ ॥
ଶ୍ରୀହରି ଚରିତକୁ ମୁଁ ଗୀତ କୃତ୍ୟ କଲି ।
ସଂସାରରେ ଥିବ କେହି ଦିନାକେତେ ବୋଲି ॥
ଏମନ୍ତ ବିଚାର କଲି ମନରେ ମୋହର ।
କିସ ମୁଁ ଲେଖିବି ମୋତେ ନୁହଇ ଗୋଚର ॥
ପୁଣି ବିଚାରେ କହିବେ ମୋତେ ଭଗବାନ ।
ସେହୁ ସିନା ବୁଦ୍ଧି ମୋତେ ଦେଲେକ ଏସନ ॥
ସେ ପ୍ରଭୁ କରିବେ ଯେବେ ମୋତେ ଅନୁରାଗ ।
ତାହା ମୁଁ ଲେଖିବି ସିନା କରି ଗୀତ ଯୋଗ ॥
ମୋହର କୃତ୍ୟରେ କାହିଁ କରିବ ବଖାଣ ।
ହେବା ନୋହିବା ଜାଣନ୍ତି ପ୍ରଭୁ ନାରାୟଣ ॥
ଏତେ ବିଚାରି ମନରେ କରିଲି ମୁଁ ଦମ୍ଭ ।
ଦରିଦ୍ର ଯେସନେ କରେ ଯାଗକୁ ଆରମ୍ଭ ॥
ତେସନ ପରକାରରେ ହେଲା ମୋର ମତି ।
ଏତେ ବିଚାରି ସ୍ମରଣ କଲି ଦାଶରଥି ॥
ବାତୁଳ ପ୍ରକାରେ ହୋଇ ଲେଖେ କିସ କିସ ।
ଆହେ ଜ୍ଞାନ ବୃଦ୍ଧମାନେ ନ ଧରିବ ଦୋଷ ॥
ଏଥୁଅନନ୍ତରେ ତହୁଁ କହନ୍ତି ଚୈତନ୍ୟ ।
ସାବଧାନ ହୋଇ ଏବେ ଶୁଣ ହୋ ସୁମନ ॥
ଅନ୍ୟ ଉତ୍କଳଦେଶ ଏହିଛି ଗୋବର୍ଦ୍ଧନ କୃପାରେ ।
ଯାହା ମୁହିଁ କହୁଅଛି ଶୁଣ ମନସ୍ଥିରେ ॥
ଶ୍ରୀହରିଙ୍କ ନାମଟିଏ ସଂସାରରେ ସାର ।
ଅମୂଲ୍ୟ ରତନ ଏହୁ ଜୀବେ ପ୍ରତିକାର ॥

ପରମଧନ ଏ ନାମ ଜୀବ ପାଏ ଗତି ।
ଏ ଧନ ଘେନି ବଣିଜ କରେ ଯେହୁ ନିତି ॥
ସେହି ଯେ ସଂସାର ମଧ୍ୟେ ଅଟଇ ମହାଜନ ।
ସଂସାରେ ତାର ଜୀବନ ଅଟଇ ଧନ୍ୟ ଧନ୍ୟ ॥
ଏ ଧନ ଘେନିଣ ମନ ବଣିଜ ତୁ କର ।
ସକଳ ପାପର ବାଧା ହୃଦୟରୁ ହର ॥
ଅତଏବ ଧନ ଏହୁ ସେ କେବେହେଁ କ୍ଷୟ ନୋହି ।
ଜଳ ସ୍ଥଳ ସର୍ବଠାରୁ ସର୍ବ ଉଦ୍ଧରଇ ॥
ଏ ଧନରୁ ଗଢ଼ିଅଛି ସଦା ସୁଧାରସ ।
ଶୁଦ୍ଧମତେ ବସି ଏହା କର ତୁହି ଗ୍ରାସ ॥
ସର୍ବବେଦ ବିଦ୍ୟା ପୁଣି ଆଉ ଶାସ୍ତ୍ର ଯେତେ ।
ନାମକୁ ଆଶ୍ରୟ କରି ଅଛନ୍ତି ସମସ୍ତେ ॥
ନାମ ନ ଥିଲେ ଶାସ୍ତ୍ର ଅଟଇ ଅକାରଣ ।
ଲବଣ ବିନା ଅଲୁଣା ତିଅଣ ସମାନ ॥
ଗଣିକାର ନୃତ୍ୟ ବୋଲି ଏହା ଜାଣ ତୁହି ।
ଏଥିରେ ରସଇ ଯେହୁ ଅକାରଣ ସେହି ॥
କଳ୍ପନାରେ ଦ୍ରବ୍ୟ ନାନା ହୋଇବ ପ୍ରାପତ ।
ସ୍ୱପନରେ ଧନ କାହିଁ ହୋଇବ ବିଗତ ॥
ଧନ ନ ଥାଇଣ ଯେହୁ ବୋଲେ ଧନୀ ମୁହିଁ ।
ଆପଣା ବଡ଼ମାପଣ ଆପେ କହୁଥାଇ ॥
ଭିକ୍ଷାଶୀପାତ୍ରେ ଯେ ଭିକ୍ଷା କେବେହେଁ ନ ଦଅନ୍ତି ।
ଭଲ ବୋଲିଣ ତାହାକୁ ନ ବୋଲନ୍ତି କେହି ॥
ଏହି ସର୍ବ କଥାମାନ ଅଟଇ ବିଅର୍ଥ ।
କୃଷ୍ଣ ଆଶ୍ରେ ନ ଥିଲେ କି ଛାର ଧନବନ୍ତ ॥
ଅନ୍ୟ ଅନ୍ୟ ମାର୍ଗରେ ଯେ ବହୁ ଶାସ୍ତ୍ର ଅଛି ।
ଏଥିରେ କାରଣ ହୋଇ ନ ଥାଇଛି କିଛି ॥
ଏଥିକୁ ତୋହର ମନେ ବିଚାର ତୁ ମନ ।
ରସିଲେ ଅବଶ୍ୟ ନର୍କେ ହୋଇବୁ ପତନ ॥
ପରମବ୍ରହ୍ମ ଅଟନ୍ତି ଯେଉଁ ନରହରି ।
ତାହାଙ୍କୁ ଆଶ୍ରେ କରିଲେ ଭବୁ ହେବୁ ପାରି ॥
ସେ ପ୍ରଭୁ ଯାହାଙ୍କ ପ୍ରତି ହେବେ ଅନୁରାଗ ।
କଷ୍ଟିକରେ ଦୟାକଲେ ଐଶ୍ୱର୍ଯ୍ୟ ଭୋଗ ॥
ଏବେ ହୋ ସୁମନ ତୁହି କୃଷ୍ଣ ପାଦ ଭଜ ।
ଅସଦମାର୍ଗ ସକଳ ହୃଦୟରୁ ତେଜ ॥

## ସଙ୍ଗଗୁଣରେ ଭଲ ମନ ଶିକ୍ଷା ।

ଶୁଣି ସୁମନ ବୋଲଇ ଚୈତନ୍ୟ ଅଗ୍ରତ ।
ଅସଦମାର୍ଗ ବୁଝାଇ କହିବା ଯଥାର୍ଥ ॥
ଅସଦମାର୍ଗର କଥା ମୋତେ କୁହ ସେହି ।
ଯେମନ୍ତେ ସଂଶୟ ମୋର ହୃଦରୁ ଯିବ ଛାଡ଼ି ॥
ଚୈତନ୍ୟ ବୋଇଲେ ଏହି କଥା ଅଟଇ ସତ ।
ଉତ୍ତମସଙ୍ଗ ହୋଇଲେ ହୁଅନ୍ତି ଗୁଣବନ୍ତ ॥
ଉତ୍ତମ ଗତିକି ସେହୁ ଲଭେ ଅନ୍ତକାଳେ ।
ଅସଦର ମାର୍ଗେ ଗଲେ ପଡ଼େ ଅନ୍ତରାଳେ ॥
ପରମବ୍ରହ୍ମ ଅଟନ୍ତି ଯେଉଁ ନାରାୟଣ ।
ତାଙ୍କ ପାଦରେ ସର୍ବଦା ଯେ ପଶେ ଶରଣ ॥
ବିଷ୍ଣୁଙ୍କ ପ୍ରୀତି ଅର୍ଥରେ ସବୁ କର୍ମ କରେ ।
ତେବେ ସେହି ଲୋକମାନେ ଭବୁ ଯାନ୍ତି ତରି ।
ନନ୍ଦନରେ ମତ୍ସର ଅଟଇ ଯେଉଁ ନର ।
ନିତି ଜନ୍ତୁ ମାରି ଯେହୁ କରେ ଆହାର ॥
ନିତି ଯେହୁ ପରଦ୍ରବ୍ୟ ଆଣେ ଚୋରି କରି ।
ଦେଖି ନ ସହଇ ଯେହୁ ପରଲୋକ ଶିରୀ ॥
ପରକୁ ଯେ ନିନ୍ଦା ବାଦ କରୁଥାଇ ବସି ।
ଅଳସୁଆ ପଣେ ଯେହୁ ନ କରଇ କୃଷି ॥
ପରନାରୀ ପର ପୀଡ଼ା କରି ନିଏ ଧନ ।
ସୁଭକ୍ଷ କରି ଅତିଥିକୁ ଯେ ନ ଦିଏ ଅନ୍ନ ॥
ପରକୁ ପ୍ରମାଦ ଯେହୁ ଚିନ୍ତୁଥାଇ ନିତ୍ୟେ ।
ତାର ଉପରେ ପତନ ହୁଅଇ ତୁରିତେ ॥
ଏମନ୍ତ ଲୋକସଙ୍ଗରେ ଦଣ୍ଡେ ନ ବସିବ ।
ବସିଲେ ଅବଶ୍ୟ ତହିଁ ବିରୋଧ ହୋଇବ ॥
ଏମନ୍ତ ଲୋକମାନଙ୍କୁ ବୋଲନ୍ତି ଦୁର୍ଜନ ।
ଏହାଙ୍କ ସଙ୍ଗେ କଦାଚ ନ ବସିବୁ ମନ ॥
ସୁସଙ୍ଗ ପାଇଲେ ଶୁଦ୍ଧ ବୁଦ୍ଧି ହୁଏ ଜାତ ।
ଖଳସଙ୍ଗରେ ବସିଲେ ହୁଏ ଖଣ୍ଡ ମତ ॥
ଏଥିକୁ ସୁମନ ଆହେ କହୁଅଛି ଶୁଣ ।
ସଙ୍ଗଗୁଣରେ ହୁଅଇ ଏମନ୍ତ ଲକ୍ଷଣ ॥
ବନେ ଏକ ବେଣ୍ଟକାର ବୁଲେ ବେଣ୍ଟ କରି ।
ଦୁଇଗୋଟି ଶୁଆପୁଅ ଆଣିଲା ସେ ଧରି ॥
ବନସ୍ତ ଭିତରେ ଥିଲେ ଗୋଟିଏ ଗୋସାଇଁ ।
ମଠ ବାନ୍ଧି ଏକାଗୋଟି ତପସ୍ୟା କରଇ ॥

ସୁରଗୋଷ୍ଠ ଶିଷ୍ୟ ପୁଣି ଥିଲେ ତାହାଙ୍କର ।
ଏହିରୂପେ କଶ୍ଚିନ୍ତରେ ଥାନ୍ତି ମୁନିବର ॥
ଯେ ଅବା ଆସନ୍ତି ତହିଁ ଅତିଥି ଉଦାସୀ ।
କୋମଳ କନ୍ଦ ରଖନ୍ତି ଅତିଯତ୍ନ କରି ॥
ସବୁଙ୍କୁ ଚର୍ଚ୍ଚାକରନ୍ତି ମନ କରି ତୋଷ ।
ତାହାଙ୍କ ଧର୍ମ କହିଲେ ନ ହୁଅଇ ଶେଷ ॥
ବିଷ୍ଣୁଙ୍କ ଭକ୍ତ ଅଟନ୍ତି ସେହୁ ସାଧୁଜନ ।
ଯେତେତେହେଁ ବ୍ୟୟ କରିଲେ ନ ସରଇ ଧନ ॥
ତେଣୁକରି ସେମାନେ ଅଭ୍ୟାଗତେ ଦେଇ ।
ଏଥୁଅନ୍ତରେ ସୁମନ ଶୁଣ ମନଦେଇ ॥
ସେ ମଠ ବାହାରୁ ହେବ ପାଞ୍ଚକୋଶ ଦୂର ।
ଘର କରି ରହିଥାଏ ତହିଁ ଏକ ଚୋର ॥
ଜାତ ବାଟ ଲୋକ ପିଟି ଆଣଇ ସେ ଧନ ।
ଆଉ ଦିବସକୁ ତାର ନ ଥାଇଟି ଅନ୍ନ ॥
ଯେ ଅବା ଦୈବଯୋଗେ ମାର୍ଗରେ ମିଳଇ ।
ତାହାର ସର୍ବ ପଦାର୍ଥ ରଖଇ ଛଡ଼ାଇ ॥
କିଅବା ତାହାକୁ ନେଇ ମାରେ ଜୀବନରେ ।
ଏହିରୂପେ ପ୍ରତିଦିନ ପରଦ୍ରବ୍ୟ ହରେ ॥
ଧର୍ମ କାହାକୁ ବୋଲନ୍ତି ନ ଜାଣେ ସେ ଲେଶ ।
ସୁସ୍ଥହୋଇ ନ ଭୁଞ୍ଜଇ ନ ମିଳଇ ଗ୍ରାସ ॥
ଯେଉଁଦିନ ମିଳେ ତାକୁ ସେଦିନ ଭୁଞ୍ଜଇ ।
ନ ମିଳିଲେ ଦିନ ସେହୁ ଉପାସେ ରହଇ ॥
ଧର୍ମ ନ ଥିଲେ ମନରେ ନ ରହଇ ଧନ ।
~~ବାଲୁକାଳ~~ରେ ମନ ଉଦକ ଯେସନ ॥
ବାଟ ପିଟା ଧନ ତାର ରହିବ ବା କାହିଁ ।
ବାଲିରେ ପାଣି ଢାଳିଲେ ଯେସନେ ନାଶ ଯାଇ
ଧର୍ମବଳ ଦେଖ ମନ ବାଲି ବୁଆ ପାଣି ।
ଯେତେତେହେଁ ତେଣିଲେ କେବେ ନ ସରଇ ଜାଣି
ଏଣୁକରି ସାଧୁଙ୍କର ଧନେ ନାହିଁ ଲୋଭ ।
ଧର୍ମକୁ ସେ ଆଶ୍ରେକରି ରହିଥାନ୍ତି ସର୍ବ ॥
କେବେହେଁ ତାହାଙ୍କର ଯେ ନ ଗୁଟଇ ଧନ ।
ସର୍ବଦା ଦୟାକରନ୍ତି ତାଙ୍କୁ ଭଗବାନ ॥
ଏଥୁଅନନ୍ତରେ ଭୁହ ଶୁଣ ମନ ବୀର ।
ସେ ଶୁଆପକ୍ଷୀ ବିକିଲ ନେଇଣ ଚୋର ॥
ସେ ବନ ଭିତରେ ଯେଉଁ ଖଣ୍ଡ ଥିଲ ରହି ।
ତାଠାରେ ବିକିଲା ଏକଗୋଷ୍ଠ ଶୁଆ ନେଇ ॥

ଆଦର ଶୁଆ ଗୋଟିକ ଘେନିଣ ସେ ଗଲି ।
ବନ ବୈଷ୍ଣବମଠରେ ନେଇଣ ବିକିଲି ॥
ଧନ ଘେନି ଫେରିତ ଗଲି ନିଜ ବାସ ।
ଏଥୁଅନନ୍ତରେ ଭୁହ ଶୁଣ ମନଈଶ ॥
ବୈଷ୍ଣବଗୋସାଇଁ ଶୁଆ ପକ୍ଷୀ ତିଆରିଲେ ।
ଶ୍ରୀରାମ ନାମ ଗୋଟିକୁ ରଟ ତୁ ବୋଇଲେ ॥
ତତକ୍ଷଣେ ଶୁଆପକ୍ଷୀ ରାମନାମ ରଟି ।
ସେକ୍ଷଣି ଅମୃତରସ କରିଲାକ ବୃଷ୍ଟି ॥
ଏଥୁଅନନ୍ତରେ ଭୁହ ଶୁଣ ରେ ସୁମନ ।
ଏମନ୍ତ ହୋଇଣ ତହୁଁ ଗଲା କେତେଦିନ ॥
ଚନ୍ଦ୍ରଜିତ ନାମଧାରୀ ଏକ ନୃପବର ।
ପାରିଧି ଅର୍ଥେ ଚଳିଲ ଘେନି ସୈନ୍ୟ ତାର ॥
ମହାଘୋର ଅରଣ୍ୟରେ ପଶିଲାକ ଯାଇ ।
ଜଗିଲେ ସମସ୍ତ ସୈନ୍ୟ ଜାଲ ବାଡ଼ଦେଇ ॥
ପଛରେ ଥୋକାଏ ବଳ ଆଣିଲେକ ରାଜା ।
ଲୋଧା କାହୁଣିଆ ମାନେ କଲେ ହାଲିହୁଲି ॥
ଅଶ୍ୱ ଆରୋହଣ କରି ରାଜା ଚନ୍ଦ୍ରଜିତ ।
ଲତା ଉହାଡ଼ରେ ଯାଇ ହୋଇଲା ଗୁପତ ॥
ସେହିବାଟରେ ଅଇଲା ଏକଇ ସମ୍ବର ।
ଦେଖି ବେଗରେ ଧାଇଁଲା ତହୁଁ ନୃପବର ॥
ପଳାଇଯାନ୍ତେ ସମ୍ବର ଗୋଡ଼ାନ୍ତି ନୃପତି ।
ଥୋକେ ବଳ ଲଗିଛନ୍ତି ରାଜା କତି କତି ॥
କେତେଦୂର ଯାଇ ସୈନ୍ୟ ପଥ ବଣାହେଲେ ।
ନୃପତିଙ୍କି ନ ଦେଖିଣ କେ କେଣିକି ଗଲେ ॥
ସେ ସମ୍ବର ପଛେ ପଛେ ଧାଇଁ ନୃପବର ।
କେତେହେଁକ ଦୂରେ ଯାଇ ହୋଇଲା ବାହାର ॥
ସମ୍ବରକୁ ନ ଦେଖିଣ ଫେରେ ମହୀପାଳ ।
ଦେଖିଲା ପଛେ ନାହାନ୍ତି କିଛି ସୈନ୍ୟବଳ ॥
କାତର ହୋଇଣ ରାଜା ଆସେ ବେଗହୋଇ ।
ସେ ବନଭିତରେ ଖଣ୍ଡ ଯହିଁ ଥିଲ ରହି ॥
ସେଠାରେ ପ୍ରବେଶ ହେଲ ଘରମ ଅଙ୍ଗ ଫୁଟି ।
ସେହି ଖଣ୍ଡ ରଖିଥିଲ ତପୋବଣ ଶୁଆଟି ॥
ଦେଖି ନୃପତିଙ୍କ ଶୁଆ [illegible] ମୁନି ।
ଦେଖାଯାଏ ଏହା ଅଙ୍ଗେ ଅଛି ବିନ୍ଦୁ-ଜନ ॥
ଦୈବ ଭେଟାଇଲ ଆଣି ମୋତେ ଏକାଧର ।
ଏବେ ଭକ୍ତର ସାହାକୁ ଡାକେ ଆଣ୍ଟୁକରି ॥

ବୋଇଲା ସାଧୁ ତୁମ୍ଭେ ହେ ଆସ ବେଗେ ହୋଇ ।
ଏହାକୁ ମାରିଣ ଧନ ରଖିବା ଛଡ଼ାଇ ॥
ଏ ବହୁତ ଅଳଙ୍କାର ହୋଇଛି ମଣ୍ଡି ।
ଏକାକରିଣ ଦଇବ ଭେଟାଇଛି ଆଣି ॥
ପଳାଇଣ ଯିବ ଯାକୁ ବେଗେ ଆସି ଧର ।
ଛଡ଼ାଇବ ଏହାଠାରୁ ରତ୍ନ ଅଳଙ୍କାର ॥
ଏମନ୍ତ କହିଣ ଶୁଆ ଡାକେ ଘନ ଘନ ।
ଏକଥା ଶୁଣି କାତର ହୋଇଲେ ରାଜନ ॥
ତୃଷା ଆରତରେ ତାଙ୍କ ଅଙ୍ଗେ ବଳନାହିଁ ।
କେଉଁବାଟେ ଯିବ ବୋଲି ବୁଦ୍ଧି ନ ଦଶଇ ॥
ଅବଶ୍ୟ ଏଠାରେ ଆଜ ହରାଇଲି ପ୍ରାଣ ।
ଏ ବାଟରେ ଅଇଲି ମୁଁ ହୁଡ଼ି ଅକାରଣ ॥
ଶୁଆପକ୍ଷିର ଆଖିକି ଦିଶିଲଣି ମୁହିଁ ।
ଏବେ ଅଳଙ୍କାର ମୋର ରଖିବ ଛଡ଼ାଇ ॥
କିଅବା ସତ୍ୱରେ ମୋତେ କରିବ ଏ ହତ ।
ଏଠାରୁ ପଳାଇ ମୁହିଁ ଗସିବ କେମନ୍ତ ॥
ଏ ଶୁଆର ଡାକ ଶୁଣି କମ୍ପୁଛି ମୋ ପିଣ୍ଡ ।
ଖଣ୍ଡେ ଦେଖିଲେ ମୋହର ଫଟାଇବ ମୁଣ୍ଡ ॥
ଆହେ ଦୀନବନ୍ଧୁ ମୋତେ କରିବା ଉଦ୍ଧାର ।
ଏତେବୋଲିଣ ରାଜନ ଯାଏ ଖରତର ॥
ଅରଣ୍ୟରେ ପୁଣି ରାଜା ପଳାଇଣ ପଶି ।
ହୃଦୟ ପଦ୍ମମଧ୍ୟରେ ଚିନ୍ତି ବ୍ରହ୍ମରାଶି ॥
ସେ ମହାପ୍ରଭୁଙ୍କୁ ଚିନ୍ତି ଅତ୍ୟନ୍ତ ସରାଗେ ।
ବୈଷ୍ଣବମଠେ ପ୍ରବେଶ ହେଲା ଦୈବଯୋଗେ ॥
ସେଠାରେ ପ୍ରବେଶ ଆସି ହେଲେ ନୃପବର ।
ଦଣ୍ଡଘଡ଼ି ବେଳ ହୋଲେ ଅଙ୍ଗ ଜର ଜର ॥
ସେ ମଠରେ ଥିଲା ମନ ଯେବଣ ଶୁଆଟି ।
ତକ୍ଷଣେ ଡାକିଲା ଦେଖି ନୃପ ମୁଖ ଗୋଟି ॥
ବୋଇଲା ଆହେ ବାବାଜି ଆସ ବେଗ ହୋଇ ।
ଅତିଥି ବିଜେ କଲେଣି ଅଙ୍ଗେ ଜ୍ଞାନ ନାହିଁ ॥
ବହୁତ କ୍ଷୁଧାର୍ଥୀ ଯାଙ୍କୁ ପାଣି ପଣା ଦେବା ।
ବେଗେ ଆସି ଅତିଥିଙ୍କୁ ଆଗେ କର ସେବା ॥
ଶୁଆଠାରୁ ନୃପବର ଏହିବାକ୍ୟ ଶୁଣି ।
ଦରିଦ୍ର ଧନ ପାଇଲା ପରାଏକ ମଣି ॥
ନିର୍ଭୟ ହୋଇ ରାଜନ ବସିଲେ ତହିଁ ।
ଶୁଆ ବାକ୍ୟ ଶୁଣି କରି ଆଇଲେ ଗୋସାଇଁ ॥

ନୃପତି ପାଶରେ ଯାଇଁ ହୋଇଲେ ପ୍ରବେଶ ।
ଉଠି ନମସ୍କାର କଲା ତାହାଙ୍କୁ ନରେଶ ॥
ଗୁରୁଶିଷ୍ୟ ଋଷିପାଶେ ମିଳିଲେକ ଯାଇଁ ।
ତାହାଙ୍କୁ ଗୃହିଣୀ ତହୁଁ ବୋଇଲେ ଗୋସାଇଁ ।
ଆଣ ଫଳ ମୂଳ ଆଉ ବିଳମ୍ବ ନ କର ।
ଆଜ୍ଞାପାଇଣ ଧାଇଁଲେ ସେ ଗୁରୁ କୁମର ॥
ନରପତିର ଚର୍ଯ୍ୟା କଲେ ବେଗେ ଆଣି ।
ତକ୍ଷଣେ ସେ ନୃପବର ଭୁଞ୍ଜି ଅନ୍ନ ପାଣି ॥
ମଣୋହି ସାରି ବସିଲେ ଅତି ସୁସ୍ଥ ହୋଇ ।
ରାଜାର ମୁଖକୁ ଚାହିଁ ବୋଲନ୍ତି ଗୋସାଇଁ ॥
କେଉଁ ଦେଶେ ବାସ ତୁମ୍ଭ କି କାର୍ଯ୍ୟେ ଆସିଛ
ସଙ୍ଗତରେ କେହିନାହିଁ ହେବ ରାଜବସ୍ତୁ ॥
ନୃପତି କହିଲା ତହୁଁ ଯାବତ ବିଧାନ ।
ମୃଗୟା ନିମନ୍ତେ ଆମ୍ଭେ ଆସିଥିଲୁ ବନ ॥
ସମ୍ବର ଗୋଟାଏ ଯହୁଁ ଗଲା ମୋର ଆଗେ ।
ତାହାକୁ ମାରିବାପାଇଁ ଗଲି ମୁହିଁ ବେଗେ ॥
ସୈନ୍ୟବଳ ଆଦି ମୋର ରହିଲେ କେ କେଉଁଠେ
ଏକା ହୋଇକରି ମୁହିଁ ପଶିଲଇଁ ବଣେ ॥
ସମ୍ବର ଗଲା କେଣିକି ନ ଦେଖିଲି ମୁହିଁ ।
ତେଣୁକରି ଗୋସାଇଁ ମୁଁ ଅଇଲି ଏଠାଇଁ ॥
ଏହି ବନରେ ଦେଖିଲି ଏକ ଗୃହ ଅଛି ।
ସେ ସ୍ଥାନରେ ଅଛି ପୁଣି ଏକ ଶୁଆପକ୍ଷୀ ॥
ଦୂରରୁ ସେ ପକ୍ଷୀ ମୋତେ ଦେଖିଲେକ ଯହୁଁ ।
ଆନନ୍ଦକରି ତା ସାଧୁଙ୍କୁ ଡାକିଲେକ ତହୁଁ ॥
ଅଳଙ୍କାରରେ ଭୂଷିତ ହୋଇକରି ଜଣେ ।
ଦଇବ ଭେଟାଇଅଛି ଆଣି କରି ଏଣେ ॥
ଆସ ଆସ ଆହେ ସାଧୁ ବିଳମ୍ବ ନ କର ।
ଛଡ଼ାଇ ନେବା ଯା ଧନ ଯାକୁ ପ୍ରାଣେ ମାର ॥
ଏହା ଶୁଣି ମନେ ମୁହିଁ ଅତିଭୟ ପାଇ ।
ସେ ସ୍ଥାନରୁ ଅତିକଷ୍ଟେ ଅଇଲି ପଳାଇ ॥
ତୁମ୍ଭ ଭୁବନରେ ଅଛି ଏ ଯେଉଁ ଶୁଆଟି ।
ତୁମ୍ଭଙ୍କ ଡାକିଲା ମୋତେ ଦୂରୁ କରି ଦୃଷ୍ଟି ॥
ଅତିଥି ଆସିଲେଣି ହୋ ବେଗେ ଚର୍ଚ୍ଚାକର ।
ବିଳମ୍ବ ନ କରିଣ ଯେ ଆସ ତତପର ॥
ତାହା ଶୁଣି ବେଗେ ତୁମ୍ଭେ କଲ ଆଗମନ ।
ଚର୍ଯ୍ୟା କରି ରଖିଲ ମୋହର ଜୀବନ ॥

ଧନ୍ୟ ଧନ୍ୟ ଏ ପକ୍ଷୀଟି କେତେଡ଼ ଗୁଣବନ୍ତ ।
ଏହିପରି ଗୁଣବନ୍ତ ନ ଥିବେ ଜଗତ ॥
କ୍ଷୁଧା ତୃଷା ଯୋଗେ ଉଡ଼ି ଯାଉଥିଲା ମୋ ସାହସ ।
ଏ ପକ୍ଷୀବଚନ ଅଟେ ସୁଧାମୟ ରସ ॥
ଶୁଣିବା ମାତ୍ରକେ ପ୍ରାଣ ହୋଇଲା ଭୂପତି ।
ଏ ଶୁଆପକ୍ଷୀ ତୁମ୍ଭର ଅଟଇ ଭାଗ୍ୟବନ୍ତ ॥
ଖଣ୍ଟି ଶୁଆ ନେଉଥିଲା ଜୀବନ ମୋହର ।
ବିଧାତାର ବଳେ ମୁହିଁ ହୋଇଲି ଉଦ୍ଧାର ॥
ଧିକ ଧିକ ସେ ଶୁଆକୁ ଏତେଡ଼ ଦୁଷ୍ଟମତି ।
ଏମନ୍ତ ପ୍ରକାରେ ନିନ୍ଦା କରନ୍ତେ ନୃପତି ॥
ବାବାଜୀର ଶୁଆ ଶୁଣି କହିଲା ରାଜାଙ୍କୁ ।
କାହିଁପାଇଁ ନିନ୍ଦା କର ଖଣ୍ଟିର ଶୁଆକୁ ॥
ତାକୁ ନିନ୍ଦା କର ମୋର ସ୍ତୁତି ଅକାରଣ ।
ଯେମନ୍ତ ସଙ୍ଗରେ ଥିବ ମିଳେ ସେହି ଗୁଣ ॥
ସେହି ବାଟପିଟା ଖଣ୍ଟି କରେ ନିତି ଯାହା ।
ଦେଖି ଶୁଣି ସେ ପକ୍ଷୀଟି ଶିଖିଅଛି ତାହା ॥
ତେଣୁକରି ତାର ଏମନ୍ତ ଦୁଷ୍ଟ ଆଚରଣ ।
ସାଧୁସଙ୍ଗ ଲଭି ମୋର ହୋଇଲା ସାଧୁଗୁଣ ॥
ତାହା ଶୁଣି ନୃପବର ହୋଇଲେ ଆନନ୍ଦିତ ।
ମୋକ୍ଷପୁରାଣ ମାଧବ କହେ କରି ଗୀତ ॥



ଜୀବର କର୍ତ୍ତବ୍ୟାକର୍ତ୍ତବ୍ୟ ଧର୍ମ ।

ମନ ପଚାରଇ ପୁଣି ଚୈତନ୍ୟ ଆଗରେ ।
ମୁନି ନୃପ କେଉଁକଥା ହେଲେ ପରସ୍ପରେ ॥
କହନ୍ତି ଚଇତନ ତୁ ଶୁଣ ମନ ସ୍ଥିରେ ।
ରାଜାଙ୍କ ଗୃହିଣୀ ମୁନି କହନ୍ତି ସଧୀରେ ॥
ଆମ୍ଭ ଶୁଆ ଯାହା ତୋତେ କହିଲା ରାଜନ ।
ତାହାତ ଆପଣେ ତୁହି ଶୁଣିଲୁ ସେମାନ ॥
ଖଣ୍ଟିର ଶୁଆ ତୋହର ନେଉଥିଲା ପ୍ରାଣ ।
କେତେଭାଗ୍ୟରେ ବଞ୍ଚିଲୁ ତୁହି ନରରାଣ ॥
ମୋର ଶୁଆଠାରୁ ରାଜା ତୁ ଅଟୁ ଅଜ୍ଞାନ ।
କାହିଁ ମାରୁ ବନାଶ୍ରିତ ଜୀବଜନ୍ତୁ ମାନ ॥
ସେମାନେ କରନ୍ତି କାହିଁ ତୋର ଶତ୍ରୁପଣ ।
ତାଙ୍କୁ ମାରିବାର ତୋର ଅଟେ ଅକାରଣ ॥
ତେଣୁକରି ତୋହରତ ପ୍ରାଣ ଯାଉଥିଲା ।
ଆମ୍ଭଙ୍କୁ ଭେଟିଲୁ ତୋର କେତେଭାଗ୍ୟ ଥିଲା ॥

ଶୁଣିକରି ନର ଯୋଡ଼ି କହନ୍ତି ନରପାଇଁ ।
କ୍ଷତ୍ରିୟଙ୍କ ଧର୍ମ ବୋଲି ଶାସ୍ତ୍ରେ ଅଛି କହି
ରାମଚନ୍ଦ୍ର ମହାପ୍ରଭୁ ଅରଣ୍ୟରେ ପଶି ।
ମୃଗ ଶମ୍ବର ଶିକାର କରୁଥିଲେ ରସି ॥
ମହା ମହା ଜନମାନେ କରନ୍ତି ଯାହା ।
ତେଣୁକରି ଆମ୍ଭେମାନେ କରୁଅଛୁ ତାହା ॥
ମୁନି କହୁଛନ୍ତି ପୁଣି ଶୁଣ ଦଣ୍ଡଧାରି ।
ବଡ଼ଲୋକମାନେ ସବୁ ପାରନ୍ତି ଯେ କରି ॥
ସେହି ରାମଚନ୍ଦ୍ର ଯେଣୁ ବ୍ରହ୍ମାଣ୍ଡଠାକୁର ।
ମରିବା ପ୍ରାଣୀ ଯାଆନ୍ତି ଆଜ୍ଞାରେ ଯାହାର ॥
ଉଦ୍ଧାର କରିବା ପାଇଁ ପୃଥିବୀର ଭାର ।
ମାନବରୂପେ ଜନ୍ମିଲେ ଦେବ ଚକ୍ରଧର ॥
ଭକତର ଅଭିଶାପେ ଭକତ ବତ୍ସଳ ।
ନାନାବିଧ ସ୍ୱରୂପେ ଜାତ ଏ ମହୀମଣ୍ଡଳ ॥
ତେଣୁ ସେହି ରାମଚନ୍ଦ୍ର ତାଙ୍କୁ ବାଣ ମାରି ।
ଏହି ଭବ ଜଳଧିରୁ ନିଅନ୍ତି ଉଦ୍ଧରି ॥
ସମୁଦ୍ର ମନ୍ଥନୁ ଦେଖ ବିଷ ଜାତ ହେଲା ।
ତିନିପୁର ଲୋକଙ୍କୁ ସେ ତାପିତ କରିଲା ॥
ବିଷ ତାପରେ ଆକୁଳ ହୋଇଲେ ସର୍ବଜନ ।
ତାକୁ ନିବାରିବା ପାଇଁ ନୋହିଲେ ସୁଜନ ॥
ଜଗତର ହିତେ ହର ବିଷ ପାନକଲେ ।
ତିନିପୁର ଲୋକଙ୍କର ଜୀବନ ରଖିଲେ ॥
ବିଷ ଖାଇଣ ଅଜ୍ଞାନ ହୋଇଲେ ଶୂଳପାଣି ।
ଆଜି ଦେଖ ତାଙ୍କ ଶିରେ ଢାଳୁଛନ୍ତି ପାଣି ॥
ମାତାଙ୍କୁ ସେ ବିଡ଼ମ୍ବନା କଲେ ଦେବ ହର ।
ସେ କଥା ଶୁଣି ଅଜ୍ଞାନ ମୂର୍ଖ ଯେତେ ନର ॥
ବୋଲନ୍ତି ଈଶ୍ୱର ଦେଖ ବଡ଼ଲୋକ ହୋଇ ।
ମାତାଙ୍କ ବିଡ଼ମ୍ବଣା ଯେ କରିଛନ୍ତି ସେହି ॥
ଆମ୍ଭେମାନେ ସେହିକଥା କରିବୁଁ ଅବଶ୍ୟ ।
ଏଥିରେ ଆମ୍ଭଙ୍କୁ ଅବା ଲାଗିବ କି ଦୋଷ ॥
ସେ ମହାଦେବ ପାରନ୍ତି ସବୁ କାର୍ଯ୍ୟକରି ।
ଅନନ୍ତ ପୃଥିବୀ ରଖନ୍ତି ଗର୍ଭରେ ସଂହରି ॥
ତାହାଙ୍କ ଜନନୀ ଯେଣୁ ଅଟେ ଆଦ୍ୟ ଶକ୍ତି ।
ପୃଥିବୀ ଗୋଟିକ ପୁଣି କରିଛି ଉତ୍ପତ୍ତି ॥
ତାହାଙ୍କର ସଙ୍ଗତରେ ମାନବ କି ସରି ।
ଅକର୍ମ କରନ୍ତି ସେଥୁ ମନରେ ବିଚାରି ॥

ଜୀବ ଅନ୍ତକାଳରେ ସେ ମାତା ପନ୍ତ୍ର ଭୁଲ ।
କୁମ୍ଭୀପାକ ନର୍କକୁଣ୍ଡେ ପଡ଼ନ୍ତି ଯାଇ ॥
ଅନେକ ପ୍ରଗପ୍ରୀୟେନ୍ତୁ ନର୍କେ ପଡ଼ିଥାନ୍ତି ।
ବହୁତ ପ୍ରକାରେ ଦଣ୍ଡ ଦିଏ ଜନ୍ତୁପତି ॥
କେ ବୋଲଇ ପୁରନ୍ଦର ପରଦାର କଲା ।
ଗଉତମ ନାରୀକ ସେ କପଟେ ହରିଲା ॥
ତେତେବଡ଼ଲୋକ ହୋଇ ଯେବେ କଲାକ ଅନୀତି
ଆମ୍ଭେ କଲେ ଆମ୍ଭକୁ ବା ଅଛି କେଉଁ କ୍ଷତି ॥
ଏମନ୍ତ ବୋଲନ୍ତି ଲୋକେ ପରଦାର କରି ।
ଏହିପାପ କରି ଶୀଘ୍ରେ ଯାଉଛନ୍ତି ମରି ॥
ପୂର୍ବେ ଯାଗ କରିଥିଲେ ରାଜା ଯୁଧିଷ୍ଠିର ।
ସେ ଧର୍ମେ ବସିଲେ ସ୍ୱର୍ଗେ ଘେନି ସ୍ୱଶରୀର ॥
ଶତେ ଅଶ୍ୱମେଧ ଯାଗ ପୂର୍ବେ ଥିଲେ କରି ।
ପୁଣ୍ୟବନ୍ତ ପ୍ରାଣୀ ସେହୁ ଧର୍ମ ଦଣ୍ଡଧାରୀ ॥
ଏହି ପ୍ରକାର ସୁକୃତ ଯେହୁ କରୁଥାଇ ।
ସେ ନରକୁ ପାପଭର କି କରି ପାରଇ ॥
ପୁଣ୍ୟରୁ ପାତକ ମାନ ହୋଇଯାଏ ନାଶ ।
ସେ ଲୋକର ସୁକୃତ ଯେ କେ କରିବ ଶେଷ ॥
ଏ କଥାକୁ ନ ଜାଣନ୍ତି ମୂର୍ଖ ଲୋକମାନେ ।
ବଡ଼ଲୋକର କଥାକୁ ଆଚରନ୍ତି ମନେ ॥
ବୋଲୁଥାନ୍ତି ତେଡ଼େଲୋକ ମଦନରେ ବଶ ।
ଆମ୍ଭେମାନେ ଅଟୁଁ ଅବା କେତେକ ମନୁଷ୍ୟ ॥
ଏମନ୍ତ ବୋଲନ୍ତି ନରେ ଅକର୍ମ କରନ୍ତି ।
ପାପ ପୁଣ୍ୟ ଭଲ ମନ୍ଦ କିଛି ନ ଜାଣନ୍ତି ॥
ପୂର୍ବ ସ୍ଥାନ କର୍ମେ ତାଙ୍କୁ ନ ମିଳଇ ଅନ୍ନ ।
ବହୁତ କଷ୍ଟରେ ସେହୁ ବଞ୍ଚୁଥାନ୍ତି ଦିନ ॥
ଏହା ବିଚାର ନ କରି ସେହୁ ନର ସ୍ଥାନ ।
ବଡ଼ଲୋକଙ୍କ ସଙ୍ଗରେ ହୁଅନ୍ତି ସମାନ ॥
ଅକର୍ମ କରଣ ନରେ ଅଳ୍ପେ ଯାନ୍ତି ମରି ।
କୁମ୍ଭୀପାକ ନର୍କେ ପଡ଼ି ହେଉଥାନ୍ତି ଘାରି ॥
ଜନ୍ମେ ଜନ୍ମେ ତାଙ୍କୁ କେଭେ ନ ମିଳଇ ଅନ୍ନ ।
କେ ଆନ କରିବ ତାଙ୍କ କର୍ମର ଲଖନ ॥
କେହୁ ବୋଲନ୍ତି ବ୍ରାହ୍ମଣ ବଡ଼ ଜ୍ଞାନଲୋକ ।
କିଛିହିଁ ନ କରନ୍ତି ସେ କର୍ମ ଧର୍ମ ଯାକ ॥
ଆମ୍ଭେମାନେ ତାଙ୍କୁ ଆଜ୍ଞା ନ ଯୋଡ଼ିବା କର ।
ଏତେକ ଅଜ୍ଞାନ ଦେଖ ମୂଢ଼ ମାସିନର ॥
ସବୁ ଜାତିଠାରୁ ବଡ଼ ଅଟଇ ବ୍ରାହ୍ମଣ ।
ତାହାଙ୍କ ସଙ୍ଗେ ସରିକି ହେବ ଅନ୍ୟ ଜଣ ॥
ଅଜ୍ଞାନେ ବ୍ରାହ୍ମଣ ଯେବେ ଅକର୍ମ କରିବ ।
ମନସ୍ଥିର କରି ସେହୁ ଗାୟତ୍ରୀ ଜପିବ ॥
ନିତ ସନ୍ଧ୍ୟା କରିବ ସେ ଜାଣି କାଳ ବେଳେ ।
ଆଉକି ପାତକ ତାର ରହିଥିବ ଭଲେ ॥
ଏ କଥାକୁ ନ ଜାଣନ୍ତି ମହା ମୂର୍ଖ ନର ।
ଆପଣାର ସଙ୍ଗେ ସଙ୍ଗି କରନ୍ତି ବିଚାର ॥
ଏମନ୍ତ ଲୋକ ମାନଙ୍କୁ ପିଟି ବାଢ଼ ଗୁରି ।
ମୁଖରେ ଯେ ନ ବୋଲନ୍ତି ରାମ କୃଷ୍ଣ ହରି ॥
ଏମନ୍ତ ଲୋକ ଯଦ୍ୟପି କରନ୍ତି ପାତକ ।
ତାହାର ଅଙ୍ଗରେ ପାପ ହୁଅଇ ଅନେକ ॥
କେଭେ ତାହାର ପାତକ ନୁହଇ ମୋଚନ ।
ଅନ୍ତେ କୁମ୍ଭୀପାକେ ଯାଇଁ ହୁଅଇ ପତନ ॥
ଜନ୍ତୁପତିଙ୍କର ତାକୁ ବହୁତ ଆକ୍ରୋଶ ।
ଯେତେ ଜନ୍ମ ଲଭେ ସେହୁ ନ ମିଳଇ ଗ୍ରାସ ।
ଧାର୍ମିକ ବିବେକବନ୍ତ ହୋନ୍ତି ଯେଉଁଜନ ।
ତାଙ୍କ କଥା ସର୍ବସ୍ଥାନେ ହୁଏ ଧନ୍ୟ ଧନ୍ୟ ॥
ସେହୁ ଯେବେ ଅଯୋଗରେ ଅକର୍ମ କରିବ ।
ସୁକର୍ମରୁ ତା ପାତକ କଥିଁତରେ ଯିବ ॥
ଆଉ ଯେ ସୁକର୍ମ ତାର ରହିବ ବହୁତ ।
ସେ ପାପରେ ଆତ୍ମା ତାର ନ ହୋଇବ ଗ୍ରସ୍ତ ॥
ଏଥିକୁ ଉପମା ଏକ କହିବାକ ଶୁଣ ।
ଲକ୍ଷେଟଙ୍କା ଥାଇକରି ଯେଉଁ ମହାଜନ ॥
ସେହି ରଖିଥାଇ ପୁଣି ଯେବଣ ଶ୍ଳକର ।
ସେହୁ ହୋଇ ପାରିବ କିଂମୁନିବ ପ୍ରକାର ॥
ନିତ ପ୍ରତି ମାଡ଼େ ସୁନା ପାରେ ଦାନକରି ।
ଏମନ୍ତ କଲେହେଁ ଧନ ନ ଯିବଟି ସରି ॥
ଭୃତ୍ୟଲୋକ ତାହାପରି ଯଦ୍ୟପି କରିବ ।
ଏକା ଦିନକରେ ତାର ସବୁ ସରିଯିବ ॥
ଆଉ ଦିନକୁ ପାରିବ କାହୁଁ ତାହାକରି ।
ବଡ଼ଲୋକ ସଙ୍ଗେ ସାନ କାହିଁ ହେବ ସରି ॥
ସୁକୃତବନ୍ତ ଯେ ଜନ ସେହି ବଡ଼ଲୋକ ।
ସେହି ସେ ଅଟଇ ସିନା ବିଷ୍ଣୁର ସେବକ ॥
ବିଷ୍ଣୁଙ୍କର ଭକ୍ତ ବିନା ଆନ କାର୍ଯ୍ୟ ଯେତେ ।
ସେହି ସିନା ଅରକ୍ଷିତ ଅଟନ୍ତି ଜଗତେ ॥

ପୂର୍ବ ଜନମରେ ଯେହ୍ନେ ସୁକୃତ ନ କଲ ।
ତେଣୁ ସେହ୍ନେ ଏ ଜନ୍ମରେ ହୋଇଲା ଭିକାରି ॥
ନାରାୟଣଙ୍କର ତାର ଠାରେ ନାହିଁ ଦୟା ।
ତେଣୁ ଅନୁଗ୍ରହ ତାକୁ ନ କରନ୍ତି ଶ୍ରିୟା ॥
ଏମନ୍ତ ବୋଲି ବାବାଜି କହିଲେ ରାଜାକୁ ।
ଶୁଣି ନୃପବରଙ୍କର ଚମକିଲା ବୁକୁ ॥
ରାଜା ତୁ ପୂର୍ବ ଜନମେ ଘୋର ତପ କଲୁ ।
ତେଣୁକରି ଏବେ ତୁହି ନୃପତି ହୋଇଲୁ ॥
ପୂର୍ବ ଜନ୍ମ ତପେ ତୁହି ତୋଷି ନାରାୟଣ ।
ତେଣୁ ଏ ଜନ୍ମରେ ତୁହି କଲୁ ନୃପପଣ ॥
ପୂର୍ବ ଭାଗ୍ୟ ନ ଥିଲେଟି ନୁହନ୍ତି ନୃପତି ।
ରାଜା ହେଲାଠାରୁ କେତେ କରଇ ଅନୀତି ॥
ପୂର୍ବ ତପଫଳେ ସେହ୍ନେ ବହୁ ଭୋଗ କରେ ।
ଆଉ ସୁଖ ନ ମିଳଇ ପୁଣି ଦେହାନ୍ତରେ ॥



ରାଜ ଧର୍ମ ।

ଶୁଣି ନର ନୃପମଣି ବେଳକର ଯୋଡ଼ି ।
କାର୍ପଣ୍ୟ ହୋଇ ପୁଛିଲେ ମୁନି ପାଦେ ପଡ଼ି ॥
କେମନ୍ତ ପ୍ରକାରେ ଏଥୁ ତରିବଇଁ ମୁହିଁ ।
ଏହି କଥା କୁହ ମୋତେ ସଂଶୟ ଫିଟାଇ ॥
ତୁମ୍ଭେତ କହିଲ ନୃପ ପଣର ଯେ ସୁଖ ।
ପରଲୋକରେ ତାହାକୁ ପୁଣି ଯେଉଁ ଦୁଃଖ ॥
ଏହା ଶୁଣି ମୋର ମନ ବ୍ୟାକୁଳ ଅପାର ।
ତତ୍ତ୍ୱକଥା କହି ତୃପ୍ତ କର ମୁନିବର ॥
ତୁମ୍ଭଙ୍କ ଭେଟିଲି ଆଜ ସୁଫଳ ମୋ ଦିନ ।
ପ୍ରକୃତ ବଚନେ ମୋର ସ୍ଥିର କର ମନ ॥
ଶୁଣିଣ ସନ୍ତୋଷ ମନ ହୋଇଲେ ମହାଯତି ।
ବୋଇଲେ ତୁ ସାବଧାନେ ଶୁଣ ହୋ ନୃପତି ॥
ପୂର୍ବ ଜନ୍ମ ତପଫଳେ ହେଲୁ ମହୀପାଳ ।
ତୁହି ଏବେ ସ୍ୱଧର୍ମରେ ପାଳ ପ୍ରଜା କୁଳ ॥
ନ୍ୟାୟ ଶାସ୍ତ୍ର ପୁରାଣ ଯେ ଶୁଣୁଥିବୁ ନିତି ।
ଦେବତା ବ୍ରାହ୍ମଣେ ସଦା କରନ୍ତୁ ଭକତି ॥
ଗ୍ରହଶାନ୍ତି ନିମିତ୍ତରେ କର ହୋମ ଦାନ ।
ନିତ ଦାନ ଦେଉଥିବୁ ଦେବତା ବ୍ରାହ୍ମଣ ॥
ନିରକ୍ଷ ଜନଙ୍କର ତୁ ଗୁହାରି ଶୁଣିବୁ ।
ଦରିଦ୍ର ଲୋକଙ୍କୁ ଦେଖି ଧନ ବସ୍ତ୍ର ଦେବୁ ॥

ଅନ୍ୟାୟର ଶାସ୍ତ୍ରମାନ ନ ଶୁଣିବୁ କେବେ ।
ଜନ୍ତ୍ରମନ୍ତ୍ରିକ ତୋହର ଭୟ ଅଛି ଯେବେ
ନାରାୟଣ ନାମକୁ ତୁ କରୁଥିବୁ ଜପ ।
ତେବେ ଯେ ଖଣ୍ଡନ ହେବ ସର୍ବ ମହାପାପ ॥
ପ୍ରଜା ମାନଙ୍କର ପୁଣି ଯେତେ ପାପ ପୁଣ୍ୟ ।
ତହିଁରୁ ତୁ ଷଡ଼ଅଂଶ ଲଭିବୁ ରାଜନ ॥
ତେବେ ତାହାଙ୍କର ଦୋଷ ନ ଲାଗିବ ତୋତେ
ଧର୍ମକୁ ଆଶ୍ରୟ କରି ଥିବୁ ଅନୁବ୍ରତେ ॥
ଧର୍ମରେ ଥିବା ପ୍ରାଣିର ସାହା ନାରାୟଣ ।
ଶତ୍ରୁ ମାନେ ଆସିକରି ପଶନ୍ତି ଶରଣ ॥
ତାଠାରେ ଜନ୍ତ୍ରମନ୍ତ୍ରର ନାହିଁ ଅଧିକାର ।
ଚକ୍ର ଉହାଡ଼େ ରଖନ୍ତି ତାକୁ ଚକ୍ରଧର ॥
ତୁହି ଏବେ ରାଜନ ହୋ ମନେ ହେତୁକର ।
ନିର୍ଦ୍ଦୋଷୀ ଜୀବଙ୍କୁ ଆଉ ବୃଥାରେ ନ ମାର ॥
ଯେହ୍ନେ ତୋହର ଆମ୍ଭକୁ ଅଛଇ ବଇର ।
ପାରୁ ଯେବେ ତାହାକୁ ତୁ ମାର ଦଣ୍ଡଧାରି ॥
ବନରେ ପଶି ଅଦୋଷୀ ମୃଗଙ୍କୁ ତୁ ମାରୁ ।
ଏହି ପିଣ୍ଡ ବ୍ରହ୍ମାଣ୍ଡକୁ ବିଚାର ନ କରୁ ॥
ମେଦିନୀରେ ଯେତେ ପ୍ରାଣୀ ଏ ପିଣ୍ଡରେ ତେତେ
ଆଗରେ ଥାଇଣ ରାଜା ଖୋଜୁ କି ନିମନ୍ତେ ॥
ଏ ପିଣ୍ଡରେ ପାଥିମନ ଛନ୍ତି ମୃଗମତେ ।
ଏ ତୋର ଆମ୍ଭକୁ ମନ୍ଦ ଚିନ୍ତନ୍ତି କାରତେ ॥
ଏହାଙ୍କୁ ଯେ ମାରେ ରାଜା କ୍ଷତ୍ରିବର ସେହି ।
ସବୁଠାରୁ ବଡ଼ ଅଛେ ଆମ୍ଭ ମୃଗ ଗୋଷ୍ଠ ॥
ସେ ମୃଗକୁ ରାଜା ଯେବେ ପାରିବୁ ତୁ ମାରି ।
କ୍ଷତ୍ରିୟ ବୋଲି ଜାଣିବା ତେବେ ଦଣ୍ଡଧାରି ॥
କୃପାସିନ୍ଧୁ ନାମରେ ଯେ ଧନୁ ଆଉ ଗୁଣ ।
ଜ୍ଞାନ ଆମ୍ଭ ଶର ବନ୍ଧ ପାପ ମୃଗ ହାଣ ॥
ତାକୁ ମାଇଲେ ଆମ୍ଭକୁ ଆଉ ନାହିଁ ଶଙ୍କା ।
ଏହାକୁ ନ ଜାଣି ତୁହି ବନେ ବୁଲୁ ଏକା ॥
ରାଜା ଧନବନ୍ତ ଆଉ ଦରିଦ୍ର ଭିକାରି ।
ସ୍ୱପନରେ ସୁଖ ଦୁଃଖ ଦେଖିଲାର ପରି ॥
ନିଦ୍ରା ବିନାଶରେ ଛନ୍ତି ଏକ ନୁହନ୍ତି ସତ ।
ମେହପରି ସିନା ଏହି ସଂସାରର ମନ ॥
ଯେତେବେଳେ ଏ ଘଟରୁ ଛାଡ଼ିବ ପ୍ରାଣ ।
ତେତେବେଳରେ ଥିବ କି ତୋର ରାଜପଣ ॥

ରାଜ୍ୟ ବିତ୍ତପଣ ତୋର ସବୁ ଯିବ ଛାଡ଼ି ।
ଯମଦୂତେ ଧରି ଆଣି ତୋତେ ଦେବେ ବେଡ଼ି ॥
ଏହି ଭୟମାନ ତୋର ଯେବେ ହେବ ଦୂର ।
ଏ କଥାକୁ ରାଜା ତୁହି ମନେ ହେଳୁକର ॥
ଜୀବକୁ ଯେ ହିଂସାକରେ କେବେ ନୁହେ ସୁଖୀ ।
ଦେହାନ୍ତରରେ ତାହାକୁ ଅଛି ବଡ଼ ଦୁଃଖ ॥
ଜୀବେ ଦୟା ସଂସାରରେ ଅଟଇ ଯେ ସାର ।
ଆତ୍ମାର କାରଣେ ରାଜା ଭଜ ଚକ୍ରଧର ॥
ତେବେ ଯାଇ ଦେହାନ୍ତରେ ମିଳେ ସ୍ୱର୍ଗସ୍ଥାନ ।
କିଅବା ବସିବୁ ଯାଇ ବୈକୁଣ୍ଠ ଭୁବନ ॥
ଯେବଣ ନୃପତି ଦେଖ ମତ୍ତ ଗର୍ବ ସଙ୍ଗେ ।
ସେବା ନ କରଇ କେବେ ଗୋବିନ୍ଦଚରଣେ ॥
ଗୋବିନ୍ଦ ପ୍ରୀତି ଅର୍ଥରେ ନାହିଁ ଦାନ କୀର୍ତ୍ତି ।
ସର୍ବଦା ମୂର୍ଖପଣରେ ଅରଜେ ଅନୀତି ॥
ପର ଧନ ପର ନାରୀ ଆଣେ ବଳେ ଧରି ।
କ୍ରୋଧ କରଣ ପୁଣି ନ ଶୁଣେ ଗୁହାରି ॥
ଏମନ୍ତ ରାଜାର ଜାଣ କେବେ ନାହିଁ ସୁଖ ।
ଦେହାନ୍ତରରେ ଲଭଇ ସେହି ବଡ଼ ଦୁଃଖ ॥
ପ୍ରାଣ ଥିବାଯାଏ ସେହି ଭୁଞ୍ଜେ ସୁଖରାଶି ।
ଦେହାନ୍ତରେ ଆଉ କି ସେ ହେବ ଦଣ୍ଡଧାରୀ ॥
ଯେବେ ପୁଣ୍ୟ ପ୍ରାଣୀହୋଇ ଲଭଇ ମରଣ ।
ଜୀବନ୍ତରେ ସାଧୁ ସାଧୁ ମଲେ ସ୍ୱର୍ଗସ୍ଥାନ ॥
ଇହ ପରକାଳ ତାର ଅଟଇ ସମସରି ।
ଜୀବନ୍ତେ ଐଶ୍ୱର୍ଯ୍ୟ ଭୋଗ ମଲେ ସ୍ୱର୍ଗପୁରୀ ॥
ବ୍ୟାଧିବନ୍ତ ଲୋକ ଯେବେ ଲଭଇ ମରଣ ।
ଜୀବତରେ ମହାକଷ୍ଟ ମଲେ ଅକାରଣ ॥
ଇହ ପରଲୋକେ ତାକୁ କିଛି ସୁଖନାହିଁ ।
ସେହି ଲୋକମାନେ ପୂର୍ବେ ବିଷ୍ଣୁଙ୍କର ଦ୍ରୋହି ॥
ତେଣୁକରି ସେମାନଙ୍କୁ ନ ମିଳଇ ଅନ୍ନ ।
ଆପେ ଅର୍ଜି ଆପେ ପୁଣି ଭୁଞ୍ଜେ ହୀନମାନ ॥
ଅନ୍ନହୀନ ଯେଉଁ ପ୍ରାଣୀ ସେହୁ ବଡ଼ ପାପୀ ।
ସେ ପୁଣି ପାରିବ କାହିଁ କୃଷ୍ଣନାମ ଜପି ॥
ଲୋକେ କଦର୍ଥନା ତାର ହୋଇଥାଏ କାୟେ ।
ଅନୁକ୍ଷଣେ ଖାଇବାକୁ ସେହୁ ଲୋଡ଼ୁଥାଏ ॥
ପୂର୍ବ ପୁଣ୍ୟ ଅନୁସାରେ ଅନ୍ନ ନ ମିଳଇ ।
ଭୋକରେ ଅଗ୍ନି ପରାୟେ ଜଠର ଜଳଇ ॥

ଲକ୍ଷ୍ମୀଦେବୀଙ୍କର ସେହି ଅଟଇ ବଇରୀ ।
ତେଣୁକରି ଲୋକ ତାକୁ ଚତୁର୍ଗୁଣେ କରି ॥
ପୂର୍ବଜନ୍ମରେ ନ ଦେଲେ ଏ ଜନ୍ମେ ନ ପାଇ ।
ଏବେ ସେ ଲୋଡ଼ିଲେ ଆଉ ପାଇବ ବା କାହିଁ ॥
ଏହି ପ୍ରକାରେ ସଂସାର ବୁଝି ହୋ ରାଜନ ।
ସକଳ କର୍ମ ତେଜିଣ ଭଜ ଭଗବାନ ॥
ଶୁଣିଣ ସନ୍ତୋଷ ମନ ହେଲା ମହୀପାଳ ।
ନୃପତିକୁ ଖୋଜି ଖୋଜି ଆଇଲେକ ବଳ ॥
ମୁନିପାଦେ ପ୍ରଣିପାତ ହୋଇଣ ରାଜନ ।
ମେଲାଣି ହୋଇ ଚଳିଲା ଘେନି ନିଜ ସୈନ୍ୟ ॥
ଆପଣା ଦେଶରେ ଯାଇ ହୋଇଲା ପ୍ରବେଶ ।
ପାତ୍ର ଅମାତ୍ୟଙ୍କୁ ସେ ହକାରିଲା ପାଶ ॥
ସମସ୍ତଙ୍କୁ ଗୃହିଁକରି ବୋଲେ ନୃପମଣି ।
ରାଜ୍ୟରେ ଡେଙ୍ଗୁରା ମୋର ଦିଅଅ ଏକ୍ଷଣି ॥
ଆଜଠାରୁ ଅଧର୍ମ ଯେ ନ କରିବ କେହି ।
ଧର୍ମରେ ଚଳିବେ ସର୍ବେ ଅଧର୍ମ ନ ଥାଇ ॥
ବୈଶାଖ କାର୍ତ୍ତିକ ମାଘ ଏହି ମାସ ତିନି ।
ପ୍ରାତଃସ୍ନାନ କରିବେ ବିଷ୍ଣୁ ଆଜ୍ଞା ଘେନି ॥
ବିଷ୍ଣୁଙ୍କ ପ୍ରୀତି ଅର୍ଥରେ କ୍ଷମତା ପ୍ରମାଣେ ।
ନିତି ଦାନ ଦେଉଥିବେ ଦେବତା ବ୍ରାହ୍ମଣେ ॥
ଦେବତା ବ୍ରାହ୍ମଣେ ସଦା କରିବ ଭକତି ।
ତାହାଙ୍କଠାରେ ନୋହିବ କଦାଚ ଅପ୍ରୀତି ॥
ଅତିଥି ଉପବାସରେ ନ ଫେରିବେ ଥରେ ।
ଭଣ୍ଡାରରୁ ଧନ ନେଇ ଦିଅ ସର୍ବଠାରେ ॥
ଗ୍ରାମେ ଗ୍ରାମେ ଏକ ଏକ ହେବ ଧର୍ମଶାଳା ।
ଲୋକ ଶୋଷି ସାଧୁଙ୍କର କରିବ ସଙ୍ଖୋଳା ॥
ମୋ ରାଜ୍ୟରେ ଦୁଃଖିପ୍ରଜା ଅଛି ଯେଉଁଜନ ।
ତାକୁ ଦିଅ ମୋ ଭଣ୍ଡାରୁ ନେଇଯାଉ ଧନ ॥
ଆଜଠାରୁ ଜୀବଜନ୍ତୁ ନ ବଧିବ କେହି ।
ଧର୍ମ ଆଚରି ରହିବେ କୃଷ୍ଣ ଗୁଣ ଗାଇ ॥
ଗ୍ରାମେ ଗ୍ରାମେ ସର୍ବ ଲୋକ ଶୁଣିବେ ପୁରାଣ ।
ଶ୍ରୀକୃଷ୍ଣ ଚରଣ ଛଡ଼ା ଅନ୍ୟେ ନ କାରଣ ॥
ଅନ୍ୟାୟ୍ୟ କରିଲେ ଆଉ ନ ସହିବି ମୁହିଁ ।
ରାଜ୍ୟରୁ କାଢ଼ିଣ ତାକୁ ଦେବ ଘଉଡ଼ାଇ ॥
ଏମନ୍ତ ବୋଲିଣ ରାଜା ଦେଲେକ ଆଦେଶ ।
ଆଜ୍ଞା ପ୍ରମାଣେ ଡଗରା ଗଲେ ଦେଶ ଦେଶ ॥

ରାଜାଙ୍କର ଆଜ୍ଞାସବୁ ପ୍ରଜାଙ୍କୁ କହିଲେ ।
ଶୁଣି ସାଧୁଜନମାନେ ଆନନ୍ଦିତ ହେଲେ ॥
ଦୁଷ୍ଟଜନମାନଙ୍କର ହୃଦ ଦମ ଦମ ।
ରାଜନଙ୍କୁ ଭୟକରି କଲେ ସର୍ବ କର୍ମ ॥
ରାଜା ଯାହା ଯାହା କହେ ସେହ୍ନେ ସତ୍ୟ ବାକ୍ୟ ।
ତହିଁରୁ ଉବୁରିଯିବ ଅଛି କାର ଶକ୍ୟ ॥
କେ ବୋଇଲ ରାଜା ଜାଣିଲେ ଆମ୍ଭେ ଯିବୁ ନାଶ
ତେଣୁକରି ମୂର୍ଖଲୋକ ମନେ କଲେ ତ୍ରାସ ॥
ଏହିରୂପେ ଧର୍ମ ଉଦେ କରିଲେ ନୃପତି ।
ଆପଣେ ହୋଇଲେ ରାଜା ବିଷ୍ଣୁରେ ଭକତି ॥
ଯହୁଁ ସର୍ବ ନରେ ଧର୍ମ ଉଦେ ହେଲା ପୁଣି ।
ଇନ୍ଦ୍ରବୃଷ୍ଟି କଲା ତହୁଁ ବେଳ କାଳ ଜାଣି ॥
ଯଥାକାଳେ ବୃଷ୍ଟି ଯହୁଁ ହୋଇଲା ପତନ ।
ରାଜ୍ୟରେ ଫଳିଲା ଶସ୍ୟ ହୋଇ ପରିପୂର୍ଣ୍ଣ ॥
ଦରିଦ୍ର ହୋଇଣ ଜଣେ ନ ରହିଲେ କେହି ।
ରାଜାର ଭଣ୍ଡାରେ ଧନ କଳନା ନ ଯାଇ ॥
ଧର୍ମଥିବାର ସ୍ଥାନରେ ବିଜେ ନାରାୟଣ ।
ଯହିଁ ନାରାୟଣ ତହିଁ ଲକ୍ଷ୍ମୀଥାନ୍ତି ଜାଣ ॥
ତେଣୁକରି ସେ ଭଣ୍ଡାର ଅତୁଟ ତାହାର ।
କହୁଛନ୍ତି ଚଇତନ ଶୁଣ ମନ ସାର ॥
ଅଧର୍ମର ଧନ କାହିଁ ହୋଇବ ପ୍ରାପତ ।
ଧର୍ମରେ ଉଦିତ ପାପେ ହୁଅଇ ପତିତ ॥
ଧର୍ମଥିବାର ପ୍ରାଣୀକି ନାହିଁ ଗ୍ରହ ପୀଡ଼ା ।
ଅଧର୍ମୀ ଲୋକମାନଙ୍କୁ ଶତ୍ରୁ ଯୋଡ଼ା ଯୋଡ଼ା ॥
ଦେଖ ଏହି ରାଜନକୁ ଧର୍ମ ଦେଲା ଫଳ ।
ତେଣୁଟି ଭଣ୍ଡାର ତାର ହୋଇଲା ପୂରିତ ॥
ରାଜ୍ୟଜନ ପ୍ରଜା ଆଦି ସର୍ବେ ହେଲେ ସୁଖୀ ।
ରାଜ୍ୟେ ରାଜ୍ୟେ ପରଶଂସା ହେଲା ଶୁଣି ଦେଖି ॥
ଶତ୍ରୁମାନେ ଦୂରହିଁରୁ ନ ପାରନ୍ତି ରହି ।
ଧର୍ମଖଣ୍ଡାର ବତ୍ରିଶ ଦାଢ ଯେ ହୁଅଇ ॥
ଅଧର୍ମର ବଢ଼ି ଯେହ୍ନେ କରିଆଇ ଠୁଳ ।
ଗଲାବେଳକୁ ସେ ଧନ ନ ରହଇ ମୂଳ ॥
କହୁଛନ୍ତି ଚଇତନ ଶୁଣିଲୁ କି ମନ ।
ସାଧୁଙ୍କୁ ଭେଟିଣ ରାଜା ଉଦେ ହେଲା ଜ୍ଞାନ ॥
ଭାଗ୍ୟଅନୁରୂପେ ରାଜା ସୁଖ ଭୋଗକଲା ।
ଦେହାନ୍ତରେ ପାଇଣ ବୈକୁଣ୍ଠେ ବସିଲା ॥

ମାନବ ଜନ୍ମ ସକଳ ଜନ୍ମୁ ଅଟଇ ସାର ।
ଜାଣି ଶୁଣି କରି ନରେ ନୁହ ନାରଖାର ॥
ନିଜ ହିତକର୍ମ ଯେହ୍ନେ ନ କରନ୍ତି ଜାଣି ।
ଚଉରାଶି ଯୋନୀରେ ସେ କରନ୍ତି ଭ୍ରମଣି ॥
ଜନନୀର ଗର୍ଭଠାରୁ ନର୍କ ନାହିଁ ଜାଣ ।
ତହିଁ ଭ୍ରମଣ କରନ୍ତି ଯାଇ ଅନୁକ୍ଷଣ ॥
କେହ୍ନେ ଜନ୍ମ ହୋଇ ଦିନେ ବର୍ଷେ ନାଶ ଯାଇ ।
କେହ୍ନେ ମାସ ପକ୍ଷକରେ ପ୍ରାଣ ବିସର୍ଜଇ ॥
ଏହିରୂପେ ଚଉରାଶୀ ଯୋନୀରେ ଭ୍ରମଣ ।
ଟିକିଏ ତାହାକୁ କେବେ ସୁଖ ନାହିଁ ଜାଣ ॥
ଅନ୍ନ ବସ୍ତ୍ର ସୁଖ ସ୍ଥାନ କେବେ ନ ମିଳଇ ।
ପୁଣି ପୁଣି ନର୍କେ ସେହ୍ନେ ହେଉଥାଏ ଘାଣ୍ଟି ॥
ଏମନ୍ତ ଲୋକ ଯଦ୍ୟପି ସାଧୁମୁଖୁ ଶୁଣି ।
କି ଅବା ଶୁଣିବ ସେହ୍ନେ ପୁରାଣର ବାଣୀ ॥
କିବା ତୁଳସୀର ସେବା ସେ ଲୋକ କରିବ ।
ଚଉରାଶୀ ଯୋନୀରୁ ସେ ମୁକ୍ତ ହୋଇଯିବ ॥
ପ୍ରଦକ୍ଷିଣ ଦେଉଥିବ ସୁଶୀତଳ ବାରି ।
ପ୍ରଣାମ କରି ବୁଲିବ ପୁଣି ବେଢ଼ା ଗୁରି ॥
ମୂଳର ମୃତ୍ତିକା ନେଇ ଲଲାଟରେ ଦେବ ।
ପାଦୋଦକ ପାଇ ନିଷ୍ଠ ଶିରରେ ବୋଳିବ ॥
ବେନି କରକୁ ଯୋଡ଼ିଣ କରି ତାଙ୍କୁ ସ୍ତୁତି ।
ବୋଲିବ ପୂର୍ବର ପାପ ଫେଡ଼ ବୃନ୍ଦାବତୀ ॥
ଏତେ କଥାକୁ ଯଦ୍ୟପି ନ ପାରିବ କରି ।
ମୁଖେ ଭଜୁଥିବ ତେବେ ରାମକୃଷ୍ଣ ହରି ॥
ତେବେ ସେ ଗତଜନ୍ମର ପାପହେବ ନାଶ ।
ପାତକ ଯାଇ ପୁଣ୍ୟର ହୋଇବ ପରକାଶ ॥
ଅନ୍ଧାରଘରକୁ ମନ ପ୍ରଦୀପ ଯେସନ ।
ସେହି ପ୍ରକାରେ ଉଜ୍ଜ୍ୱଳ ହେବ ଆତ୍ମଜ୍ଞାନ ।
ବଢ଼ିବ ଯେ ପୁଣ୍ୟମୟ ପାପହେବ ନାଶ ।
ତେବେ ସେ ଖଣ୍ଡିବ ପୂର୍ବଜନ୍ମ ମୃତ୍ୟୁକ୍ଳେଶ ॥
ଶ୍ରୀକୃଷ୍ଣ ଚରଣେ ଯାଇ ପଶିବ ଶରଣ ।
ତେବେ ସେ ଖଣ୍ଡିବ ଯାଇ ଅକାଳ ମରଣ ॥
ସେ ପ୍ରଭୁଙ୍କ ମହିମାତ ଏମନ୍ତ ଅଟଇ ।
ନିଶ୍ଚିତରେ ଉଦ୍ଧରନ୍ତି କିଛି ଭ୍ରାନ୍ତି ନାହିଁ ॥
ଜ୍ଞାନେ ବା ଅଜ୍ଞାନେ ଯେହ୍ନେ ପ୍ରଭୁନାମ ଗୁଣି ।
ନିଶି ଦିବସରେ ଯେହ୍ନେ ସୁମରିବ ପୁଣି ॥

ଅବଶ୍ୟ ସେ ଭବଜଳୁ ହୋଇବ ପାର ।
କହନ୍ତି ମାଧବ ହରିଙ୍କର ଆହେ ଦାମୋଦର ॥
କେବଳ ଦେବାର ଦୟା ହୃଦୟରେ ଥିବ ।
ସ୍ୱହସ୍ତରେ ଜୀବବଧ କେଭେଁ ନ କରିବ ॥
ଅପରକୁ ମନ୍ଦଚିନ୍ତା ନ ଚିନ୍ତିବ ମନେ ।
ଲୋଭିତ ନୋହିବ ପୁଣି ପରଦାର ଧନେ ॥
ଜୀବ ବଧ କରିବାକୁ ମନେ ନ ବିଚାରି ।
ଜୀବେ ନାରାୟଣ ଅଛନ୍ତି ସର୍ବଘଟେ ପୂରି ॥
ମନରେ ଭାବିଲେ ପାପ ଘେରିଯାଏ ଆସି ।
ଅକାରଣ କଥାରେ ତୁ ନୁହ ଧର୍ମ ଧ୍ୱଂସି ॥



## ହରିଣୀ ଓ ଗଜରାଜ ମୋକ୍ଷଣ ଉପାଖ୍ୟାନ ।

ମୋକ୍ଷଧର୍ମ ଏବେ ମୁହିଁ କହିବଇଁ ମନ ।
ଆଶ୍ୱାସନା କରି ସଦା କହିବ ବଚନ ॥
ପର ଦୁଃଖ ଦେଖିକରି ଆକୁଳ ହୋଇବ ।
ପର ପ୍ରତି ହିଂସା ମନ କେଭେଁ ନ କରିବ ॥
ଶରୀରକୁ ଦୁଃଖଦେଲେ ହରି ଦୁଃଖ ପାଇ ।
ଆତ୍ମାର କାରଣେ ଏକା ଭଜ ଭବତ୍ରାହୀ ॥
କେଶବ ଅନନ୍ତ କୃଷ୍ଣ ଭକ୍ତ ଭବତ୍ରାହୀ ।
ଦୀନବନ୍ଧୁ ଦାଶରଥି ଲକ୍ଷ୍ମୀଙ୍କର ସାଇଁ ॥
ରାମ ନାରାୟଣ ପ୍ରଭୁ ଜଗନ୍ନାଥ ହରି ।
ଶ୍ରୀ ମଧୁସୂଦନ ମଧୁରିପୁ ଦଇତାରି ॥
ଏହିରୂପେ ପ୍ରଭୁଙ୍କର ନାମ ଗୁଣ ଯେତେ ।
ସର୍ବଦା ମନମଧ୍ୟରେ ସୁମରିବ ନିତ୍ୟେ ॥
ତେବେ ଯେ ଆତ୍ମାର ମନ ହୁଅଇ କାରଣ ।
ଏହାକୁ ଛାଡ଼ି ଅନ୍ୟରେ କିସ ପ୍ରୟୋଜନ ॥
ଗୋବିନ୍ଦ ନାମ ଅମୃତମୟ ଅଟେ ରସ ।
ମୁଖରେ ନିରତେ ଯେହୁ କରଇ ଅଭ୍ୟାସ ॥
ଧନ୍ୟ ବଦନ ତାହାର ଧନ୍ୟ ସେହୁ ନର ।
ସର୍ବଦା ପବିତ୍ର ଅଟେ ଶରୀର ତାଙ୍କର ॥
ଏଣୁକରି ବିଷ୍ଣୁଙ୍କର ପାଦେ ଆଶାକରି ।
ହେଲେ ତରିବୁ ମନ ଭବ ସିନ୍ଧୁ ବାରି ॥
କୁହୁକର ବିଦ୍ୟା ଯେସନେ କରେ ନଟକାର ।
ନାନାବିଧ ରୂପମାନଙ୍କୁ ଦେଖାଏ ଅପାର ॥
ସେ ସେସନେ କ୍ଷଣକ ମଧ୍ୟେ ଅନ୍ତର ହୁଅଇ ।
ଏ ସଂସାରର ଭାବନା ତେମନ୍ତ ଅଟଇ ॥
ବିଷ୍ଣୁ ଆଶ୍ରିତ ଲୋକଙ୍କୁ ନାହିଁ ଭବ ତାପ ।
ପଙ୍କଜ ଦଳେ ଯେସନେ ନ ଲାଗଇ ଆପ ॥
ଏବେ ହୋ ସୁମନ ବୁଝି ନାମ ଆଶ୍ରେକର ।
ତା ନୋହିଲେ ଆନେ ଆଉ ନାହିଁ ପ୍ରତିକାର ॥
ଏ ଯେତେ ଜଞ୍ଜାଳମାନ ଆବୋରିଛୁ ତୁହି ।
ନିଦାନ କାଳେ କାହାର ନ ହୋଇବେ କେହି ॥
ଏହି ଭବଜଳେ ପଡ଼ି ବୁଡ଼ି ତୁ ନ ମର ।
କେ କାହାର ବନ୍ଧୁଭାଇ କେ କାହା ପିଅର ॥
ସମସ୍ତ ମିଥ୍ୟା ଅଟଇ ଦାରା ସୁତ ଧନ ।
ଏ ସବୁ ଅଟନ୍ତି ମନ ଭ୍ରାନ୍ତିର ବନ୍ଧନ ॥
ଯେତେବେଳେ ଜୀବ ତୋର ହେବ ଘଟାନ୍ତର ।
ବାନ୍ଧି ଘେନିଯିବେ ତୋତେ ଯମର ଡଗର ॥
ଆପଣାର କଲାକର୍ମ ପାପ ପୁଣ୍ୟ ଦୁଇ ।
ବେଳ ପାରୁଶରେ ଥିବେ ସଙ୍ଗେ ୨ ରହି ॥
ଜନ୍ତୁପତର ପୁରରେ କରିବେ ପ୍ରବେଶ ।
ଚିତ୍ରଗୁପ୍ତକୁ ପୁଚ୍ଛିବେ ଧର୍ମଙ୍କର ଶିଷ୍ୟ ॥
ପାପ ପୁଣ୍ୟ ଯାହା ତୋର କହିବେଟି ଦୁଇ ।
ଧର୍ମ ସଭାପରେ ବସିଥିବେ ଜନ୍ତୁସାଇଁ ॥
ପୁଣ୍ୟବଳ ଥିଲେ ମନ ହୋଇବୁ ଉଦ୍ଧାର ।
ପାପଥିଲେ ଦଣ୍ଡ ଭୋଗ ଦେବେ ନାଶକର ॥
ଏଣୁକରି ସଂସାରେ ଅଟେ ଧର୍ମ ଏକା ମୂଳ ।
ଧର୍ମଥିଲେ ପ୍ରାଣୀ ତରେ ଏହି ମହାଜଳ ॥
ସେ ପ୍ରଭୁଙ୍କ ପଦ୍ମପାଦେ ଚିତ୍ତକୁ ଲଗାଇ ।
ତରିବ ଭବଜଳଧି କିଛି ଭୟ ନାହିଁ ॥
ଏମନ୍ତ ପ୍ରଭୁଙ୍କ ପଦ୍ମପାଦ ସେବା ଛାଡ଼ି ।
ବ୍ୟର୍ଥେ ନ ମର ନରେ ଭବଜଳେ ବୁଡ଼ି ॥
ଦୁର୍ଗମ ପଥକୁ ମନ କୃଷ୍ଣ ନାମ ସଖା ।
ଗୋବିନ୍ଦର ବିନୁ କେହୁ କରିପାରେ ରକ୍ଷା ॥
ପ୍ରାଣକୁ ସଙ୍କଟ ଆସି ପଡ଼ିବ ଯେକାଳେ ।
ଗୋବିନ୍ଦ ରଖ ଡାକିବ ତେବେ ଏକାବେଳେ ॥
ସେହିକ୍ଷଣି ତାହାର ଯେ ବିପତ୍ତି ବିନାଶି ।
ରଖନ୍ତି ପ୍ରଭୁ କରୁଣା ଚକ୍ଷେ ତାକୁ ପେଶି ॥
ସାବଧାନ ହୋଇ ଏବେ ଶୁଣ ମନ ଈଶ ।
ପ୍ରଭୁଙ୍କୁ ସମାନ ଅଟେ ଦୂର ଆଉ ପାଶ ॥

ସକଳ ବ୍ରହ୍ମାଣ୍ଡ ଅଛି ଯାହା ଗର୍ଭଗତ ।
ସକଳ ଜୀବମଧ୍ୟରେ ସେହି ସେ ପୂରିତ ॥
ସେହି ଯେ ମାରନ୍ତି ମନ ସେହି ଯେ ତାରନ୍ତି ।
ତାହାଙ୍କର ବିନା ଆଉ ଅନ୍ୟ କେ ନାହାନ୍ତି ॥
ମହାଘୋର ଅରଣ୍ୟରେ ଚିନ୍ତିଲା ହରିଣୀ ।
ସଙ୍କଟ ପଡିଲା ମୋତେ ରଖ ଚକ୍ରପାଣି ॥
ସଙ୍ଗତରେ ବେନି ବାଳ ଗର୍ଭ ଅଷ୍ଟମାସ ।
ବ୍ୟାଧ ଜାଲ ପାତିଅଛି ତାର ଚଉପାଶ ॥
ଆଗେ ପୁଣି ଜଳୁଅଛି ପ୍ରଚଣ୍ଡ ଅନଳ ।
ପଛକତରେ ଲଗିଛି ଆସି ଶ୍ୱାନକାଳ ॥
ବ୍ୟାଧ ଧନୁରେ ପୂରାଇ ସନ୍ଧିଅଛି ଶର ।
ଏ ସଙ୍କଟୁ ବାରେ ମୋତେ ରଖ ଚକ୍ରଧର ॥
ତୁମ୍ଭେ ବାରେ ନ ରଖିଲେ ଗଲି ମୁହିଁ ନାଶ ।
ଏ ସଙ୍କଟୁ ରଖ ମୋତେ କମଳାବିଳାସ ॥
ଏମନ୍ତ ବୋଲିଣ ଯହୁଁ ଚିନ୍ତିଲା ହରିଣୀ ।
ଚିନ୍ତିବା ମାତ୍ରେ ଜାଣିଲେ ତାହା ଚକ୍ରପାଣି ॥
ଇନ୍ଦ୍ରଙ୍କୁ ଯେ ଆଜ୍ଞାଦେଲେ ବରଷ ତୁ ନୀର ।
ଲିଭିଇ ପକାଅ ତାର ଆଗ ବୈଶ୍ୱାନର ॥
ବ୍ୟାଧକୁ ବଜ୍ର ପ୍ରହାର ତାର ପ୍ରାଣ ହର ।
ଶ୍ୱାନକୁ ସର୍ପାଘାତ ଯେ ହେଉ ତତପର ॥
ପବନର ଘାତେ ଜାଲ ବାଡ଼ ଯାଉ ଛିଡ଼ି ।
ବିଳମ୍ବ ନ କର ଇନ୍ଦ୍ର ବେଗେ ଦିଅ ଧାଡ଼ି ॥
ମହେନ୍ଦ୍ରକୁ ଆଜ୍ଞା ଯହୁଁ ଦେଲେ ଚକ୍ରଧର ।
ତତକ୍ଷଣରେ ବାସବ ଗଲେକ ସତ୍ୱର ॥
ବୃଷ୍ଟିପବନେ ଅନଳ ଜାଲ ଛିଣ୍ଡିଗଲା ।
ଶ୍ୱାନେ ସର୍ପାଘାତ ବ୍ୟାଧେ ବଜ୍ରପାତ ହେଲା ॥
ଚିନ୍ତିବା ମାତ୍ରେ ଶୁଣିଲେ ତାହା ଚକ୍ରପାଣି ।
ନିଶ୍ଚିନ୍ତ ହୋଇଣ ତହୁଁ ଗଲାକ ହରିଣୀ ॥
ଜାଣିଲୁ କି ମନ ତୁହି ଶ୍ରୀହରି ମହିମା ।
ଅପାର ଅପାର ଯାର ଅଟେ ଗୁଣ ସୀମା ॥
ଏମନ୍ତେ କେତେ ଲୋକଙ୍କୁ ଅଛନ୍ତି ଉଦ୍ଧରି ।
ତହିଁରୁ ଥୋକାଏ ତୋତେ କହିବା ବିସ୍ତାରି ॥
ଶ୍ରୀହରି ଚରିତ ତୁହି କର୍ଣ୍ଣରେ ଶୁଣିଲେ ।
ଘୋର କଳୁଷ ଖଣ୍ଡିବୁ ତୁହି ଅବହେଳେ ॥
ଶୁଣି ସୁମନ ଚୈତନ୍ୟ ପାଦ ଦେଶେ ପଡ଼ି ।
ଉଠି ଛିଡ଼ା ହେଲା ପୁଣି ଶିରେ କରଯୋଡ଼ି ॥

ଚୈତନ୍ୟ ବୋଇଲେ ତହୁଁ ଶୁଣ ହେ ସୁମନ ।
ଶ୍ରୋତା ବକ୍ତା ଦୁହେଁ ଯେବେ ହୋଇବେ ସମାନ ॥
ଶୁଣିବୁ କହିବ ତୋତେ ହରିଙ୍କର କଥା ।
ମୂର୍ଖଲୋକଙ୍କ ଆଗରେ ନ କହି ସର୍ବଥା ॥
ଯେଉଁ ଜନ ନ ଜାଣଇ ହରି କଥା ରସ ।
ତାହା ଆଗେ ନ କରିବ ଏହାକୁ ପ୍ରକାଶ ॥
ଶୁଣିଲେ ଶୁଖାଇବ ଯେ ପଚାରିଲେ କହି ।
ତେବେ ସେ ଶ୍ରୋତା ବକତା ଦୁହେଁ ତରିଯାଇ ॥
ଅପ୍ରବୁଦ୍ଧ ଲୋକଠାରେ ନ କର ପ୍ରକାଶ ।
ସେ କାହୁଁ ଜାଣିବ ମନ ନାମାମୃତ ରସ ॥
ତୁହି ଏବେ ସୁମନ ହୋ ପଚାରିଲୁ ଯେବେ ।
ତୋ ଶ୍ରଦ୍ଧା ଦେଖିବାରୁ କିଛି କହିଦେବା ହେବେ ॥
ଶୁଣ ହୋ ସୁମନ ତୁହି କୃଷ୍ଣ ଗୁଣ କୀର୍ତ୍ତି ।
ତୃଷାରେ ପଡ଼ିଲା ଦିନେ ଜଳେ ଯାଇ ହସ୍ତୀ ॥
ଜାଣିଣ କୁମ୍ଭୀର ତହୁଁ ଅଇଲାକ ବେଗେ ।
ତତକ୍ଷଣରେ ଧଇଲା ହସ୍ତୀପାଦ ଯୁଗେ ॥
ଗମ୍ଭୀର ଜଳକୁ ପୁଣି ଓଟାରି ନେଲାକ ।
ସ୍ଥାନ ନ ପାଇଣ ହସ୍ତୀ ଆକୁଳ ହୋଇଲା ॥
ମୃଣାଳ ଗୋଟାଏ ଗଜ ଥୋଇ ହସ୍ତେ ଟାଣି ।
ଧଇଲାକ ସେ ମୃଣାଳ ମେରୁକଳା ଜାଣି ॥
ବଳେ ମହାବଳବନ୍ତ ଅଟେ ସେ କୁମ୍ଭୀର ।
ଜଳରେ ଯେ ଶତଗୁଣ ବଳ ଅଟେ ତାର ॥
ଆତଙ୍କରେ ମହାଗଜ ଡାକେ ଆର୍ତ୍ତ କରି ।
ସଙ୍କଟ ପଡ଼ିଲା ମୋତେ ରଖ ଚକ୍ରଧାରୀ ॥
ଶୁଣିକରି ନାରାୟଣ ଚକ୍ର ଦେଲେ ପେଷି ।
ବୋଇଲେ ଗ୍ରାହର ପ୍ରାଣ ପକାଇବୁ ନାଶି ॥
ରଥାଙ୍ଗକୁ ତଆରଣ ବେଗେ ଦେଲେ ପେଷି ।
ରଖିଲୁଁ ରଖିଲୁଁ ଡାକଦେଲେ ବ୍ରହ୍ମରଣି ॥
କମଳା ବୋଇଲେ ପ୍ରଭୁ ଏହା ଅଟେ ମିଛ ।
କାହାକୁ କେଉଁଠାବରେ ରଖିଲ କହୁଛ ॥
ମୋର ଦାନ ପଡ଼ିଅଛି ଦେଖ ପଥୁ ଆଡ଼ ।
ତେଣୁକରି ଏହା ମୋତେ କୁହ ଦାଶରଥି ॥
ରଖିଲୁଁ ବୋଇଲେ ଆଜ କିଏ ଦେବ ଛାଡ଼ି ।
ଦେଖ ଦେଖ ପଥୁ ଆଡ଼ ମୋର ଅନ୍ତ ପଡ଼ି ॥
ଏତେବୋଲି ଲକ୍ଷ୍ମୀ ପଶା କାଠି କି ଧଇଲେ ।
ପଶାରେ ହାରିଲ ଆଜ ଛାଡ଼ିବ କି ଭଲେ ॥

ଶ୍ରୀହରି ବୋଇଲେ ତୁମ୍ଭେ ଶୁଣ ଗୋ ସଙ୍ଗାତ ।
ଏଥିଠାରୁ ଅଟେ ଲକ୍ଷେ ଯୋଜନର ପଥ ॥
ଗଜରାଜକୁ କୁମ୍ଭୀର ଗ୍ରାସିବାର କାଳେ ।
ତେଣୁ ଗଜରାଜ ମୋତେ ଡାକିଲା ବିକଳେ ॥
ରଖିଲି ବୋଲିଣ କହି ଚକ୍ର ପେଷିଦେଲି ।
ଗଜ ଉଦ୍ଧାରି ଗ୍ରାହକୁ ପରାଣେ ମାରିଲି ॥
ଲକ୍ଷ୍ମୀ ବୋଇଲେ ଦେଖିଲେ ମୁହିଁ ପ୍ରତେ ଯିବି
ଅସମ୍ଭବ କଥା କାହୁଁ ପ୍ରତ୍ୟୟ କରିବି ॥
ଶ୍ରୀହରି ବୋଇଲେ ଚାଲ ଦେଖିଯିବ ତହିଁ ।
ଏତେବୋଲି ତତକ୍ଷଣେ ଗରୁଡ଼ ଆରୋହି ॥
ଗରୁଡ଼ ପୃଷ୍ଠରେ ବସି ଲକ୍ଷ୍ମୀ ଦେବରାଜେ ।
ଦକ୍ଷିଣ ସାଗର ତୀରେ ହୋଇଲେକ ବିଜେ ॥
ଗଜ କୁମ୍ଭୀର ଦୁହିଙ୍କ ଅମରଣ ଯହିଁ ।
ସେଠାରେ ପ୍ରବେଶ ହେଲେ ଲକ୍ଷ୍ମୀଦେବୀସାଇଁ ॥
ଦେଖିଲେ ରୁଧିରମୟ ହୋଇଅଛି ଜଳ ।
ଅସାଷ୍ଟମ ହୋଇ ଗଜ ରହିଅଛି କୂଳ ॥
ତାହାଦେଖି ମହାଲକ୍ଷ୍ମୀ ହୋଇଲେ କାତର ।
ଜଗପତି ପାଦେ ନେଇ ଲଗାଇଲେ ଶିର ॥
ବୋଇଲେ ମୁଁ ଦ୍ରୋହକଲି ନ ଧରିବ ଦୋଷ ।
ତୁମ୍ଭେ ମୋର ପଥ୍ରିଭୁତ ଅଟ ପୀତବାସ ॥
ତୁମ୍ଭେ ଅଟ ମହାପ୍ରଭୁ ସବୁ କରିପାର ।
ମୁଁ ଛାର ସ୍ତ୍ରୀଜନମ ଦୋଷ ମୋ ନ ଧର ॥
ଏତେ ଦୂର କଥା ପ୍ରଭୁ କେମନ୍ତେ ହେଲା ଦୃଶ୍ୟ ।
ଗଜଉଦ୍ଧାରି ଗ୍ରାହକୁ ପ୍ରାଣେ କଲ ନାଶ ॥
ଶୁଣି ନାରାୟଣ ତହୁଁ ପ୍ରିୟା ଭୁଜଧରି ।
ବୋଇଲେ ଉଠ ସୁନ୍ଦରୀ ମୋର ପ୍ରାଣେଶ୍ୱରୀ ॥
ଘଟେ୨ ପୂରିଅଛି ମୁହିଁ ସଙ୍ଗାତୁଣୀ ।
ଅତଙ୍କକାଳରେ ମୋତେ ଶରନ୍ତ ଯେଉଁ ପ୍ରାଣୀ
କର୍ଣ୍ଣରେ କହିଲ ପ୍ରାୟ ତାହା ମୁଁ ମଣଇ ।
ସେହିକ୍ଷଣି ତା ବିପତ୍ତି ବିନାଶି ଦିଅଇ ॥
ଏହିକଥା ସତ୍ୟ ମୋର ଶୁଣ ପ୍ରାଣେଶ୍ୱରି ।
ତେଣୁକରି ଅନ୍ତର୍ଯ୍ୟାମୀ ନାମଟି ମୋହରି ॥
କେ କାହାକୁ ମାରେ କିଏ କାହାର ଶରଣ ।
ଏ ସକଳ କଥାଯାକ ମୋହର ଭିଆଣ ॥
ଆମ୍ଭେ ସିନା ମାରି ପୁଣି ଆମ୍ଭେ ସିନା ତାରି ।
ଆମ୍ଭ ବିନା ଆଜ୍ଞାରେ କେ କିସ କରିପାରି ॥
ଶୁଣି ମହାଲକ୍ଷ୍ମୀ ତହୁଁ ହୋଇଲେ ସନ୍ତୋଷ ।
ଗଜକୁ ଉଦ୍ଧରି ଦେଲେ କମଳା ବିଳାସ ॥
ଲକ୍ଷ୍ମୀ ନାରାୟଣ ଦୁହେଁ ଖଗପୃଷ୍ଠେ ବସି ।
ବୈକୁଣ୍ଠ ଭୁବନେ ପୁଣି ବିଜେକଲେ ଆସି ॥
ସେ ଲକ୍ଷ୍ମୀନାରାୟଣଙ୍କ ଚରଣେ ଶରଣ ।
କହଇ ମାଧବ କବି ରଖ ନାରାୟଣ ॥
ଗଜରାଜର ମୋକ୍ଷଣ ଶୁଣନ୍ତି ଯେ ପ୍ରାଣୀ ।
ବୈକୁଣ୍ଠରେ ଠାବ ତାକୁ ଦିଅନ୍ତି ଚକ୍ରପାଣି ॥



ଅଜାମିଳ ଉଦ୍ଧାର ଉପାଖ୍ୟାନ ଓ
ବିଷ୍ଣୁଦୂତଙ୍କର ଯମଦୂତଙ୍କୁ
ନାନାବିଧ ଉପଦେଶ ।

ଶୁଣି ସୁମନ ମନରେ ଅତି ତୋଷ ହୋଇ
ଚଇତନ ପାଦେ ପଡ଼ି ପୁଣି ପଚାରଇ ॥
ଆଉ କିଛି କହ ମୋତେ ଶ୍ରୀହରି ଚରିତ ।
ତବ ମୁଖୁଁ ଶୁଣି ମୁହିଁ ହୋଇବି ପବିତ୍ର ॥
ପାପିଙ୍କୁ କେଉଁଠି ପ୍ରଭୁ ଅଛନ୍ତି ଉଦ୍ଧରି ।
ଜାଣିଥିଲେ ସେହିକଥା କହିବ ବିସ୍ତାରି ॥
କହୁଛନ୍ତି ଚଇତନ ମନରାଜା ଶୁଣ ।
ଅଜାମିଳ ନାମେ ଏକ ଥିଲେ ବ୍ରାହ୍ମଣ ॥
ଜନ୍ମରୁ ମୂରୁଖ ସେହୁ କିଛି ନ ଜାଣଇ ।
ଅନେକ ପ୍ରକାରେ ସେହୁ ଧନ ସଞ୍ଚୁଥାଇ ॥
ତାଠାରୁ ବେପାରି କେହି ସଂସାରରେ ନାହିଁ ।
ମାଛ ମାଉଁସ ବିକଇ ମୁଣ୍ଡେ ବୋହି ନେଇ ॥
ଯାବତ ପଦାର୍ଥ ମାନ ଠୁଳ କରିଥାଇ ।
ଦର ବୃଦ୍ଧି ହେଲେ ସେହି ପଦାର୍ଥ ବିକଇ ॥
ଯେଉଁଠାରେ ଚଢ଼ାହୁଏ ଯେଉଁ ପଦାର୍ଥର ।
ବଳଦେ ଲଦାଇ ନେଇ ବିକେ ସେଠାବର ॥
ଦେବା ଦାମ୍ୱପଦ ତାର ହୃଦୟରେ ନାହିଁ ।
ନ ଖାଇ ନ ପିଇ ସେହୁ ଧନ ସଞ୍ଚୁଥାଇ ॥
ବିଚାରଇ ମୋ ସମାନେ ନାହିଁ ଧନବନ୍ତ ।
ଖୋଜିଲେ ନ ଥିବ ଜଣେ କେହି ଏ ଜଗତ ॥
ଭାରିଯାର ନାମ ତାର ଅଟେ ଚନ୍ଦ୍ରକାନ୍ତି
ଏକଇ ଭାରିଯା ତାର ଏକଇ ଦୁହିତୀ ॥
ଏକଗୋଟି ପୁତ୍ର ପୁଣି ନାମ ନାରାୟଣ ।
ବହୁତ ଅନ୍ୟାୟ କରି ବଞ୍ଚଇ ବ୍ରାହ୍ମଣ ॥

ତାହାଠାରୁ ମହାପାପୀ ସଂସାରରେ ନାହିଁ ।
ଦତେନ ସେହୁ ରାମ ରାମ ତୁଣ୍ଡେ ନ ବୋଲଇ ॥
ଏମନ୍ତ ହୋଇଣ ତହୁଁ କେତେକାଳ ଗଲା ।
ବ୍ରାହ୍ମଣ ମୃତ୍ୟୁ ସମୟ ପ୍ରବେଶ ହୋଇଲା ॥
ପାପପାଶେ ଯମଦୂତ ହୋଇଲେ ପରବେଶ ।
ଦେଖିଣ ଅଜାମିଳକୁ କରନ୍ତି ସେ ରୋଷ ॥
କେ ବୋଲଇ ମାର ମାର କେ ବୋଲଇ ବାନ୍ଧ
କେହି ବୋଲେ ରଜ୍ଜୁ ନେଇ ପାଦ ପାଣି ଛନ୍ଦ ॥
କେ ବୋଲଇ ବେଗେ ତାକୁ ଆଣ ରେ ଉଚ୍ଛୁଡ଼
କେହି ପୁଣି ଉଠାଇଛନ୍ତି ଧରି ଲୁହା ବାଡ଼ ॥
କେ ଆଖି ତରାଟି କରି ଜିହ୍ୱାକୁ କାମୋଡ଼ ।
ବୋଲଇ ଏହାର ଚକ୍ଷୁ ବେଗେ ପକା ତାଡ଼ ॥
କେହି ବୋଲଇ ଏହାକୁ ନ ରଖିବା ଦଣ୍ଡେ ।
ବାନ୍ଧି ପତାଳ ନର୍କରେ ପକାଇବା ରଣ୍ଡେ ॥
ପୂର୍ବର ପାପ ସମସ୍ତ ତାର ପାଶେ ଯାଇ ।
ଗୃହ ପାଖରେ ବେଢ଼ିଲେ ମୂର୍ତ୍ତିମନ୍ତ ହୋଇ ॥
ଶ୍ୱାନ ଶୃଗାଳ ବାୟସ ଗୃଧ୍ରରୂପ ଧରି ।
ଘେରିଲେ ପାଶେ ତାହାର ଏହିରୂପ କରି ॥
କେହି ଦନ୍ତ ମାରେ କେହି ଅଙ୍ଗୁରେ କାମୁଡ଼େ ।
କେହି ପାଦକୁ କାମୋଡ଼ି ଦେହକୁ ଘୋଷାଡ଼େ ॥
ତାହା ଦେଖିଣ ବିକଳ ହୋଇଲା ବ୍ରାହ୍ମଣ ।
ପୁତ୍ରକୁ ଡାକିଲା ତାର ରଖ ନାରାୟଣ ॥
ଏତେ ବୋଲିଣ ତାହାର ପ୍ରାଣ ଗଲା ଛାଡ଼ି ।
ତତକ୍ଷଣେ ଯମଦୂତେ ସୂକ୍ଷ୍ମପିଣ୍ଡ କାଢ଼ି ॥
ଚର୍ମ ରଜ୍ଜୁରେ ଭିଡ଼ିଲେ ତାର ପାଦପାଣି ।
କେ ମାରେ ବିଢ଼ା ଗୋଇଠା କେ ମାରେ କହୁଣି
ପାପି ଠାରେ ଦୟାପଦ ଏକାବେଳେ ଛାଡ଼ି ।
ଚଳି ନ ପାରିଲେ ତାକୁ ନିଅନ୍ତି ଘୋଷାଡ଼ି ॥
ଏହିରୂପେ ନେଉଛନ୍ତି ନାନାକଷ୍ଟ ଦେଇ ।
ତା ଜାଣିଲେ ଅନ୍ତର୍ଯ୍ୟାମୀ ଦେବ ସ୍ୱବରାହ୍ମୀ ॥
ତତକ୍ଷଣେ ବିଷ୍ଣୁଦୂତ ଡକାଇଲେ ପାଶ ।
ବୋଇଲେ ମୋର ଭକ୍ତକୁ ବେଗେ ଘେନିଆସ
ମରିବାର ବେଳେ ଯେହୁ ଧରେ ମୋର ନାମ ।
ତାହାଠାରେ ଅଧିକାର କିପାଁ କରେ ଯମ ॥
ଯମଦୂତମାନେ ତାକୁ କୋପଭର ହୋଇ ।
ପ୍ରେତପିଣ୍ଡ ନେଉଛନ୍ତି ତାର ଘୋସଡ଼ାଇ ॥

ରଥ ଘେନି ତୁମ୍ଭେମାନେ ଚଳ ଶୀଘ୍ରତର ।
ମାର ସେ ଯମଦୂତଙ୍କୁ ଜଟପ୍ରାୟ ନ କର ॥
ପ୍ରଭୁଙ୍କ ଆଜ୍ଞା ପ୍ରମାଣେ ଗଲେ ବିଷ୍ଣୁ ଦୂତ ।
ବାଟରେ ଭେଟିଲେ ଯମଦୂତଙ୍କ ସହିତ ॥
ତାହାଙ୍କୁ ରହି ବୋଲନ୍ତି ବିଷ୍ଣୁଙ୍କର ଦୂତ ।
ଛାଡ଼ ଛାଡ଼ ଏହାକୁ ଏ ବିଷ୍ଣୁଙ୍କ ଭକତ ॥
ଯମଦୂତେ ବୋଇଲେ ଏ ଅତି ମହାପାପୀ ।
ଏହାର ପାପ କେହୁ କି କହିବ ସଂକ୍ଷେପି ॥
ଏହାର ପରାୟେ ପାପୀ ନ ମିଳିବ ଜଣେ ।
ନ ଜାଣି କିପାଇଁ କୋପ କର ବିଷ୍ଣୁଗଣେ ॥
ଏହାକୁ ନେବ ଯଦ୍ୟପି ବଇକୁଣ୍ଠପୁର ।
ଯମ କରିବ କା ଠାରେ ଆଉ ଅଧିକାର ॥
ବିଷ୍ଣୁଦୂତେ ବୋଇଲେ ଏ ମରଣର କାଳେ ।
କି ଡାକିଲା ନ ଶୁଣିଲ ତୁମ୍ଭ କର୍ଣ୍ଣବଳେ ॥
ଯମଦୂତ ବୋଇଲେ ଏ ଆମ୍ଭର ଭକ୍ଷ୍ୟଣ ।
ପୁତ୍ରକୁ ଡାକିଲା ତାର ରଖ ନାରାୟଣ ॥
ଏତେ ବୋଲି ତା ପିଣ୍ଡରୁ ପ୍ରାଣଗଲା ଛାଡ଼ି ।
ତକ୍ଷଣେ ବାନ୍ଧିଲୁ ଆମ୍ଭେ ଚର୍ମରଜ୍ଜୁ ଭିଡ଼ି ॥
ମହା ପାପୀ ବୋଲି ଆମ୍ଭେ ଦେଉଅଛୁ ଦଣ୍ଡ ।
ଏଥକୁ କାହିଁକି ତୁମ୍ଭେ ହେଉଛ ପ୍ରଚଣ୍ଡ ॥
ବିଷ୍ଣୁଦୂତେ ବୋଇଲେ ରେ ଯମଦୂତେ ଶୁଣ
ଯେତେବେଳେ ବୋଇଲା ଏହୁ ନାରାୟଣ ॥
ସେକ୍ଷଣି ତାର ସକଳ ପାପକ୍ଷୟ ଗଲା ।
ତେଣୁ ବଇକୁଣ୍ଠପୁର ଯୋଗ୍ୟ ଏ ହୋଇଲା ॥
ଆଜହୁଁ ଆମ୍ଭର କଥା ତୁମ୍ଭେମାନେ ଶୁଣ ।
ପ୍ରାଣ ଗଲାବେଳେ ବୋଲେ ଯେବେ ନାରାୟଣ ॥
ଏକାଥରେ ବୋଲି ଯେବେ ଛାଡ଼ିଯିବ ପ୍ରାଣ ।
ତାର ପାଖକୁ ନ ଯିବ ତୁମ୍ଭେ ଯମଗଣ ॥
ଆମ୍ଭେ ନେବୁ ଏଥେ ତୁମ୍ଭ ଅଧିକାର ନାହିଁ ।
ଏତେ ବୋଲି ବିଷ୍ଣୁଗଣେ ତାଙ୍କ ଆଗେ କହି ॥
ସାବଧାନ ହୋଇ ପୁଣି ଶୁଣ ଯମଗଣ ।
ବିଷ୍ଣୁଙ୍କର ନିରଧାର ଆଜ୍ଞା ପରମାଣ ॥
ପରଧନ ପରସ୍ତ୍ରୀ ଯାର ଲୋଭ ନାହିଁ ।
ପରପ୍ରତି ମନ୍ଦ ଚିନ୍ତା ଯେହୁ ନ କରଇ ॥
ଯେଉଁ ଲୋକ ହରିହର ଦର୍ଶନ କରନ୍ତି ।
ନିତି ଜଳ ଦେଇ ଯେହୁ ତୁଳସୀ ସେବନ୍ତି ॥

ଅତିଥିଙ୍କ ଆରାଧନା କରେ ଯେଉଁ ଜନ ।
ବିଷ୍ଣୁ କଥା ଶୁଣି ଯାର ଆନନ୍ଦିତ ମନ ॥
ଯେ ଜନ ନିତ୍ୟ ନିର୍ମାଲ୍ୟ ସେବନ କରଇ ।
ତୁଳସୀ ତିଳକ ଯେହ୍ନ ଲଲାଟେ ଲେଖଇ ॥
ଅତ୍ୟନ୍ତରେ ମହାପାପୀ ଯେବେ ହୋଇଥିବ ।
ବିଷ୍ଣୁଙ୍କର ନାମ ଶୁଣି ପ୍ରାଣ ବିସର୍ଜିବ ॥
ସେହ୍ନ ଲୋକମାନଙ୍କର ନ ଯିବୁ ତୁ ପାଶ ।
ଏ ସର୍ବେ ଅଟନ୍ତି ଜାଣ ବିଷ୍ଣୁଙ୍କ ସେବକ ॥
ଏହି ଚରିତ୍ରକୁ ଦିନେ ବୈକୁଣ୍ଠପୁରେ ।
ଶ୍ରୀକୃଷ୍ଣ କହୁଥିଲେ ଯେ କମଳା ଆଗରେ ॥
ଆମ୍ଭେମାନେ ପାର୍ଶ୍ୱରେ ଶୁଣିଅଛୁ ଯାହା ।
ତୁମ୍ଭ ଆଗରେ ସେହିଠାଣି କହିଦେଲୁଁ ତାହା ॥
ଶୁଣି କରି ଯମଗଣ କରନ୍ତି ଉତ୍ତର ।
ଆଉ କେଉଁଠି କରିବୁଁ ଯାଇ ଅଧିକାର ॥
ବିଷ୍ଣୁଙ୍କ ଦୂତେ ବୋଇଲେ ଶୁଣ ଯମଦୂତ ।
କମଳା ପଚାରି ଥିଲେ ତାହାର ବୃତ୍ତାନ୍ତ ॥
ତାହା ମଧ୍ୟ ବୁଝାଇଣ କହିବା ତୁମ୍ଭଙ୍କୁ ।
ଯେତେ କଥା କହିଥିଲେ ଦେବୀ କମଳାଙ୍କୁ ॥
କମଳା ବୋଇଲେ ଶୁଣ ପ୍ରଭୁ ଭଗବାନ ।
ଏମନ୍ତ ଲୋକଙ୍କୁ ଆଣ ବୈକୁଣ୍ଠ ଭୁବନ ॥
ଯମ ଅଧିକାର ଆଉ କେଉଁଠି ରହିବ ।
ସେ କଥା ସଂକ୍ଷେପି ମତେ କହିଦିଅ ଦେବ ॥
ତୁମ୍ଭର ଯେ ଏହିବାକ୍ୟ ନିରାଧାର ବାଣୀ ।
ପାପୀମାନେ ତରିଯିବେ ଏହିକଥା ଶୁଣି ॥
ଶ୍ରୀହରି ବୋଇଲେ ତେବେ ଶୁଣ ପ୍ରାଣପ୍ରିୟେ ।
ଠିକ ଠିକ କରି ତୋତେ କହିବୁଁ କଥାଏ ॥
ଯେବଣ ଜନ ନିରତେ ପର ଜୀବ ମାରି ।
ଆତ୍ମାକୁ ପୋଷଇ ନିତ୍ୟ ବିବାଦ କରି ॥
ପରଧନ ପରଦାରେ ଯେ ଜନ ଲମ୍ପଟୀ ।
ଯେଉଁ ଜନ ସବୁକାଳେ ହୁଅଇ କପଟୀ ॥
ବିଷ୍ଣୁର ଚରିତ ଯହିଁ କଥା ହେଉଥାଇ ।
ତାହା ଭୁଲାଇଣ ଯେହ୍ନ ଆନ କଥା କହି ॥
ପର ପ୍ରତି ଯେଉଁମାନେ ହିଂସାଭାବ ଘେନି ।
ପଶୁଙ୍କ ପ୍ରାୟେ ବଞ୍ଚନ୍ତି ଦିବସ ରଜନୀ ॥
ରାମ ନାରାୟଣ ଯେହ୍ନ ନ ବୋଲନ୍ତି ତୁଣ୍ଡେ ।
ବୃଥାରେ କାଳ କଟାନ୍ତି ଯେବଣ ପାଷାଣ୍ଡେ ॥

ଆପେ ନ ଦେଇ ପରକୁ ଯେହ୍ନ ମନା କରେ ।
ଆହାର ଦେଇ ଜନ୍ତୁଙ୍କୁ ଯେଉଁ ନର ମାରେ ॥
ତୃଷାର୍ତ୍ତରେ ଗୋରୁ ଯେବେ ପିଉଥିବେ ପାଣି ।
ତାହାଙ୍କୁ ଘଉଡ଼ାଇଣ ଦିଏ ଯେଉଁ ପ୍ରାଣୀ ॥
ବାଟେ ଥିବା ଗଛମାନ ଯେହ୍ନ କରେ ନାଶ ।
ସାଧୁଜନଙ୍କୁ ଦେଖି ଯେ କରେ ଉପହାସ ॥
ଅନ୍ୟ ସଙ୍ଗତରେ ବିଷ ଦିଏ ଯେଉଁ ଜନ ।
ଗୃହ ପୋଡ଼ିଦିଅନ୍ତି ଯେହ୍ନ ଗୁଞ୍ଜି ହୁତାଶନ ॥
ପୁରାଣ ଶୁଣି ଯେ ଜନ କରେ ଉପହାସ ।
ଏକାଦଶୀ ଦିନ ଯେହ୍ନ ଅନ୍ନ କରେ ଗ୍ରାସ ॥
ଅପମାନ କରେ ଯେହ୍ନ ବ୍ରାହ୍ମଣଙ୍କୁ ଦେଖି ।
ନମସ୍କାର ନ କରଇ ଆସନ ଉପେକ୍ଷି ॥
ଦାନ ଦେଇ ଲୋଭକରି ପୁଣି ଯେ ହରନ୍ତି ।
ନିଅବା ସଭାରେ ପକ୍ଷ ହୋଇଣ କହନ୍ତି ॥
ପରଧର୍ମ କୀର୍ତ୍ତିମାନ ଯେ କରେ ବିନାଶ ।
ସାଧୁଜନଙ୍କୁ ଦେଖିଣ କରନ୍ତି ନିରାଶ ॥
ଆପଣା ବଡ଼ିମା ଆପେ ଯେହ୍ନ କହୁଥାଇ ।
ରାଜପଥେ ଯେଉଁ ଲୋକ ଖାତ ଖୋଳୁଥାଇ ॥
ଖଟୁଆ ବୁଦ୍ଧିରେ ଯେହ୍ନ ପରେ ନିରେ ନାଶ ।
ଜୀବ ଦର୍ଶନେ ଆମିଷ ଯେହ୍ନ କରେ ଗ୍ରାସ ॥
ଜଳରେ ଉଲଗ୍ନ ହୋଇ ଯେ ଜନ ପଶଇ ।
ଜଳଘାଟେ ବସି ଯେହ୍ନ ଜନ୍ତୁ ବିନାଶଇ ॥
କୁତ୍ସିତ କର୍ମରେ ଯେହ୍ନ ବଞ୍ଚୁଥାଇ ଦିନ ।
ଭୋକିଲୋକ ମାଗିଲେ ଯେ ନ ଦିଅଇ ଅନ୍ନ ।
ପୋଷିବାର ଜନ୍ତୁକୁ ଯେ କରଇ ବିନାଶ ।
ବାଟେରେ କଣ୍ଟା ପକାଏ ଯେବଣ ପୁରୁଷ ॥
ଶ୍ରୀମହା ପ୍ରସାଦ ଯେହ୍ନ ଧରି ନିନ୍ଦା କରେ ।
ଦୋଷ ଥାଉଁ ଥାଉଁ ତାର ଯେ ନିୟମ କରେ ॥
ଆଶା ଦେଇଣ ଯେ ଜନ କରଇ ନିରାଶ ।
ପିତୃଶ୍ରାଦ୍ଧ ଦିନ ଯେହ୍ନ ଇଚ୍ଛେ ଉତ୍ତରସ ॥
ଦେବତା ବ୍ରାହ୍ମଣଙ୍କର ହରେ ଯେହ୍ନ ବିତ୍ତ ।
ମାତା ପିତା ଛାଡ଼ି ଯେହ୍ନ ପରେ କରେ ହିତ ॥
ମାତା ପିତା ଗୁରୁଙ୍କୁ ଯେ କରଇ ନିରାଶ ।
ନ ଦେଇ ବଚନେ ଯେହ୍ନ କରଇ ବିରସ
କୃଷ୍ଣରସ ଛାଡ଼ି ଯେହ୍ନ ପଶାଗୃହେ ଖେଳ
ମୁଖରେ ନ ବୋଲଇ ଯେ ରାମ ବନ ମାଳୀ ॥

ବିନା କାରଣରେ ଯେହ୍ନେ ପାଉଥାଏ ଦୁଃଖ ।
ହରି କଥା ଶୁଣି ଯେହ୍ନେ ହୁଅଇ ବିମୁଖ ॥
ଗୁରୁପା ମୁଖରୁ ଯେହ୍ନେ ମନ୍ତ୍ର କଥା ଶୁଣି ।
~~ମାତା ପିତାଙ୍କୁ~~ ଦଣ୍ଡଇ ପ୍ରକୃତ ନ ଜାଣି ॥
ଯେ ଯାହାକୁ ଅନ୍ନବସ୍ତ୍ର ଦେଇକରି ପୋଷେ ।
ସେ ଯେବେ ନାଶ ପାଇଁଲ ରଜନୀ ଦିବସେ ॥
ବିଶ୍ୱାସ ଦେଖାଇ ଯେହ୍ନେ ପରଧନ ନେଇ ।
ମାଗିଗଲେ ତାହାକୁ ସେ ମାରି ଘଉଡ଼ାଇ ॥
ବହୁତ ଗୋଧନ ଯେହ୍ନେ ରଖେ ଠୁଳ କରି ।
ମରି ହଜି ଗଲେ ପୁଣି ସଖୋଳି ନ ପାରି ॥
ବ୍ୟାଧିମନ୍ତ ହୋଇଣ ଯେ ମରିଯାନ୍ତି ଦୁଃଖେ ।
ତାଙ୍କୁ ନ ଦେଖଇ ଯେହ୍ନେ ଆପେ ଥାଇ ସୁଖେ ॥
ନ ଥିବା ଲୋକର ଯେହ୍ନେ ସାହୁ ହୋଇଥାଇ ।
ସାନ ମାଣେ ଦେଇ ବଡ଼ ମାଣରେ ନିଅଇ ॥
ନ ଦେଇ ଲେଖିଆଣନ୍ତି ଭଣ୍ଡୁଆଇ ଦେଇ ।
ତାହାଙ୍କୁ ନର୍କବିନାରେ ଆନ ଗତି ନାହିଁ ॥
ଏହି ପରକାରେ ଆଉ ଅଛନ୍ତି ବହୁତ ।
ସାବଧାନ ହୋଇ ତୁମ୍ଭେ ଶୁଣ ଯମଦୂତ ॥
ଏମନ୍ତ ଲୋକର ଯାବେ ପ୍ରାଣ ଯିବାବେଳେ ।
ରାମ ଗୋବିନ୍ଦଙ୍କ ନାମ ବୋଲେ ଏକାବେଳେ ॥
ସକଳ ପାତକ ତାର ଅଙ୍ଗୁ ହୁଏ ନାଶ ।
ତେଣୁ ସେହ୍ନେ ହୁଏ ପୁଣି ବିଷ୍ଣୁଙ୍କର ଦାସ ॥
ସେକ୍ଷଣି ଦୃଶ୍ୟ ହୁଅନ୍ତି ତାକୁ ବନମାଳୀ ।
ସେଥିପାଇଁକି ସେ ଲୋକ ରାମ ପାଟେ ବୋଲି ॥
ଏମନ୍ତ ବୋଲି ଯେ ନର ନ ଧରିବ ତୁଣ୍ଡେ ।
ସେ ନଷ୍ଟେ କାରଣ ହେବ ତୁମ୍ଭ କାଳଦଣ୍ଡେ ॥
ତାହାକୁ ବିବିଧଦଣ୍ଡ ତୁମ୍ଭେମାନେ ଦେବ ।
ବାନ୍ଧିନେଇ ନର୍କକୁଣ୍ଡ ମଧ୍ୟେ ପକାଇବ ॥
ଦୋଷା ଦୋଷକୁ ବିଚାରି ଏବେ କାର୍ଯ୍ୟକର ।
ପୂର୍ବ ପୁଣ୍ୟଥିଲେ ସେହ୍ନେ ପାଇବ ଉଦ୍ଧାର ॥
ଏହିରୂପେ କମଳାଙ୍କୁ ହରି ଥିଲେ କହି ।
ଆମ୍ଭେମାନେ ଶୁଣିଅଛୁଁ ପାରୁଶରେ ଥାଇ ॥
ତୁମ୍ଭେ ଜନ୍ତୁପତିକି ହୋ ଏହା କହ ଯାଇ ।
ଶୁଣିଲେ କିସ ବୋଲିବ ଶୁଣିବଟି ତହିଁ ॥
ଏହା ଶୁଣି ଯମଦୂତେ ଯମପୁରେ ଗଲେ ।
ନାଶକର ପାଶେ ସବୁ ବୃତ୍ତାନ୍ତ କହିଲେ ॥

ତାହା ଶୁଣି ଯମରାଜା ହେଲେ ତୋଷରେ ।
ଦୂତଙ୍କୁ ବୋଇଲେ ଏହା ଅଟଇ ଯଥାର୍ଥ ॥
ତୁମ୍ଭଙ୍କୁ କହିଲେ ଯାହା ବିଷ୍ଣୁ ଦୂତଗଣ ।
ଏହିକଥା ନିରାଧାର ଅଟଇ ପ୍ରମାଣ ॥
ଏହି କଥାକୁ ବିଚାରି ଏବେ କାର୍ଯ୍ୟ କର ।
ନୋହିଲେ ନିଶ୍ଚେ ଦଣ୍ଡିବେ ମୋତେ ଚକ୍ରଧର ॥
ଭୃତ୍ୟ ଦୋଷରେ ସାମନ୍ତ ହୁଏ ଦୋଷକାରୀ ।
ଏଣୁକରି କାର୍ଯ୍ୟ ତୁମ୍ଭେ କରିବ ବିଚାରି ॥
ମୋହର ପ୍ରାୟ ଅନେକ ଜାଣ ନାଶକର ।
ହରିଠାରୁ ପାଇଅନ୍ତି ମୋର ଅଧିକାର ॥
ଅଳପ ଦିନରେ ପୁଣି ଛାଡ଼ିଯାଏ ପଣ ।
ମହିମା ସାଗର ସେହ୍ନେ ପ୍ରଭୁ ନାରାୟଣ ॥
ଏହି ଚଉଦ ଭୁବନ ଆଦି ଚରାଚର ।
ସ୍ଥାବର ଜଙ୍ଗମ ପୁଣି ମେଦିନୀ ସାଗର ॥
ବ୍ରହ୍ମା ଶିବମୂଳେ ଛନ୍ତି ଯେତେ ସୁରମୁନି ।
ଲୀଳା କୌତୁକ କରନ୍ତି ତାଙ୍କୁ ସଙ୍ଗେ ଘେନି ॥
ଥୋକାଏକ ଦିନ ପୁଣି କଉତୁକ କରି ।
ପୁନରପି ତାହାଙ୍କର ଗର୍ଭରେ ସଂହରି ॥
ସେହି ନିରାକାର ସ୍ୱାମୀ ଥାନ୍ତି ସଙ୍ଗ ହୋଇ ।
ଏମନ୍ତ ହୋଇଣ ତହୁଁ କେତେଦିନ ଯାଇ ॥
ପୁଣି ଯେତେବେଳେ ଲୀଳାକୁ ହୁଏ ତାଙ୍କ ଚିତ୍ତ ।
ତତକ୍ଷଣେ ଶରୀରରୁ କରନ୍ତି ସେ ଜାତ ॥
ଯେ ଯାହାର ଅନୁରୂପେ ଦିଅନ୍ତି ଅଧିକାର ।
ତକ୍ଷଣେ ଧରଣୀ ପୁଣି ଦିଶଇ ସୁନ୍ଦର ॥
ନାରାୟଣଙ୍କର ନେତ୍ର ପଲକ ବାରତା ।
ନ ଜାଣନ୍ତି ଶିବ ଆଉ ନ ଜାଣନ୍ତି ଧାତା ॥
ସମସ୍ତ ବ୍ରହ୍ମାଣ୍ଡପାକ ଯାହା ରୋମମୂଳେ ।
ସେବା କରି ରହିଛନ୍ତି ଶ୍ରୀପାଦ କମଳେ ॥
ଏମନ୍ତ ମହିମା ମାନ ଯାର ଅଟେ ପୁଣ ।
ମୋହର ପରାଏ ଯମ କେତେ ଗଲେ ଜାଣ ॥
କୋଟି କୋଟି ଯୁଗ ଆଉ ଅଛି ଏହିମତେ ।
ବିଷ୍ଣୁଙ୍କର ଲୀଳା ସିନା ଅଟଇ ଜଗତେ ॥
ଶୁଣିଣ ସେ ଯମଗଣେ ମହାତ୍ରାସ ପାଇ ।
ପାଦରେ ପଡ଼ି ଉଠିଲେ ଶିରେ କର ଦେଇ ॥
ବୋଇଲେ ତୁମ୍ଭର ଆଜ୍ଞା ପରମାଣେ ଥି ।
ଯେ ଆଜ୍ଞା କରିବ ପ୍ରଭୁ ସେ ଆଜ୍ଞା କରିବୁଁ ॥

ଏମନ୍ତ ଶୁଣି ରହିଲେ ତହୁଁ ଯମଗଣ ।
ଏଥୁ ଅନନ୍ତରେ ଶୁଣ ହୋ ମନ ସୁଜାଣ ॥
ଯହୁଁ ଏହି ଯମଗଣ ସେଠାରୁ ଚଳିଲେ ।
ଅଜାମିଳକୁ ଘେନିଣ ବିଷ୍ଣୁ ଦୂତେ ଗଲେ ॥
ବୈକୁଣ୍ଠପୁରରେ ଯାଇ ହେଲେ ପରବେଶ ।
ଦେଖିଣ ତାହାକୁ ଦୟା କଲେ ପୀତବାସ ॥
ଅଜାମିଳ ଦେଖିକରି ପ୍ରଭୁ ପଦ୍ମମୁଖ ।
ତତକ୍ଷଣେ ଖଣ୍ଡିଲା ସେହୁ ତାର ସର୍ବ ଦୁଃଖ ॥
ଚରଣ ତଳରେ ପଡ଼ି କହଇ ବଚନ ।
ତ୍ରାହି ତ୍ରାହି ଆହେ ପ୍ରଭୁ ପତିତ ତାରଣ ॥
ମୋ ଠାରୁଁ ଦୁର୍ଜନ ଆଉ ପାପି ମୂର୍ଖପଣେ ।
ଖୋଜିଲେ ନ ଥିବେ କେହି ସଂସାରରେ ଜଣେ
ଅତିଅନ୍ତ ପାପୀ ମୁହିଁ ଅତ୍ୟନ୍ତ ଦୁର୍ଜନ ।
ଧନଲୋଭେ ହରାଇଲି ମୋର ସଦଜ୍ଞାନ ॥
ଧର୍ମଶାସ୍ତ୍ର ପୁରାଣକୁ ନ ଶୁଣିଲି କର୍ଣ୍ଣେ ।
ଅଧର୍ମ ଆଚରଣରେ କଟାଇଲି ଦିନ ॥
ଜନ୍ମହେଲେ ମୃତ୍ୟୁ ତାର ଅଟଇ ନିଦାନ ।
ଏହାକୁ ମୁଁ ନ ଜାଣିଲି ମୋର ମୂଢ଼ପଣ ॥
ଲୋଭ ମୋହ କ୍ରୋଧ ହିଂସା ଏହି କାମ ଚୋର ।
ଷଡ଼ଶ ପ୍ରକୃତି ପାର୍ଥିମନ ଆଦି କରି ॥
ତେଣୁକରି ତୁମ୍ଭନାମ ପାଶୋରିଲି ଡାକେ ।
ନର୍କପଙ୍କେ ବୁଡ଼ିଲି ଏହି ତୁମ୍ଭ ମାୟା ଜଳେ ॥
ପୁତ୍ର ଧନ ଭାରିଯାରେ ଦେଇଥାଇ ଧ୍ୟାନ ।
ଯେତେ ଅର୍ଜିଲେ ସନ୍ତୋଷ କେବେ ନୁହେ ମନ
ପୁଣି ବାଞ୍ଛା କରୁଥାଏ ଆହୁରି ଆହୁରି ।
ମୁଖେ ଦିନେ ନ ବୋଇଲି ରାମକୃଷ୍ଣ ହରି ॥
ବହୁଧନ ଅର୍ଜି ମୁହିଁ ରଖି ଠୁଳକରି ।
ବୋଇଲି ଖାଇବେ ମୋର ପୁତ୍ର ଆଉ ନାରୀ ॥
ବିଷ୍ଣୁ ପ୍ରୀତ୍ୟର୍ଥେ ନ କଲି କିଛି ଦାନ ପୁଣ୍ୟେ ।
ବିଚାରିଲି ବ୍ୟୟ କଲେ ସରିଯିବ ଧନ ॥
ଏମନ୍ତ କରିଣ ମୁହିଁ କାଳ କଟାଇଲି ।
ଆୟୁଶେଷ ହୋଇବାରୁ ମୃତ୍ୟୁକୁ ଲଭିଲି ॥
ଯେଉଁ ପୁତ୍ରକୁ ପିତା ସ୍ନେହେ ଥାଏ ପାଳି ।
ସେ ପୁଣି ମୁଖେ ନେଇଣ ଅଗ୍ନି ଦିଏ ଜାଳି ॥
ଭାରିଯା ହାତଚୁଡ଼ିକୁ ଘରୁ ଦିଏ କାଢ଼ି ।
ଲୋକାଚାର ମତେ ସେହୁ ହୁଏ ଛେଡ଼ୋକାଡ଼ି ॥
ଜ୍ଞାତି କୁଟୁମ୍ବାଦି ସର୍ବେ ଏକତ୍ର ହୁଅନ୍ତି ।
ଶ୍ମଶାନ ଭୂମିରେ ଶବ ନେଇ ପୋଡ଼ିଦିଅନ୍ତି ॥
ସ୍ନାହାନ ଶଉଚ ହୋଇ ତହୁଁ ଘରେ ଆସି ।
ଶୀତଳ ଖାଆନ୍ତି ସର୍ବେ ଏକତ୍ରରେ ବସି ॥
ଦଶଦିନେ କ୍ଷୌରକର୍ମ ଏକାଦଶେ ଶାନ୍ତି ।
ଦ୍ୱାଦଶରେ ମାଛ ଭାତ ବସି ଖାଏ ରାଣ୍ଡୀ ॥
ଏତେକେ ସକଳ କଥା ତାର ସରିଗଲା ।
ଲୋକେ ପୁଛିଲେ ପୁତ୍ରକୁ ବୋଲେ ବାପା ମଲା ॥
ନୟନରେ ଦେଖି ପୁଣି ଅନୁଭବ କରି ।
ସେହିକ୍ଷଣି ସେ କଥାକୁ ଦିଅନ୍ତି ପାଶୋରି ॥
ମଲାଲୋକକୁ ନିଅନ୍ତି ଧରି ଯମଗଣ ।
ଯେତେ ଦଣ୍ଡ ଦିଅନ୍ତି ତା କେ କରେ ପ୍ରମାଣ ॥
ତେତେବେଳେ ସେହି ସୁତ ବିତ୍ତ ଦାରା ଭ୍ରାତ ।
ସେଠାରେ ରଖିତ କେହି ନୁହେ ସାମରଥ ॥
ସେହି ସକାଶୁ ଛାମୁରେ ଜଣାଉଛି ମୁହିଁ ।
ଜନ୍ମହେଲେ ଲୋଭ ମୋହ ଅବଶ୍ୟ ଲାଗଇ ॥
ଏଡ଼େବଡ଼ ପାପୀ ମତେ ଆଣିଲ ଉଦ୍ଧରି ।
ନୋହିବ ମୁଁ ଜନ୍ମମୃତ୍ୟୁ ଅବା ଦେହଧାରୀ ॥
ସର୍ବଦା ତୁମ୍ଭ ଚରଣେ କରୁଥିବି ସେବା ।
ହେ ଜଗତ ନାଥ ମୋତେ ଏହି କୃପା ହେବା ॥
ଜନ୍ମମରଣକୁ ଏବେ ମୋର ବଡ଼ ଡର ।
ଆହେ ନାରାୟଣ ମତେ ଏମନ୍ତ ନ କର ॥
ହସି ଶ୍ରୀକୃଷ୍ଣ ବୋଇଲେ ବିପ୍ରବର ଶୁଣ ।
ସଂସାର ସାଗର ଏ ଯେ ଆମ୍ଭର ଭିଆଣ ॥
ଜନ୍ମହୋଇ ଏଥେ ଯେବେ ନ ମରିବେ ନର ।
କେମନ୍ତେ ଚଳିବ ତେବେ ସଂସାର ବେଭାର ॥
କର୍ମଭୂମି ବିନା ସେହୁ ଅଟେ ମଧ୍ୟପୁର ।
ସକଳ ଜନ୍ମରୁ ନର ଜନ୍ମ ଅଟେ ସାର ॥
ଏ ସଂସାରେ ବେଦ ବିଦ୍ୟା ସକଳ ବିଧାନ ।
ମୁକ୍ତି ଗତି ବିନା କର୍ମେ ଲଭିଥାନ୍ତି ଜନ ॥
କେଉଁ କର୍ମ କରିଲେ ନର୍କଗତି ପାଇ ।
କେଉଁ କର୍ମ କରିଲେ ମୁକତି ଲଭଇ ॥
କେଉଁ କର୍ମେ ସଂସାରୁ ହୋଇଯାଏ ପାର ।
କେଉଁ କର୍ମ କରିଲେ ବସେ ସ୍ୱର୍ଗପୁର ॥
କେଉଁ କର୍ମ କରିଲେ ଭେଟେ ଆସି ମୋତେ
ଏହିକଥାକୁ ସଂକ୍ଷେପି କହିଦେବା ତୋତେ ॥

ସାବଧାନ ହୋଇ ଏବେ ଶୁଣ ବିପ୍ର ତୁହି ।
କବିତ୍ୱକାରି ଜନଙ୍କ ହୃଦେ ଥାଏ ମୁହିଁ ॥
ସେ ଯେଉଁ ଶାସ୍ତ୍ର ବାନ୍ଧିବ ତାହା ଦୃଢ଼ ଧର ।
ତାହା ପଢ଼ି ସୁଖେ ଆସ ବଇକୁଣ୍ଠ ପୁର ॥
ସେକଥା ଶୁଣି ଅଧର୍ମ ପଥକୁ ନ ଯିବ ।
ସଂସାରେ ଥାଇ କର୍ମକୁ କେବେ ନ ଛାଡ଼ିବ ॥
ସକଳ ଜୀବଙ୍କଠାରେ ଥିବ ଦୟା ମନ ।
ପୁଣି ମୋର ପଦ୍ମପାଦେ ଦେଇଥିବ ଧ୍ୟାନ ॥
ଏ ମୋହର ନାମ ନିତ୍ୟେ ମୁଖରେ ପ୍ରକାଶି ।
ଆନେ୍ନ ନ ବୋଇଲେ ହୃଦ ପଦ୍ମେ ଥିବ ଘୋଷି ॥
ଦେବା ଦୟାପଦ ସଦା ହୃଦୟରେ ଥିବ ।
ତେବେ ସେ ଭବଜଳରୁଁ ନିଶ୍ଚିନ୍ତେ ତରିବ ॥
ଆଉ କେବେହେଁ ତାହାକୁ ନ ଲାଗିବ ତାପ ।
ପଙ୍କଜ ଦଳେ ଯେସନେ ନ ଲାଗଇ ଆପ ॥
ପଦ୍ମ ସର୍ବଦା ପାଣିରେ କରଇ ବସନ୍ତ ।
ପୁଣି ସେ ପାଣିରୁ ତାର ହେଲା ଉତପତ୍ତି ॥
ତଥାପି ତାହାଦଳରେ ନ ଲାଗଇ ନୀର ।
ତେମନ୍ତ ପ୍ରକାର ଦେଖ ଏ ଭବସାଗର ॥
ମୋପାଦେ ଯେ ଆଶ୍ରେକରେ ନାହିଁ ଭବ ମାୟା
ସର୍ବଦାରେ ଶୁଦ୍ଧମନ୍ତ ଅଟେ ତାର କାୟା ॥
ଏମନ୍ତ ନୋହିଲେ ନାହିଁ ତାର ଭବ ପାର ।
ନିଶ୍ଚୟ ଯମଦଣ୍ଡରେ ପଡ଼େ ସେହି ନର ॥
ଏହି ପ୍ରକାରେ ବିପ୍ରକୁ କହି ନାରାୟଣ ।
ବଇକୁଣ୍ଠ ପୁରେ ନେଇ ତାକୁ ଦେଲେ ସ୍ଥାନ ॥
ନିଶ୍ଚିନ୍ତରେ ଅଜାମିଳ ବୈକୁଣ୍ଠେ ରହିଲା ।
ପତିତର ଉଦ୍ଧାରଣ ନାମ ବିକାଶିଲା ॥
ଶୁଣିଲୁକି ସୁମନ ତୁ ନାମର ମହିମା ।
ଯାହା ଆଶ୍ରୟେ ଅଛନ୍ତି ମହାଦେବ ବ୍ରହ୍ମା ॥
ସେହି ମହା ପ୍ରଭୁଙ୍କର ଅଟେ ଯେ ସେବକ ।
ଜନ୍ମେ ଜନ୍ମେ ତାହାର କି ଆଉ ରହେ ଦୁଃଖ ॥
ଆହେ ସାଧୁ ଜନମାନେ ନ ଧରିବ ଦୋଷ ।
ସର୍ବଦା ତୁମ୍ଭ ଚରଣ ଅଟେ ମୋର ଆଶ ॥
ଏ ସଂସାର ଖେଳଘର ଅଟଇଟି ମିଛ ।
ଯେସନେ ସ୍ୱପନେ ପ୍ରାଣୀ ଦେଖଇ ପ୍ରତ୍ୟକ୍ଷ ॥
ନିଦ୍ରା ବିନାଶରେ ତହିଁ ଏକ ନୁହେ ସତ ।
ସେହି ପ୍ରକାରେ ସିନା ଅଟଇ ଜଗତ ॥

ଏହି ଜୀବକୁ କାରଣ ସିନା ନାରାୟଣ ।
ସେହି ପଦ୍ମପାଦେ ଯେହ୍ନୁ ପଶନ୍ତି ଶରଣ ॥
ଆଉ ସବୁ କଥାମାନ ଅଟଇ ନିଷ୍ଫଳ ।
ମରିବା କଥା ସଂସାରେ ଅଟେ ସିନା ମୂଳ ॥
ଚିରନ୍ତନ ହୋଇଥିବ ଶରୀରଇ ମନ ।
କ୍ଷଣେକେ ରହିବ ନାହିଁ ସରିବ ଯେ ଦିନ ॥
ପଥିକ ପରାଏ ଏହି ସଂସାରର ମତ ।
ଜୀବ ଆତ୍ମା ଛାଡ଼ି ଯିବ ବୃକ୍ଷ ଛାଡ଼ ପଥ ॥
ଏବେ ତୁହି ସୁମନ ହୋ ମନେ ହେତୁକର ।
ଶ୍ରୀକୃଷ୍ଣଙ୍କ ବିନୁ ଆନେ ନାହିଁ ପ୍ରତିକାର ॥
ଏ ପିଣ୍ଡରୁ ପ୍ରାଣଗଲେ ହୋଇବଟି ଦ୍ୱନ୍ଦ ।
ଲଉଡ଼ି ହଜାଇ ବୁଲେ ଯେଉଁରୂପେ ଅନ୍ଧ ॥
ଯେବେ ତୁହି କୃଷ୍ଣପାଦେ ଦେଇପାରୁ ମନ ।
ପ୍ରାଣ ଗଲାବେଳେ ସେହୁ ହୋଇବେ ପ୍ରସନ୍ନ ॥
ଦୁଃସହ କଷ୍ଟମାନଙ୍କୁ ହରିନେବେ ତୋର ।
ଏଭବ ସିନ୍ଧୁରୁ ସୁଖେ ହୋଇଯିବୁ ପାର ॥
ଆଉ ସର୍ବ କର୍ମମାନ ବ୍ୟର୍ଥ ଅଟେ ଜାଣ ।
ନିଜ ଆତ୍ମାହିତେ ଏକା ଭଜ ନାରାୟଣ ॥
ବିଷ୍ଣୁଙ୍କର ମାୟା ଏହୁ ଅଟଇ ସଂସାର ।
ଏହି ମାୟା ତ୍ୟାଗକଲେ ହୋଇବୁ ଉଦ୍ଧାର ॥
ତେଣୁ ଏ ସଂସାରେ ମନ ଧର୍ମ ଏକା ମୂଳ ।
ଆଉ ସର୍ବ କଥାମାନ ଅଟଇ ନିଷ୍ଫଳ ॥
ସେହି ପ୍ରଭୁଙ୍କର ନାମ ସଂସାରେ ଦୁର୍ଲଭ ।
ଏଭବ ଜଳଧି ମାୟା ତରଙ୍ଗକୁ ନାବ ॥
ସେହି ପ୍ରଭୁ ପଦ୍ମପାଦେ ଚିତ୍ତକୁ ଲଗାଇ ।
ତରିଯିବ ଭବଜଳ ନିଚ୍ଛ ଭୟ ନାହିଁ ॥
ବିପତ୍ତି ବିନାଶକାରୀ ଅଟେ ଯାର ବାନା ।
ଦୁସ୍ତର ସଙ୍କଟକୁ ଯା ନାମ ବଜ୍ରସେହ୍ନା ॥
ପରମ ମଙ୍ଗଳ ଅଟେ ଯାର ନାମ ଗୁଣ ।
ପଢ଼ିଲେ ଶୁଣିଲେ ନରେ ପାଇବ କାରଣ ॥
ଏମନ୍ତ ପ୍ରଭୁଙ୍କ ପଦ୍ମ ପାଦ ସେବା ଛାଡ଼ି ।
ବ୍ୟର୍ଥେ ନ ମର ନରେ ଭବଜଳେ ବୁଡ଼ି ॥
ଦୁର୍ଗମ ପଥକୁ ଏକା କୃଷ୍ଣନାମ ସଖା ।
ସେହି ପ୍ରଭୁବିନୁ କେ ନ କରନ୍ତିରେ ରକ୍ଷା ॥
ପ୍ରାଣୀକି ସଙ୍କଟ ଆସି ପଡ଼ିବାର ବେଳେ ।
ଗୋବିନ୍ଦ ରଖ ବୋଲନ୍ତି ଡାକି ଏକାବେଳେ ॥

ଯେହ୍ନେକଣି ସେ ପ୍ରାଣୀର ବିପତ୍ତି ବିନାଶି ।
ରଖନ୍ତି ସେ ମହାପ୍ରଭୁ କରୁଣା ପ୍ରକାଶି ॥
ସକଳ ବ୍ରହ୍ମାଣ୍ଡପାକ ଯାହା ଗର୍ଭଗତ ।
ସକଳ ଜୀବମଧ୍ୟରେ ଯେହ୍ନ ଯେ ଦୂରିତ ॥
ଏମନ୍ତ ପ୍ରଭୁଙ୍କ ପଦ୍ମପାଦ ସେବା ଛାଡ ।
ଅନ୍ୟଦେବତା ଭଜନ୍ତି ନରେ କିପାଁ ମୂଢ ॥
ସେ କାହିଁ ତାହାଙ୍କୁ ପୁଣି ହେବେ ବରଦାତା ।
ଯାହା ତାହାର କର୍ମରେ ଲେଖିଛନ୍ତି ବିଧାତା ॥
ଯାହା ସେ ହୋଇବ ତାହା କେ କରିବ ଆନ ।
ସକଳ ଲୋକରେ ସିନା ଥାନ୍ତି ଭଗବାନ ॥
ତାଙ୍କୁ ସିନା ଆଶ୍ରାକଲେ ସର୍ବ କର୍ମ ପାଇ ।
ଯେଉଁରୂପରେ ବୃକ୍ଷକୁ ନ ଛାଡଇ ଛାଇ ॥
ସେହିମତେ ସିନା କୃଷ୍ଣ ଆଶ୍ରିତର ଲୋକ ।
ଜନ୍ମ ଜନ୍ମାନ୍ତରେ ସୁଦ୍ଧା ନ ଛାଡଇ ପାଖ ॥
ଯେଉଁରୂପରେ ପଙ୍କଜ ଜଳମଧ୍ୟେ ଥାଇ ।
କ୍ରମେ କ୍ରମେ ଯେଉଁରୂପେ ଜ୍ୟୋତି ପ୍ରକାଶଇ ॥
ତେମନ୍ତ ପ୍ରକାରେ କୃଷ୍ଣ ଆଶ୍ରିତ ଯେ ଜନ ।
ବେଳୁବେଳ ତାହାର ଯେ ପ୍ରକାଶଇ ପୁଣ୍ୟ ॥
ଏହି ଜନମରୁ ଆର ଜନ୍ମକୁ ଅଧିକ ।
କ୍ରମେ କ୍ରମେ ହୁଏ ସେହୁ ବିଷ୍ଣୁର ସେବକ ॥
ବିଷ୍ଣୁର ଭକତ ସେହୁ ହୁଏ ଯେତେବେଳେ ।
ତାର ସଙ୍ଗେ ସରି କେହି ହେବ ରବିତଳେ ॥
ତାହାଙ୍କୁ ଦୟାକରନ୍ତି ସଦା ପୀତବାସ ।
ତେବେ ସେହୁ ବୋଲଇବ ଶ୍ରୀହରିଙ୍କ ଦାସ ॥
ସେହି ଲୋକମାନେ ପୁଣି ଆସି ଜନ୍ମ ହୋନ୍ତି ।
ଆୟୁଷଶେଷ ହୋଇଲେ ପୁନଶ୍ଚ ମରନ୍ତି ॥
ସେହି ଲୋକମାନଙ୍କର ଜନ୍ମ ମୃତ୍ୟୁ ସରି ।
ଜୀବନ୍ତେ ମର୍ତ୍ତ୍ୟଭୋଗ ମଲେ ସ୍ୱର୍ଗପୁରୀ ॥
ସେ ମହାପ୍ରଭୁଙ୍କ ପାଦେ ମୋହର ଶରଣ ।
ଅଜାମିଳ କଥା ଏବେ ହେଲା ସମାପନ ॥
ପଢିଲେ ଶୁଣିଲେ ନରେ ହୋଇବ ମୁକତ ।
ହରିବୋଲି ନ ପାରିଲେ ଯିବ ଯମପଥ ॥
ଅଜାମିଳ ପ୍ରାୟ ନରେ ଭବୁଁ ଯିବ ତରି ।
କହଇ ମାଧବଜନ ଉଦ୍ଧର ଶ୍ରୀହରି ॥

—୨।✻।୨—

## ଭକ୍ତ ବିଷ୍ଣୁଦାସ ।

ଏ ସର୍ବବଚନ ଶୁଣି ମନ ନୃପରାଣ ।
ଚଇତନ ପାଦେ ପଡ ପୁଚ୍ଛଇ ସେ ପୁଣ ॥
ଆହେ ଚଇତନ ମୋର ଫେଡବା ସଂଶୟ ।
ଜନ୍ମହେବା ମାତ୍ରେ ଗ୍ରସ୍ତ କରେ ମାୟା ମୋହ ॥
କେମନ୍ତ ଶ୍ରୀହରିଠାରେ କରିବ ଭକତ ।
କେମନ୍ତପ୍ରକାରେ ସେହୁ ହୋଇବ ମୁକତ ॥
କେତେବେଳରେ କରିବ ଅବା ପାପକର୍ମ ।
କେତେବେଳରେ କରିବ ସୁକର୍ମ ଧରମ ॥
କେତେବେଳେ ଅବା ସେହୁ ଜୀବ ବଧକରି ।
କେତେବେଳେ ବୋଲିବ ସେ ରାମକୃଷ୍ଣ ହରି ॥
ପାପକୁ ସୁକୃତ ଯେବେ ହେବ ସମସରି ।
କେମନ୍ତେ ଦୟାକରିବେ ତାହାକୁ ଶ୍ରୀହରି ॥
କେଉଁରୂପରେ ହୋଇବ ଶ୍ରୀହରିଙ୍କ ଦାସ ।
କେଉଁରୂପେ କାଟିବ ସେ ଭବବନ୍ଧ ପାଶ ॥
ଜନ୍ମ ହୋଇଲେ ମରଣ ମଲେ ଜନ୍ମହୋଇ ।
ରଜନୀ ଦିବସ ଯେଉଁ ପ୍ରକାରେ ହୁଅଇ ॥
ଏହିରୂପେ ଜୀବଗୋଷ୍ଠି ହୁଏ ଆତ ଜାତ ।
ସେକାହୁଁ ହୋଇବ ପୁଣି ବିଷ୍ଣୁରେ ଭକତ ॥
ଯେଉଁରୂପେ ପ୍ରତେହେବ ତାହା ମୋତେ କହ ।
ମୋହର ମନରୁ ଏବେ ସଂଶୟ ଫିଟାଅ ॥
ଚୈତନ୍ୟ ବୋଲନ୍ତି ଶୁଣ ଆହେ ମନଧୀର ।
ଅକର୍ତ୍ତବ୍ୟ କଥା ଏଥୁ ମନେ ହେତୁକର ॥
ତୁ ଯାହା କହିଲୁ ମନ ସେକଥା ସ୍ୱରୂପ ।
ଯେମନ୍ତେ ଆମ୍ଭଙ୍କୁ ମୋହ ନ ଲାଗିବ ତାପ ॥
ଏକାଙ୍ଗ ଭକ୍ତ ହୋଇଲେ ପାପ ନ ଲାଗଇ ।
ଭବଗ୍ରାହୀ ନାଥ ତାକୁ କରିଦ୍ୟନ୍ତି ତ୍ରାହି ॥
ସଂସାରର ମାୟା ତାକୁ ନ ଲାଗଇ କିଛି ।
କମଳାଙ୍କୁ କହିଛନ୍ତି ଏମନ୍ତ ଶ୍ରୀବଛି ॥
ସୁମନ ବୋଲେ ସଂକ୍ଷେପି କହିଦଅ ମୋତେ ।
କମଳାଙ୍କୁ କହିଥିଲେ ଯାହା ଜଗନ୍ନାଥେ ॥
ଚୈତନ୍ୟ ବୋଇଲେ ତାହା ମନୁରାୟ ଶୁଣ ।
ବୈକୁଣ୍ଠପୁରରେ ଦିନେ ଲକ୍ଷ୍ମୀ ନାରାୟଣ ॥
ରତ୍ନ ସିଂହାସନେ ବିଜେ କରିଛନ୍ତି ହରି ।
ପାର୍ଶ୍ୱରେ ଖଟିଛନ୍ତି ପାରିଷଦ ନାରୀ ॥

ରତ୍ନ ପଲଙ୍କରେ ଶୋଇଛନ୍ତି ଚକ୍ରଧର ।
କମଳା ପାଦ ଚାପନ୍ତି କରି ଧୀର ଧୀର ॥
ଆଲଟ ଚାମର ଧରି ବସିଁ ଛନ୍ତି ନାରୀ ।
[illegible] ବାକ୍ୟଦେବୀ ବୀଣାନାଦ କରି ॥
ଗାନ୍ଧାର ରାଗ ଆଳାପ ବୀଣାରେ ବସାଇ ।
ଗାଉଛନ୍ତି ସେହି ଗୀତ ଶତ୍ରୁକୁ ରସାଇ ॥
ଶ୍ରୀକୃଷ୍ଣଙ୍କର ମନକୁ କରନ୍ତି ପ୍ରମୋଦ ।
ଏମନ୍ତ ସମୟେ ଶୁଭେ ହରି ବୋଲ ନାଦ ॥
ତାଳ ମୃଦଙ୍ଗ ବାଜଇ ମଙ୍ଗଳ ମଧୁର ।
ହୁଳହୁଳି ସହିତରେ କମ୍ବୁ ନାଦ କରି ॥
ବିଷ୍ଣୁ ଦୂତମାନେ ମିଶି ସୁବର୍ଣ୍ଣ ରଥରେ ।
ବସାଇ ଆଣୁଅଛନ୍ତି ଏକ ଦ୍ୱିଜବରେ ॥
ମହାଶୂନ୍ୟରେ ବିମାନ କରଇ ଗମନ ।
ଆଲଟ ଚାମର ମାନ ପଡ଼େ ଘନ ଘନ ॥
ବଇକୁଣ୍ଠପୁରେ ଯାଇଁ ହୋଇଲେ ପ୍ରବେଶ ।
ନେଇଣ କଲେ ତାହାକୁ ଶ୍ରୀହରିଙ୍କ ପାଶ ॥
ତକ୍ଷଣେ ଦ୍ୱିଜ ବିମାନ ଉପରୁ ଉତୁରି ।
ଶ୍ରୀହରିଙ୍କ ଚରଣରେ ସ୍ତୁଏ ବେଗକରି ॥
ବୋଇଲା ଶ୍ରୀ ନାରାୟଣ ମୋତେ ତ୍ରାହି କଲ ।
ଭବ ଅଗାଧଜଳରୁ ଉଦ୍ଧରି ଆଣିଲ ॥
ତ୍ରାହି ତ୍ରାହି ନାରାୟଣ ତ୍ରାହି ପଦ୍ମମୁଖ ।
ଏବେ ଜାଣି ଗଲା ମୋର ଜନ୍ମମୃତ୍ୟୁ ଦୁଃଖ ॥
ସଂସାର ଜଳରେ ବୁଡ଼ି ମରୁଥିଲି ମୁହିଁ ।
ଏବେ ତୁମ୍ଭ ପଦ୍ମପାଦେ ସେବିବଇଁ ମୁହିଁ ॥
ପତିତପାବନବାନା ଅଛି ପ୍ରଭୁ ବହି ।
ତେଣୁ ଉଦ୍ଧରି ଆଣିଲ ମୋତେ ଭବଗ୍ରାହୀ ॥
ଆଉ ଯେମନ୍ତେ ସଂସାରେ ନୁହେ ଆତଯାତ ।
ସେହି କୃପାକର ମୋତେ ପ୍ରଭୁ ଜଗନ୍ନାଥ ॥
ଶ୍ରୀହରି ବୋଇଲେ ବିପ୍ର ଯେ ତୋହର ମନ ।
ସେତା ଠାରେ ଅନ୍ତର ନୁହେ ମୋର ମନ ଜାଣ ॥
ସଂସାର ବନ୍ଧନେ ଥାଇ ମୋତେ ଆଶ୍ରାକରି ।
ଲହିଲୁ ବନ୍ଧୁକୁଟୁମ୍ବ ମାନଙ୍କୁ ଆଦୋରି ॥
ତୋହରି ସଂସାରେ ଜଣେ ନ ଥିଲେକ କେହି ।
ସେତେଣୁ କରି ମୋ ପୁରକୁ ତୋତେ ଆଣିଲୁଇଁ ॥
ଏବେତ ବୈକୁଣ୍ଠପୁରେ ନିଶ୍ଚିନ୍ତରେ ରହ ।
ମୋ କୈବଲ୍ୟ ସେବାକରି ତୋର ଦିନ ଯାଅ ॥

ଏହା କହି ବଇକୁଣ୍ଠେ ରଖିଲେକ ନେଇ ।
ବିଷ୍ଣୁଙ୍କୁ ଆଶ୍ଚର୍ଯ୍ୟ କରି ବିପ୍ର ରହେ ତହିଁ ॥
ଏହା ଦେଖିଣ କମଳା ବିଷ୍ଣୁଙ୍କୁ ପଚାରି ।
କି କର୍ମ କରି ସଂସାରୁ ବିପ୍ର ଗଲା ତରି ॥
ଆବର ଆଜ୍ଞା କରିଲ ତୋହ ପରି ହୋଇ ।
ସଂସାରେ ଖୋଜିଲେ ଜଣେ ନ ଥିବଟି କେହି ॥
ଏହା ଶୁଣି ମୋତେ ବଡ଼ ଲାଗିଲା ସନ୍ଦେହ ।
ଆହେ ପ୍ରାଣନାଥ ତାହା ସଂକ୍ଷେପିଣ କହ ॥
ହସି ଶ୍ରୀକୃଷ୍ଣ ବୋଲନ୍ତି ପ୍ରିୟବତି ଶୁଣ ।
ସଂସାର ମାୟା ସକଳ ଆମ୍ଭର ଭିଆଣ ॥
ବ୍ରହ୍ମାଙ୍କୁ କାଳ ବେଳରେ ଆମ୍ଭେ ଜାତକରୁଁ ।
ସେ ବ୍ରହ୍ମା ବ୍ରହ୍ମାଣ୍ଡ ସୃଜେ ଆମ୍ଭର ଆଜ୍ଞାରୁ ॥
ପ୍ରଳୟକାଳରେ ସବୁ ଗର୍ଭରେ ସଂହରୁ ।
ପୁଣି କାଳବେଳେ ତାହା ଉପଜାତ କରୁ ॥
ଏହିରୂପେ ଆତଯାତ ହୁଅଇ ସଂସାର ।
ସକଳ ଜନ୍ମରୁ ଅଟେ ନରଜନ୍ମ ସାର ॥
ଏହା କହିଣ ବୋଲନ୍ତି ଆଗୋ ପ୍ରିୟେ ଶୁଣ ।
ଏକାଙ୍ଗ ଭକ୍ତମହିମା ଏବେ କହୁଁ ପୁଣ ॥
ଏହି ବ୍ରାହ୍ମଣର ନାମ ଅଟେ ବିଷ୍ଣୁଦାସ ।
ଗୁରୁଦନେ ମୋ ନାମକୁ ତାହାର ବିଶ୍ୱାସ ॥
ସକଳ ଜୀବରେ ଏହୁ ଦୟାଭାବ ବହେ ।
ପରକୁ ଏ ହିଂସାକରି ପଦେହେଁ ନ କହେ ॥
ଅତିଥ ଅଭ୍ୟାଗତକୁ ନୟନରେ ଦେଖି ।
କୋଷ୍ଟ କ୍ଷୁଧ ନାଇଲାର ପରାୟେ ଏ ଦୁଃଖୀ ॥
ପର ଉପକାରେ ଏହୁ ବହୁ କୀର୍ତ୍ତି କରେ ।
ସର୍ବ ସମର୍ପଣ କରି ମୋହର ଛାମୁରେ ॥
ଆନନ୍ଦ ଭାବରେ ସବୁ ସମର୍ପଇ ମୋତେ ।
କପଟ କିଛି ନ ଥାଏ ଏହା ହୃଦଗତେ ॥
ପ୍ରତିଦିନ ଏହୁ ମୋତେ କରଇ ଗୁହାରି ।
ଅଶେଷ ମହିମା ଅଟେ ତୁମ୍ଭର ହେ ହରି ॥
ବୋଲଇ ମୋହର ହୃଦ ପଦ୍ମେ ଅଛ ରହି ।
ତୁମ୍ଭେ ଯାହା କରାଉଛ କରୁଅଛି ମୁହିଁ ॥
ମୋହର କୃତାର୍ଥେ କାହିଁ ରହିବ ଏମାନ ।
ଅଧିକ କରିବାକୁ ତ ନାହିଁ ମୋର ମନ ॥
ତୁମ୍ଭର ବିନା ଆଶ୍ରା ନାହିଁ ଆନେ ମୋର ।
ଭବତ୍ରାହି ନାଥ ଯାହା ଇଚ୍ଛା ତାହା କର ॥

ଏହାରୂପେ ସର୍ବ କର୍ମ ମୋତେ ସମର୍ପଇ ।
ମନରେ କଳ୍ପ ବାଞ୍ଛା ସେ ଆଉ ନ କରଇ ॥
ଉଦାସୀନ ଭାବେ ସଦା ବର୍ତ୍ତୁଥାଇ ଜନ ।
ବୋଲଇ ସେ ଯାହା ଇଚ୍ଛା କର ଭଗବାନ ॥
ଏମନ୍ତ ମନରେ ମୋତେ ଥିଲା ଆଶ୍ରେ କରି ।
ବୈକୁଣ୍ଠର ଏହାକୁ ମୁଁ ଆଣିଲି ଏ ପୁରୀ ॥
ଜୀବନ୍ତେ ଐଶ୍ୱର୍ଯ୍ୟ ଭୋଗ ତାକୁ ଥିଲି ଦେଇ ।
ଚଞ୍ଚଳା ବୋଲିଣ ମନରେ ଏହାର ନ ଥାଇ ॥
ଜୀବନ ଯିବାରବେଳେ ପେଷିଲି ମୁଁ ରଥ ।
ବସାଇ ଆଣିଲେ ଏହାକୁ ମୋର ସର୍ବ ଦୂତ ॥
ଅକ୍ଷୟ ବଇକୁଣ୍ଠରେ ତାକୁ ଦେଲି ବାସ ।
ସେ ପେଣୁ ହୋଇଲା ମୋର ଭକତ ବିଶ୍ୱାସ ॥
ଭାବକୁ ନିକଟ ମୋର ଅଭାବକୁ ଦୂର ।
ଭାବଗ୍ରାହୀ ନାମ ଗୋଟି ଏଣୁଟି ମୋହର ॥
ଏହା ଶୁଣି ମହାଲକ୍ଷ୍ମୀ ଆନନ୍ଦିତ ମନ ।
କହେ ମାଧବ ଉଦ୍ଧର ମୋତେ ଭଗବାନ ॥
ସାଧୁଜନମାନେ ମୋର ନ ଧରିବ ଦୋଷ ।
ଯାହା କୃପା କଲେ ମୋତେ କମଳା ବିଳାସ ॥
ତାହା ମୁଁ ଲେଖଇ ମୋର ଅନ୍ୟେ କାର୍ଯ୍ୟ ନାହିଁ ।
ହରିଙ୍କ ଆଶ୍ରା କରିଲେ ଭବୁ ତରି ଯାଇ ॥
ଆହେ ସାଧୁଜନମାନେ ହରି ଆଶ୍ରା କର ।
ନୋହିଲେ ତରି ନୋହିବ ଏ ଭବସାଗର ॥
ଏଥିକୁ ଯେ ଉପହାସ ନ କରିବ ମନେ ।
ସଂସାର ବେଭାର ସିନା ଅଟେ ଅନ୍ୟୋଅନ୍ୟେ ॥
ଏ ପିଣ୍ଡରେ ପ୍ରାଣ ଥିଲେ ସବୁ ହୁଏ କରି ।
ପିଣ୍ଡୁ ପ୍ରାଣ ଚାଲିଗଲେ ସବୁଗଲା ସରି ॥
ପାରି ଯେବେ ଏବେ ମଧ୍ୟ ତାଙ୍କୁ ଜାଣି ଧର ।
ପୁଣ୍ୟ ଉଦେ ହେଲେ ପାପ ରହିବ କି ସ୍ଥିର ॥
ପର୍ବତ ଆକାରେ ତୁଳା ଗୁଡ଼ ହୋଇ ଥାଇ ।
କିଞ୍ଚିତ ଅଗ୍ନି ତାହାକୁ ଦହନ କରଇ ॥
ଇତ୍ୟାଦି ବିଷୟ ହସ୍ତେ କରୁଥିବ କାମ ।
ଚିତ୍ତ ଧୀରକରି ମୁଖେ ବୋଲୁଥିବ ରାମ ॥
ଯେମନ୍ତେ ବାଛୁରି ଗୃହେ ବନ୍ଧା ହୋଇଥାଇ ।
କ୍ଷୁଧାରେ ଆରତ ହୋଇ ଚରିଯାଏ ଗାଈ ॥
ଚରୁଥାଏ ସିନା ତାର ବତ୍ସଠାରେ ମନ ।
ଘଡ଼କ ଘଡ଼ ହମ୍ବାରୁଥାଏ ଘନ ଘନ ॥
ସେହିପରି ନାରାୟଣ ପାଦେ ଚିତ୍ତ ଦିଅ ।
ସମସ୍ତ ବିଷୟମାନ ସ୍ନେହେ କରୁଥାଅ ॥



ଅତିଥି ସତ୍କାର

ଏବେ ସୁମନ ଶୁଣ ତୁ ନାଗଧାରି ଚାରୀ ।
ବେଳଅଙ୍ଗ ଆଶ୍ରେକର ଶଙ୍ଖ ଚକ୍ରପାଣି ॥
ଶ୍ରୀକୃଷ୍ଣଙ୍କ ପାଦେରେ ତୁ ଚିତ୍ତକୁ ମଗ୍ନାଇ ।
ଦିଅ ଜ୍ଞାନ ମାର୍ଗେ ତୁହି ମନକୁ ରସାଇ ॥
ସର୍ବ ମହାପାପ ତୋର ହୋଇଯିବ ଦୂର ।
ସୂର୍ଯ୍ୟକୁ ଦେଖିଲେ ଯେହ୍ନେ ହୁଏ ନିଶାକର ॥
ତେମନ୍ତ ପ୍ରକାର ମନ ହୋଇବ ନିର୍ମଳ ।
ଜଳବିମ୍ବ ପରିଏକ ଜୀବର ପ୍ରବଳ ॥
ହେଳାକଲେ ନିମିଷେ ଭେଳା ବୁଡ଼ିଯିବ ଜଳେ ।
ଏ ପିଣ୍ଡରୁ ପ୍ରାଣଗଲେ ମିଳୁ ରସାତଳେ ॥
ତେତେବେଳେ ତୁହି ଏକା ସୁମରିବୁ ମୋତେ ।
ବୋଲିବୁ ଚୈତନ୍ୟ କଥା ନକଲି ଜୀଇଁତେ ॥
ସେ ଯମଭୁବନ ଅଟେ ଅତି ନିରପେକ୍ଷ ।
କୃଷ୍ଣବିନା ରଖିବାକୁ କେ ହୋଇବ ଶକ୍ୟ ॥
ଧର୍ମରେ ଥିଲେ ସେଠାରେ କାରେ ନାହିଁ ଡର ।
କିକରି ପାରିବ ତହିଁ ସ୍ଥିର ନାଶକର ॥
ଶୁଣିଣ ସୁମନ ଶିରେ ଯୋଡ଼ି ବେନିପାଣି ।
ବୋଲେ କେମନ୍ତେ ତରିବି ଭବତରଙ୍ଗିଣୀ ॥
କେଉଁରୂପେ ପ୍ରଭୁ ମୋତେ କରିବେ ସୁଦୟା ।
ଆହେ ଚଇତନ କୁହ ସଂକ୍ଷେପିଣ ଏହା ॥
ଶୁଣି ଚୈତନ୍ୟ ବୋଇଲେ ଆନନ୍ଦିତ ହୋଇ ।
ହେତୁଥିଲେ ପ୍ରାଣୀ ତରେ ବିଷ୍ଣୁ ପାଦ ଧ୍ୟାୟି ॥
ସେ ବିଷ୍ଣୁଙ୍କୁ ଆଶ୍ରେକରି କର ସର୍ବ କର୍ମ ।
କପଟକୁ ତେଜ ହୃଦେ ରଖ ଦୟା ଧର୍ମ ॥
ସୁଦୃଢ଼ ବ୍ରତ କରିଣ ପାଳିବ ଯତନେ ।
କର୍ମକରୁ ଦୁର୍ଘଟଣା ପଡ଼ିଲେ ଭବନେ ॥
ଭାର୍ଯ୍ୟା ସୁତ ଦୁହିତାଦି ବନ୍ଧୁ ସହୋଦର ।
ସମସ୍ତ ବଶତଃ ଯଦି ହୁଅନ୍ତି ଅନ୍ତର ॥
କିଅବା ନିଜ ଉପରେ ପଡ଼ିଲେ ବିପତ୍ତି ।
ନାଶ ହୋଇଯିବ ଅବା ସମସ୍ତ ସମ୍ପତ୍ତି ॥
ତେବେହେଁ ଦାହେ ନ ଛାଡ଼ ବ୍ରତକଲା କଥା ।
ବୋଲିବ କର୍ମରେ ଯାହା ଲେଖିଛି ବିଧାତା ॥

କର୍ମକୁ ଯେ ବନ୍ଦୁଥିବ କର୍ମ ନ ଜାଣିବ ।
ବୋଲିବ ମୋହର କର୍ମ ଅଟେ ବାସୁଦେବ ॥
ହରତା କରତା ସେହି ପ୍ରଭୁ ଥାଆନ୍ତି ଥାଉଁ ।
ଏ ବସନ୍ତି ମୋର ଅବା କି କରିବ କାହୁଁ ॥
ଏମନ୍ତ ବୋଲିଣ ମନେ ନ ଘେନିବ ଆନ ।
ବୋଲିବ ଯାହା ଇଚ୍ଛା ତୁ କର ଭଗବାନ ॥
ଦୃଢକଲ କର୍ମକୁ ଯେ କେଭେ ନ ଛାଡ଼ିବ ।
ଦୃଢେ କେବଳ କୃଷ୍ଣଙ୍କ ପାଦେ ରତି ଥିବ ॥
ଶ୍ରୀକୃଷ୍ଣଙ୍କ ପ୍ରୀତି ଅର୍ଥେ ତାଙ୍କ କର୍ମ ଯେତେ ।
ସର୍ବଦା ବିଗ୍ରହ ଥିବ ମନରେ ନିରତେ ॥
ଜଳ ଅନ୍ନ ବସ୍ତ୍ରଦାନ ତ୍ରିବିଧ ପ୍ରକାର ।
ଏଥୁ କେ ହିବଡ଼ ନାହିଁ ଶୁଣି ମନ ସାର ॥
ଅନ୍ନଦାନେ ହେଳା ମନ କେଭେ ନ କରିବ ।
ଯେଣୁ ସେ ଅନ୍ନ ଆଶ୍ରିତେ ରହିଅଛି ଜୀବ ॥
ଅନ୍ନହୀନ ପ୍ରାଣୀ ହୃଦେ ଯେହୁ ବସିଥାଇ ।
ସେ ତୋହର ହୃଦମଧ୍ୟେ ନିଶ୍ଚୟ ଅଛଇ ॥
ଏମନ୍ତ ଲୋକ ଯଦ୍ୟପି ମିଳେ ତୋର ପାଶ ।
ତାକୁ ଦୟାକରି ନିଶ୍ଚେ ଦେବୁ ତୁହି ଗ୍ରାସ ॥
ଜୀବ ନାରାୟଣ ସର୍ବ ପିଣ୍ଡେ ବିଜେକରି ।
କରୁଛନ୍ତି ଲୀଳା ଖେଳା ବ୍ରହ୍ମାଣ୍ଡରେ ପୁରି ॥
ଏଣୁକରି ସର୍ବ ଜୀବେ ଦେଖ ସମସରି ।
ଜୀବକୁ ଚହ୍ନିଲେ ତୁହି ଭବୁ ଯିବୁ ତରି ॥
କ୍ଷୁଧାର୍ଥୀ ଜନ ଯଦ୍ୟପି ମାଗିବ ଭୋଜନ ।
ବିଚାରିବ ଆଜ ମୋର ସୁଫଳ ଜୀବନ ॥
କୋମଳ ବଚନ କହି ତୋଷିବ ତାହାଙ୍କୁ ।
ମନ ଭଲ ପରେ ଯିବ ଆପଣା ଗୃହକୁ ॥
ଅପରନ୍ତା ଦ୍ରବ୍ୟ ଯାହା ଗୃହେ ରହିଥିବ ।
ଅତିଥ ଆଗରେ ତାହା ନେଇ ସମର୍ପିବ ।
ଭୁଞ୍ଜାଇ ସନ୍ତୋଷ ସହ ବିଦାକରି ତାକୁ ।
ତେବେ ଆସିବ ଆପଣା ଗୃହ ଭିତରକୁ ॥
ନିଜକର୍ମେ ଯାହାଥିବ ତାହାକୁ ଭୁଞ୍ଜିବ ।
ଅତିଥେ ଯାହା ଅର୍ପିବ କୁତ୍ସିତ ନ ଥିବ ॥
ଯାହାକେ ରହିବା ପାଇଁ ରାତ୍ରିକ ଓଳରେ ।
ଅତିଥି ଭାବେ ତୋଷିବ ବେଳେ ଦ୍ୱିବେଳରେ ॥
କୋମଳ କରି କହିବ ତାଙ୍କ ଦୁଃଖ ସୁଖ ।
ବୋଲିବ ଭୋଜନେ ହେଲି ଅତିଶୟ ଦୁଃଖ ॥

ଘୃତ ଶାକର ନବାତ ସବୁ ଦେଇଥିବ ।
ଲୋକାଗ୍ରକୁ କାର୍ପଣ୍ୟ କରିଣ କହିବ ॥
ଭଲବା ଅସାର ଦ୍ରବ୍ୟ ଯାହା ଦେଇଥିବ ।
କୋମଳ ବାକ୍ୟ କହିଣ ସନ୍ତୋଷ କରିବ ॥
ଏଭବ ସାଗରେ ଏକା ବଚନଟି ସାର ।
ବଚନେ ଅଛି ଅମୃତ ଆଉ ବିଷଧାର ॥
ଦେଇ ନ ପାରି କହିବ ଯେବେ ବୋଧକରି ।
ଶାହାସ୍ତ୍ରରେ କହିଅଛି ସେହୁ ଦେଲପରି ॥
ଅମୃତର ସମାନରେ ଭୋଜନ କରାଇ ।
ଧନ ବସନ ପ୍ରଚୁର ପୁଣି ଥିବ ଦେଇ ॥
କହିବ ନାହିଁ ଯଦ୍ୟପି କୋମଳ ବଚନ ।
ଧିକ ତାର ଦେବାପଣ ଧିକ ତା ଜୀବନ ॥
ଏଣୁ ବଚନ କହିବ କରି ଆସ୍ୱାଦିତ ।
ତେବେ ଜାଣି ଦେଲି ଧର୍ମ ହୁଏ ପରାପତ ॥
ଏମନ୍ତ ଲୋକଙ୍କୁ ଲକ୍ଷ୍ମୀ କେଭେ ନ ଛାଡନ୍ତି ।
ଷଡ଼ଗ୍ରାହୀ ନାଥ ତାଙ୍କ ପ୍ରସନ୍ନ ଥାଆନ୍ତି ॥
ବ୍ରାହ୍ମଣ ବୈଷ୍ଣବ ପୁଣି ଅତିଥ ଏ ତିନି ।
ବିଷ୍ଣୁ ଦରଶନ ପ୍ରାପ୍ତି ଏମାନଙ୍କୁ ମାନି ॥
ଏହାଙ୍କର ଚରଣରେ ଯେହୁ ସେବାକରି ।
ତାହାଙ୍କୁ ସନ୍ତୋଷ ମନ ହୁଅନ୍ତି ମୁରାରି ॥
ଶ୍ରୀମୁଖରେ କହିଛନ୍ତି ଏହା ଆଦିମୂଳ ।
ଏହାଙ୍କୁ ସେବା କରିଲେ ସର୍ବ ମିଳେ ଫଳ ॥
ମୋର ରୂପ ରେଖ ନରେ ଦେଖିବେ ବା କାହିଁ ।
ଏହି ତିନିରୂପେ ମୁହିଁ ଭବେ ଭ୍ରମୁଁଥାଇ ॥
ଏହାଙ୍କୁ ମନୁଷ୍ୟ ପ୍ରାୟ କେଭେ ନ ମଣିବ ।
ଏହାଙ୍କୁ ଦେଖିଲି ମାତ୍ରେ ଆସନ ଛାଡିବ ॥
ପ୍ରଣାମ କରି ଆସନେ ନେଇ ବସାଇବ ।
ସେ ଆଜ୍ଞା ଦେଲେ ବସିବ ପାଦ ନ ଦଶିବ ॥
ତାଙ୍କ ମୁଖରୁ ଶୁଣିବ ମୋହର ଚରିତ ।
ତେବେ ଯେ ଶ୍ରବଣ ତାର ହୋଇବ ମୁକତ ॥
ମୋହର ଭବରେ ତାକୁ ପଡ଼ା ବିଧିକରି ।
ସେ ଲୋକ ନିଶ୍ଚୟ ତେବେ ଭବୁ ହେବ ପାରି ॥
ଏମନ୍ତ ଲୋକଙ୍କ ଜାଣ ମୋର ମାୟା ନାହିଁ ।
କମଳା ଆଗେ ଶ୍ରୀକୃଷ୍ଣ ଏହା ଛନ୍ତି କହି ॥
ଏଥି ଅନନ୍ତରେ ତୁହି ଶୁଣ ହୋ ସୁମନ ।
ଯେପରି ସନ୍ତୋଷ ହୁଅନ୍ତି ପ୍ରଭୁ ଭଗବାନ ॥

ଅତିଥ ଦେଖିଲମାତ୍ରେ ଶ୍ରଦ୍ଧାଚର୍ଯ୍ୟ ହେବ ।
କଥିଁତେ କୋପ ନ ହୋଇ ବଦାନ୍ୟେ କହିବ ॥
ବସ୍ତ୍ରହୀନ ଲୋକ ଯେବେ ମିଳିବ ଆସି ।
ଅଳପ ବହୁତ ଦେଇ ମନ ନେବ ତୋଷି ॥
କିଛି ନ ଥିଲେ ଆଶ୍ୱାସ ବଚନ କହିବ ।
କଅବା କିଛିହିଁ ଦେଇ ବଦା କରିଦେବ ॥
ଶକ୍ୟ ଅନୁରୂପେ କର କିମ୍ପା ଯେ ପୋଖରୀ ।
ତାହା ଯେ କରିବ ମନେ ବିଷ୍ଣୁଙ୍କୁ ସୁମରି ॥
ମୁ କଲି ବୋଲି ମନରେ ଗର୍ବ ନ ବହିବ ।
ବିଷ୍ଣୁ ପ୍ରୀତି ଅର୍ଥେ ତାହା ଗୋବିନ୍ଦେ ଅର୍ପିବ ॥
ତେବେ ସନ୍ତୋଷ ହୁଅନ୍ତି ଦେବ ନରହରି ।
ତେଣୁ ପୁଷ୍କରିଣୀରେ ଯେ ରହିଥାଏ ବାରି ॥
ସର୍ବ ଜୀବମାନଙ୍କର ଜଳେ ଥାଇ ଆଶା ।
ସେ ଜଳ ଭକ୍ଷଣରେ ଯେ ହରେ କ୍ଷୁଧା ତୃଷା ॥
ତୃଷାର୍ତ୍ତି ତୋଷ ହୋଇଣ ସେ ପୁଣ୍ୟ ଲଭିବ ।
ତାର ସୁକୃତ କହିଲେ ଆଉ ନ ସରିବ ॥
ବିଧାତା ଜାଣନ୍ତି ତାହା ନ ଜାଣନ୍ତି ଆନ ।
ସବୁ ଧର୍ମ ସାର ଅନ୍ନବସ୍ତ୍ର ଜଳ ଦାନ ॥
ନିଜ ଶକ୍ୟ ଅନୁରୂପେ ବିଷ୍ଣୁ ପ୍ରୀତି ଅର୍ଥେ ।
ଦେବ ଭୋଜନ ଅତିଥଙ୍କୁ ଆଉ ଅଭ୍ୟାଗତେ ॥
ପୂର୍ବଜନ୍ମେ ଯେଉଁ ଲୋକ ଅଟେ ଅନ୍ନଦ୍ରୋହୀ ।
ତେଣୁ ଏ ଜନମେ ତାକୁ ଅନ୍ନ ନ ମିଳଇ ॥
ଲକ୍ଷ୍ମୀଙ୍କର ଦୟା ତାହାଠାରେ ତ ନ ଥାଇ ।
ଲୋକର ଆଲୁଟଳ ସେହୁ ବୁଲିଣ ମାଗଇ ॥
ଯେତେ ସେ ଜୀବିକା କଲେ ନ ରହଇ ଆଶ ।
ପୂର୍ବେ ଅତିଥରେ ଯେଣୁ ଅଟେ ଅବିଶ୍ୱାସ ॥
ବିଷ୍ଣୁ ପ୍ରୀତିଅର୍ଥେ ଯେହୁ ବସନ ଖଣ୍ଡିଏ ।
ହୀନଜନ ମାଗେ ଯେବେ ତାହାକୁ ନ ଦିଏ ॥
ତେଣୁ ସେ ଇହଜନ୍ମରେ ବସ୍ତ୍ରହୀନ ହୋଇ ।
ଦେଇନାହିଁ ପୂର୍ବେ ଏବେ ସେ ପାଇବ କାହିଁ ॥
ଆପଣାର କଲା କୃତ୍ୟ କର୍ମ ବୋଲି କହି ।
ଯାହା ସେ ଅରଜିଥାଇ ତାହା ସେ ଭୁଞ୍ଜଇ ॥
ଅଧିକ ଲୋଡ଼ିଲେ ପୁଣି ପାଇବ ସେ କିସ ।
ଅରଜିନାହିଁ ପୂର୍ବରେ କାର ଏଥେ ଦୋଷ ॥
ଦେଇଥିଲେ ପାଇ ଏହା ସର୍ବଶାସ୍ତ୍ରେ ଶୁଣି ।
ନ ଦେଇଥିଲେ ନ ପାଇ ଏ କଥା ପ୍ରମାଣ ॥

ଏଣୁ କରି ସୁମନ ହୋ ବିଷ୍ଣୁ ପ୍ରୀତି ଅର୍ଥେ ।
ଯଥାସାଧ୍ୟ ଦେବ ଭୋଗ ଆଉ ଅଭ୍ୟାଗତେ ॥
ଏ ମାୟା ସଂସାର ଭିତରେ ଯେ କିଛି ନାହିଁ ତୋର
ବୃଥାରେ ବୋଲୁଅଛୁଁ ସର୍ବ ମୋର ମୋର ॥
ଗଲାବେଳେ କିଛି ତୁହି ନ ପାରିବୁ ନେଇ ।
ପରକର ଗଜ ଥିଲେ ରଖିବେ ଛଡ଼ାଇ ॥
ଯେଉଁ ଦେହକୁ ପ୍ରବେଶ କରିଅଛୁ ନିତ୍ୟେ ।
ସେହୁ ତୋର ସଙ୍ଗତେ ନ ଯିବ କଦାଚିତେ ॥
ଯେତେକ ଅଛନ୍ତି ତୋର ବନ୍ଧୁବର୍ଗ ଭାଇ ।
ତେତେବେଳେ ତୋର ସଙ୍ଗେ ନ ଯିବେଟି କେହି
ଦଇବର ମାୟା ଏହି ପଥିକର ମତ ।
କେ କାହାର ମାତା ପିତା ଭାରିଯା ଯେ ସୁତ ॥
ଏଣୁ ସାଧୁଜନମାନେ ଧନ ଜନେ ଇଚ୍ଛା ।
କେବେହେଁ ମନମଧ୍ୟରେ ନ କରନ୍ତି ବାଞ୍ଛା ॥
ଆମ୍ଭର କାରଣପାଇଁ ଭଜୁଥାନ୍ତି ହରି ।
ଏ ଭବସାଗରୁ ପ୍ରଭୁ କର ମୋତେ ପାରି ॥
ଏ ସଂସାର ଜଞ୍ଜାଳେ ନ ପଶେ ତାଙ୍କ ମନ ।
କେବଳ ତାଙ୍କର ଧନ ପ୍ରଭୁ ଭଗବାନ ॥
ନିଗମ ବନରେ ପଶି ନିଶି ଦିବସରେ ।
ଖଟାଇ ଥାଆନ୍ତି ମନ ପଙ୍କଜ ପଦ୍ମରେ ॥
ସୁତ ବିତ୍ତ କୁଟୁମ୍ବାଦି ବନ୍ଧୁ ଯାକୁ କହି ।
ଏ ସକଳ ମିଛ ଏକା ବନ୍ଧୁ ଭାବଗ୍ରାହୀ ॥
ଏମନ୍ତ ଭାବ ଶ୍ରୀହରି ଭଜୁଥିଲୁ ମନ ।
ଦେହାନ୍ତରେ ଲଭିବୁ ଯେ ବୈକୁଣ୍ଠଭୁବନ ॥
ଏଣୁ ନିତ୍ୟ କଣ୍ଠଳରେ ହରିପାଦ ଭଜ ।
ଏ ମାୟା ସଂସାରେ ଆଉ କିଛି ନାହିଁ କାର୍ଯ୍ୟ ॥
ଧନରେ ଲୋଭ କରିଣ ହରୁଅଛୁ ଦିନ ।
ଏହି ଧନରେ ତୋହର କିସ ପ୍ରୟୋଜନ ॥
ମଲକମାତ୍ରକେ ତୁହି ସବୁ ଛାଡ଼ିଯିବୁ ।
ଯମର କାଳପାଶରେ ବନ୍ଧନ ହୋଇବୁ ॥
ଏବେ ତୁହି ସୁମନ ହୋ ହେତୁକରି ଘେନ ।
ଗୋବିନ୍ଦଙ୍କ ନାମଗୋଟି କର ଗଣ୍ଠିଧନ ॥
ଧନରେ ଇଚ୍ଛା ଥିଲେ ତୁ ଏ ଧନକୁ ରଖ ।
ଦେହ ଅନ୍ତରେ ଆଉ ନ ପାଇବୁ ତୁ ଦୁଃଖ ॥
ମହାଜନ ବୋଲାଇବୁ ହୋଇବୁ ସାଧୁତ ।
ତୋହର ସମ ନୋହିବ କେହି ଧନବନ୍ତ ॥

ଏହି ସମ୍ପତ୍ତିକି ଯେବେ ରଖିଥିବୁ ତୁହି ।
କାଳବଳେ କେହ୍ନେ ତାକୁ ନ ପାରିବ ନେଇ ॥
ସଂସାରିକ ଧନ ଯେତେ ସୁନା ରୂପା କଂସା ।
ବିପ୍ରାଙ୍କ ଭୂଷଣ ଯେତେ ପିତ୍ତଳାଦି ସୀସା ॥
ହୀରା ନୀଳା ମୋତି ଆଉ ମାଣିକ୍ୟ ଗୋହ୍ଲା ।
ବଇଡୁର୍ଯ୍ୟ ଅଙ୍ଗୁରିନ ଶୁଦ୍ଧ ହେମମାଳା ॥
ଧାନ୍ୟ ଆଦି ଗୋ ମଇଷି ପଲ ପଲ ହୋଇ ।
ଏ ସକଳ ଥିବେ ପ୍ରାଣୀ ଧନବନ୍ତ ହୋଇ ॥
ଏମନ୍ତ ପଦାର୍ଥ ଥିଲେ ଭାଗ୍ୟବନ୍ତ ସେହୁ ।
କିନ୍ତୁ ଏଥିରେ ଯେ ଗତି ମୁକ୍ତି ନାହିଁ ଆଉ ॥
ଏ ଧନ ରାଜା ତସ୍କର ନେଲେ ଘେନିଯାନ୍ତି ।
କିଅବା ଅଗ୍ନିରେ ଧୂଳି ପାଉଁଶ ହୁଅନ୍ତି ॥
ପ୍ରାଣ ବିସର୍ଜିଲେ ଏହି ଧନ ନାଶ ଯାଇ ।
ନାନାଦି ପ୍ରକାରେ ତାହା କ୍ଷୟ ଯେ ହୁଅଇ ॥
ମାୟାର ଧନ ବୋଲିଣ ବିଅର୍ଥକୁ ଯାଇ ।
ଯାକୁ ଭୋଗ ଯୋଗଥାଏ ସେ ଭୋଗ କରଇ ॥
ଗୋବିନ୍ଦଧନ ନେବାକୁ ଯେବେ ଅଛି ମନ ।
କହିଦେବା ଏବେ ଶୁଣ ତହିଁର ବିଧାନ ॥
ସଦା ନିର୍ମଳ ହୃଦରେ ତାଙ୍କୁ ଧ୍ୟାନକର ।
ବୋଲିବୁ ସୁଦୟା ମୋତେ କର ଚକ୍ରଧାରୀ ॥
ଲକ୍ଷେ ଯୋଗୀ ତୁମ୍ଭ ଧନେ ଆଶା କରିଛନ୍ତି ।
ନେବାପାଇଁକି କାହାର ନୁହଇ ଶକତି ॥
ତୁମ୍ଭର କୋଠଭଣ୍ଡାରେ ଅଛି ଯେତେ ଧନ ।
ସୁଦୟା କରିଣ ମୋତେ ଦିଅ ଭଗବାନ ॥
ଏ ମାୟାଧନରେ ଗର୍ଜି ହେଉଅଛି ମୁହିଁ ।
ସେ ସକଳ ଆପଣଙ୍କୁ ଅବିଦିତ ନାହିଁ ॥
ଋଣ ନେଇ ଖାତକ ନ ଦେବ ଯେବେ ପୁଣି ।
ସାହୁ ବସେ ତା ଦ୍ୱାରେ ନ ଖାଇ ଅନ୍ନ ପାଣି ॥
ବହୁତ ପ୍ରକାରେ ତାକୁ ଦଣ୍ଡମାନ ଦେଇ ।
ବହୁତ ଯତ୍ନ କରିଣ ସେ ଧନ ଆଣଇ ॥
ଖାତକଠାରେ ତା ଦୟା ନାହିଁ କଦାଚିତ ।
ଦ୍ୱିଗୁଣ ପ୍ରମାଣେ ନିଏ ଲେଖିଥାଇ ବିତ୍ତ ॥
କୃଷିକର୍ଷଣେ ସେହୁ ବହୁ ଦୁଃଖ ସହି ।
ଅର୍ଜଇ ଯେତେକ ଧନ କାହାରେ ନ ଦିଅଇ ॥
ମାଗନ୍ତା ଲୋକଙ୍କୁ ମୁହିଁ କରଇଁ ନିରାଶ ।
ବ୍ୟୟ କଲେ ଧନ ମୋର ହୋଇଯିବ ଶେଷ ॥

ଏମନ୍ତେ ମୁ ଜଗିଅଛି ତୋ ମାୟାବନ୍ଧନେ ;
ଉଲ୍ଲୁକର ତ୍ରାସେ ମୁ ଯେ ଖାଇନାହିଁ ଦିନେ ॥
କୁଟୁମ୍ବ ମୋର ପଡଶା ଘରେ ଯାଇଁ ରହି ।
ଦେଖେ କଦର୍ଥନା ତାଙ୍କ ହେଉଥାଇ ଦେହି ॥
ତାଙ୍କଠାରେ କେବେ ଦୟା ନ ବସେ ମୋହର ।
ଯେବେହେଁ ଦିନେ ନ ଆସିବେ ସେ ମୋହର ଘର
ତେମନ୍ତ କରି ମୁଁ ତାଙ୍କୁ କହଇ ବଚନ ।
ଏମନ୍ତେ ଜଗିଛି ପ୍ରଭୁ ତୁମ୍ଭ ମାୟା ଧନ ॥
ମୋହପରେ ଜଞ୍ଜାଳ ନ ଥିବେ କେ ଜନ ।
ମୁଁ କିସ କହିବି ତାହା ଜାଣନ୍ତି ଆପଣ ॥
ଏତେ ଦୁଃଖରେ ଜଗିଛି ତୁମ୍ଭ ମାୟା ଧନ ।
ଅବଶ୍ୟ ପିଣ୍ଡରୁ ମୋର ଛାଡିଯିବ ପ୍ରାଣ ॥
ମୁହିଁ ସିନା ବଞ୍ଚିଛି କେବେ ନ ମରିବି ।
କେତେବେଳେ ପ୍ରାଣ ଯିବ ଜାଣି ନ ପାରିବି ॥
ତେତେବେଳେ ଘରୁ କିସ ନେବି ମୁ ବୋହିଣ ।
କାହାକୁ ଦେବଇଁ ଏହା କେ ଖାଇବ ପୁଣ ॥
ମରିଗଲେ ଏହା ଆଉ ପାଇବି ମୁଁ କାହିଁ ।
ତେତେବେଳେ ସବୁକଥା ବିଅର୍ଥକୁ ଯାଇ ॥
ନାଶକର ଦଣ୍ଡରେ ମୁ ହୋଇବି କାତରଣି ।
ସେକାଳେ ଲୋଡିଲେ କିଏ ଦେବ ଅନ୍ନ ପାଣି ॥
ନିରାପଥ ଭୁବନରେ ହେବ ନିଦ୍ରାମାଖି ।
ସେ କାଳରେ ଧର୍ମ ସିନା ଏକାମାତ୍ର ସାକ୍ଷୀ ॥
ତେଣୁକରି ବିକଳରେ ଭଜେ ମୋର ମନ ।
ଧନ ଅର୍ଜି କରି ମୁ ନ କଲି ଦାନ ପୁଣ୍ୟ ॥
ସକଳ ଧର୍ମର ଶ୍ରେଷ୍ଠ ଦେବା ଦୟା ସାର ।
ତାହାହିଁ ଦିନେ ନ କଲି ମୁଁ ହୀନ ପାମର ॥
ଦୟାବନ୍ତ ଯେବେ ହୋଇ ଥାଆନ୍ତି ମୁହିଁ ।
ଭଲଦ୍ରବ୍ୟ ଦେଇଥାନ୍ତି ବ୍ରାହ୍ମଣଙ୍କୁ ତହିଁ ॥
ଗୃହଚରଙ୍କୁ ଯେବେ ଦେଇଥାନ୍ତି ଧନ ।
ବସ୍ତ୍ରହୀନ ଲୋକେ ଦେଇ ଥାଆନ୍ତି ବସନ ॥
ନିର୍ମାଷି ଲୋକଙ୍କୁ ଯେବେ ସାହା ହୋଇଥାନ୍ତି ।
ଭୋକିଲୋକଙ୍କୁ ମୁ ଯେବେ ଅନ୍ନ ଦେଇଥାନ୍ତି ॥
ପରୋପକାରେ କରନ୍ତି ଯେବେ ଧର୍ମ କୀର୍ତ୍ତି ।
ପରର ପ୍ରମାଦ ଯେବେ କେବେହେଁ ନ ଚିନ୍ତନ୍ତି ॥
ତୁମ୍ଭର ନାମ ଯେବେ ମୁଁ କରନ୍ତି ଭଜନ ।
ତୁମ୍ଭ ପ୍ରୀତ୍ୟର୍ଥେ କରନ୍ତି ଯେବେ ଦାନ ପୁଣ୍ୟ ॥

ତେବେ ସେ କାହାକୁ ଶତ୍ରେ ନଥାନ୍ତା ମୋ ଡର
କିକର ପାରନ୍ତା ମୋତେ ଛାର ନାଶକର ॥
ଏତେକ ଗୁଣ ନ ଥାଇ ଛନ୍ତି ଯେତେ ଜନ ।
ଧିକ ଧିକ ଅଟଇ ଯେ ତାହାଙ୍କ ଜୀବନ ॥
ଧିକ ଧିକ ତାର ଧନ ଧିକ ତାର ବୁଦ୍ଧି
ସେ କିପରି ତରିଯିବ ଏ ଭବଜଳଧି ॥
ଏତେକ ଗୁଣମଧ୍ୟରୁ ଏକ ନାହିଁ ମୋର ।
କେମନ୍ତେ ତରିବ ମୁହିଁ ଏ ଭବସାଗର ॥
ଏଥିକୁ ମୁ ରଖିଅଛି ଯେତେ ମାୟାଧନ ।
ତୁମ୍ଭ କୃପାରେ କରିବ ଦାନ ପୁଣ୍ୟମାନ ॥
ଏମନ୍ତ କହି ରେ ମନ ହରିଙ୍କି ଜଣାଅ ।
ଶୁଦ୍ଧମନେ ଶ୍ରୀହରିଙ୍କ ପାଦେ ଚିତ୍ତ ଦିଅ ॥
ବୋଲିବୁ ତୁ ନାରାୟଣ କୃପା ମୋତେ କର ।
ଏ ଭବସାଗରୁ ମୋତେ ସତ୍ୱରେ ଉଦ୍ଧର ॥
ଏହା କହି ସେହି ଧନ ବିଷ୍ଣୁପ୍ରୀତି ଅର୍ଥେ ।
କରିବ ଦାନ ସ୍ନେହରେ ଅତିଥ୍ୟାଭ୍ୟାଗତେ ॥
ଦେଉଳ ମଣ୍ଡପ କୂପ ଆଉ ପୁଷ୍କରିଣୀ ।
ଶୁଦ୍ଧଚିତ୍ତରେ ଯେବେ ତୁ କରିବୁ ସ୍ଥି ପୁଣି ॥
ଗ୍ରୀଷ୍ମକାଳେ ଛତା ଦେବୁ ଶୀତରେ ବସନ ।
ଦୁର୍ଭିକ୍ଷରେ ଅନ୍ନଦାନ ଭୋକିଙ୍କି ଭୋଜନ ॥
ଏମନ୍ତ କରିଣ ଯେବେ ଧନ ବଳେଇବୁ ।
ତେବେ ସେ ସନ୍ତୁଷ୍ଟ ହେବେ ତୋହଠାରେ ପ୍ରଭୁ
ସେହି ଅନ୍ତରେ ଉତ୍ତମ ଜନ୍ମ ହେବ ତୋର ।
ସେହି ଧନ ତୋତେ ନିଶ୍ଚେ ଦେବେ ଚକ୍ରଧର ॥
ଶୁଦ୍ଧମନେ ଯେବେ ମନ କରିପାରୁ ଏହା ।
ଶତଗୁଣେ ଲକ୍ଷ୍ମୀ ତୋତେ କରିବେଟି ଦୟା ॥
ଏ ଭବସାଗରୁ ନିଶ୍ଚେ ହୋଇଯିବୁ ପାର ।
ତୋହଠାରେ ନ କରିବ ଯମ ଅଧିକାର ॥
ବିଷ୍ଣୁଙ୍କର ପ୍ରିୟ ହୁଅଁ ଜନ୍ମେ ଜନ୍ମେ ହେବୁ ।
ଏହି ଭବତାପବାଧା କିଛି ନ ଭୋଗିବୁ ॥
ଧନ ଅରଜିଣ ଯେବେ ଧର୍ମ କରିପାରି ।
ତେବେ ସେ ତାହାକୁ ଦୟା କରନ୍ତି ଶ୍ରୀହରି ॥
ଆଉରି କଥାଏ ମନ କହୁଅଛି ଶୁଣ ।
ବଢ଼ାଇରେ ନ କହିବ ଗର୍ବିତ ବଚନ ॥
ମୁ କଲିବୋଲି ମନରେ ଗର୍ବ ନ କରିବ ।
କେବଳ ସକଳ କର୍ମ ଗୋବିନ୍ଦେ ଅର୍ପିବ ॥
ମୁହିଁ କଲି ବୋଲି ଯେବେ କହିବ ଫୁଲାଇ ।
ତେବେ ସେ ସକଳ ଧର୍ମ ବିଅର୍ଥକୁ ଯାଇ ॥
ଦାନ ଧର୍ମ ତପ ମନ୍ତ୍ର ଆଉ ମଉଷଧି ।
ଏମାନ ଗୁପତକଲେ ବହୁ କାର୍ଯ୍ୟ ସିଦ୍ଧି ॥
ତେଣୁକରି ଏହା କାହା ଆଗେ ନ କହିବ ।
ଆପଣାର କଲ କର୍ମ ଆପେ ନ ଭାଷିବ ॥
ବହୁତ ମୁଖରେ ଯେବେ କହିବ ବିସ୍ତାରି ।
ଗର୍ବ ନ କରି ବୋଲିବି ଏହା କଲେ ହରି ॥
ମୁ ଛାର କି ଲକ୍ଷଣ କି କରିତ ଭଜନ ।
ସକଳ ଲୋକଙ୍କ ପ୍ରଭୁ ସେହି ଭଗବାନ ॥
ହରତା କରତା ବିନା ସେହି ନାରାୟଣ ।
ସେହି ବିନା ଗର୍ବକର୍ଥାଂ କରନ୍ତି ଭିଆଣ ॥
ତାଙ୍କ ବିନା ଆଜ୍ଞାରେ କେ କିସ କରିପାରି ।
ଯାହାକୁ ଯେବଣ କଥା ବତାଅନ୍ତି ହରି ॥
ସେହି ଯେ ସେହିମାର୍ଗରେ ହୁଏ ଆତ ଯତ ।
ଆନ କରିବାକୁ କେହୁ ଅଛି ସାମରଥ ॥
ଏହିରୂପରେ କରିବ ନ କରିବ ଆନ ।
ପ୍ରଭୁଙ୍କର ପଦ୍ମପାଦେ ଦେଇଥିବ ମନ ॥
ଧନ ଜନ ସମ୍ପଦାଦି ଆଉ ଦାରା ସୁତ ।
ସୁକର୍ମ କୁକର୍ମ ଦୁଇ ନିଜ କଲି କୃତ୍ୟ ॥
ସବୁକଥା ସମର୍ପିବ ହରିପଦାବ୍ଜତେ ।
ବୋଲିବ ମୋହର ଦୋଷ ନାହିଁ କଦାଚିତେ ॥
ତୁମ୍ଭେ ଯାହା କରାଉଛ ମୁ କରୁଛି ତାହା ।
ହାନି ଲାଭ କଥା ତୁମ୍ଭେ ଜାଣ ଚଉବାହା ॥
ମନେ ମନେ ସବୁକଥା ଗୋବିନ୍ଦେ ଅର୍ପିବ ।
ଆପଣେ ଉଦାସମତେ ଦିନ ହରୁଥିବ ॥
କର୍ମରେ ଯାହା ତୋହର ହେବ ପରାପତ ।
ବୋଲିବଟି ଏହା ମୋତେ ଦେଲେ ଜଗନ୍ନାଥ ॥
ହାନି ଲାଭ ମଣୁଥିବ ଦୁହେଁ ଏକସର ।
ବୋଲୁଥିବ ସଦା ମୁଖେ ମୁଖେ ହରି ହରି ॥
ସେ ପ୍ରଭୁଙ୍କୁ ଯେବେ ଆଶ୍ରା କରିଅଛି ମୁହିଁ ।
ମୋତେ ଆଉ ଅମଙ୍ଗଳ ଘଟି ନ ପାରଇ ॥
ଏମନ୍ତ ବୋଲି ମନରେ ଆନନ୍ଦ ହୋଇବ ।
ଦ୍ରବ୍ୟ ନାଶ ହୋଇଲେ ଯେ ବିମୁଖ ନୋହିବ ॥
ଗୋବିନ୍ଦର ମହିମା ଏ ଜଗତେ ଦୁର୍ଲ୍ଲଭ ।
କହଇ ମାଧବ ଏହା ଜନେ କର ଲାଭ ॥

## ନାମର ମାହାତ୍ମ୍ୟ ।

ଏଥୁଅନନ୍ତରେ କଥା ଶୁଣ ହୋ ସୁମନ ।
ଏକାଙ୍ଗଭକ୍ତିର ଅଟେ ଏତେକ ଯେ ଗୁଣ ॥
ଏ ବଚନ ଶୁଣିଣ ତୁ ସ୍ଥିର କର ମନ ।
ଏବେ ପୁଣ କହିଦେବା ଅକ୍ଷୟ ଯେ ଧନ ॥
ଯେବେ ତୁ ଏହାକୁ ଲୟ କରିପାରୁ ଜନ ।
ଲୟକଲେ ଲଭିବୁ ତୁ ବୈକୁଣ୍ଠ ଭୁବନ ॥
ଶୁଣିଣ ସୁମନ ଚଇତନ ପାଦେ ପଡ଼ ।
ନିର୍ମଳ କରି ମୋ ଆଗେ କହ ତାହା ଫେଡ ॥
କହେ ଚୈତନ୍ୟ ଅକ୍ଷୟ ଯେ ଧନର କଥା ।
ଧନରେ ଲୋଭ ମୋହର ଅଟଇ ସର୍ବଥା ॥
ଏହା ମୋତେ ସଂକ୍ଷେପିଣ କହିବା ଗୋସାଇଁ ।
ତୁମ୍ଭର ମୁଖୁ ଶୁଣିଲେ ପ୍ରତେ ଯିବ ମୁହିଁ ॥
ଶୁଣିକରି ଚଇତନ ଆନନ୍ଦରେ ଭଣି ।
ସାବଧାନେ ଶୁଣ ତୁହୋ ମନ ନୃପମଣି ॥
ଅକ୍ଷୟ ଯେ ଗଣ୍ଠିଧନ ଗୋବିନ୍ଦଙ୍କ ନାମ ।
ସେ ପଦେ ଖଟାଇଥିବୁ ନିତ୍ୟ ତୋର ମନ ॥
ଦଣ୍ଡେ ନ ଛାଡ଼ିବୁ ମନ ସେ ଧନର ଆଶ ।
ସବୁବେଳେ କରିଥିବୁ ତାହାକୁ ବିଶ୍ୱାସ ॥
ହୃଦପଦ୍ମେ ସୁମରି ତୁ ରଖ ଯତ୍ନକରି ।
ସୁଖେ ଏ ଭବସାଗରୁ ହୋଇଯିବୁ ପାରି ॥
ଗୋବିନ୍ଦ ଶ୍ରୀ ନାରାୟଣ କୃଷ୍ଣ ନରହରି ।
ମୁକୁନ୍ଦ ମାଧବ ରାମ ହରି ଦଇତ୍ୟାରି ॥
ପଦ୍ମନାଭ ବାସୁଦେବ ଶ୍ରୀଧର ଅଚ୍ୟୁତ ।
ଦୀନବନ୍ଧୁ କୃପାସିନ୍ଧୁ ବିଷ୍ଣୁ ଲକ୍ଷ୍ମୀକାନ୍ତ ॥
ଭକ୍ତବତ୍ସଳ କେଶବ ପତିତପାବନ ।
ପରମଧନ ଏ ନାମ ଜୀବ ଉଦ୍ଧାରଣ ॥
ଏମନ୍ତ ଯେବଣ ଧନ ମନମଧ୍ୟେ ଥାଇ ।
ଚିନ୍ତିବାମାତ୍ରକେ ସେହୁ ପ୍ରାପତ ହୁଅଇ ॥
ଏହି ସମ୍ପତ୍ତିର ନାମ ଅଟେ ଚିନ୍ତାମଣି ।
ଚିନ୍ତିବା ମାତ୍ରକେ ତାହା ଜାଣି ଚକ୍ରପାଣି ॥
ତକ୍ଷଣେ ଦେଖାଦିଅନ୍ତି ଆସି ଜିହ୍ୱାଗ୍ରେ ।
ଦେଖି ଚିନ୍ତାର୍ଥି ପ୍ରାଣୀର ଚିନ୍ତା ଦୂର ହୁଏ ॥
ଆତଙ୍କକାଳରେ ଯେବେ ଚିନ୍ତାକରି ମନ ।
ନିଶ୍ଚୟ ସେବେଳେ ପ୍ରଭୁ ହୋଇବେ ପ୍ରସନ୍ନ ॥

ଯହିଁ ଚିନ୍ତ ସେହିଠାରେ ଛନ୍ତି ଚକ୍ରଧର ।
ଏ ଧନ ଘେନିଣ ମନ ବଣିଜ ତୁ କର ॥
ଯେବେ ତୁହି ଏକାହୋଇ ବନେ ଯାଉଥିବୁ ।
ବ୍ୟାଘ୍ର କିବା ଭଲ୍ଲୁକର ମୁଖରେ ପଡ଼ିବୁ ॥
ତେତେବେଳେ ହରିଙ୍କି ତୁ ମନେ ସୁମରିବୁ ।
ସେ ବିପଦୁ ଜାଣ ତୁହି ବେଗେ ଉଦ୍ଧରିବୁ ॥
ସିଂହ ଅଛିଲ ସବୁଏ ଡରିଇ ଶତ୍ରୁକୁ ।
ସେ ହେତୁ ପଳାଇଯାଏ ଛାଡ଼ି ଭକତକୁ ॥
ତୋହର ଯେତେକ ଥିବେ ସୁତ ମିତ୍ର ଭ୍ରାତ ।
ସେଠାରେ ରଖିବାକୁ କେ ନୋହିବେ ସମର୍ଥ ॥
ଯେତେବେଳେ ଯମଦୂତ ଆସି ବାନ୍ଧିନେବେ ।
ବିବିଧପ୍ରକାରେ ତୋତେ ଦଣ୍ଡମାନ ଦେବେ ॥
ଜନ୍ତୁପତ ଦେଖି ତୋତେ ହେବ କୋପାନଳ ।
ତେଜ ଦିଶୁଥିବ ତାର ପ୍ରଚଣ୍ଡ ଅନଳ ॥
ପାପୀଠାରେ ନ କରଇ ଦୟା ସେ ଶମନ ।
ଦୂତେ ବୋଲୁଥାଏ ଧରି ଦିଅ ଦଣ୍ଡମାନ ॥
ଶୁଣିକରି ଦିଅନ୍ତି ଯେ ଦୂତେ ଘୋରରଡ଼ି ।
ଯେସନେ ପ୍ରଳୟକାଳେ ମେଘ ଘଡ଼ଘଡ଼ି ॥
ପାପଆତ୍ମାକୁ ଘେନିଣ ଦିଅନ୍ତି ସେ ଦଣ୍ଡ ।
ମାରି ମାରି ତା ଦେହକୁ କରି ଖଣ୍ଡ ଖଣ୍ଡ ॥
ଖୁରି ନହୁରୁଣୀ ଘେନି ତା ନେତ୍ରକୁ ତାଡ଼ି ।
ପୁଣି ସେ ପାପୀର ଦେହ ପକାଅନ୍ତି କୋଡ଼ି ॥
ରୌରବ ନର୍କରେ ତାକୁ ପକାଅନ୍ତି ନେଇ ।
ବିବିଧ ପରକାରରେ ଦଣ୍ଡମାନ ଦେଇ ॥
ସେତେବେଳେ ତାର ଯେଉଁ କଷ୍ଟ ହେଉଥିବ ।
ସେ ଜାଣିବ କରିଥିବ ଯେହୁ ଅନୁଭବ ॥
ସେ କାଳରେ ଦୂତେ ତାକୁ ବୋଲୁଥିବେ ରହିଁ
ମୃତ୍ୟୁମଣ୍ଡଳରେ ତୁହି ଥିଲୁ ଦେହ ବହି ॥
ମରିଯିବି ବୋଲି ତୁ କି ନ ଜାଣୁ ରେ ମୂଢ଼ ।
ଧନ ଅର୍ଜିବାରେ ଚିତ୍ତ କରିଥିଲୁ ଦୃଢ଼ ॥
ପୁଣ୍ୟ ନ କଲୁ ନ ଗଲୁ ତୁହି ଧର୍ମଦାଣ୍ଡେ ।
ଏଠାକୁ ଆସିଛୁ ଏବେ ପଡ଼ ନର୍କକୁଣ୍ଡେ ॥
ଆମ୍ଭର ହାତରେ ତୁହି ହେବୁ ଭୂଲ କଷ ।
ଆଉ ତୋ ମନରେ ଏବେ କିଂସ୍ତ୍ରତିକୁ କସ ॥
ନାରାୟଣ ନାମକୁ ତୁ ନ କଲୁ ଭଜନ ।
ବିଷ୍ଣୁ ପ୍ରୀତ୍ୟର୍ଥେ ନ କଲୁ କିଛି ଦାନ ପୁଣ୍ୟ ॥

ବୈଶାଖ ମାଘ କାର୍ତ୍ତିକେ ନ କଲୁ ତୁ ସ୍ନାନ ।
ଭୋକିଲୋକଙ୍କୁ ତୁ ଦିନେ ନ ଦେଲୁ ଭୋଜନ ॥
ବସ୍ତ୍ରଥିଲୁ ତୁ ମନେ ନ ମଣିବ ମୁଧି ।
ଏତେକ ଅଜ୍ଞାନହୃଦ ତୋହର ଅଟଇ ॥
ଧର୍ମପୁରାଣ କି ତୁହି ନ ଶୁଣୁ ରେ କାନେ ।
ଶମନକୁ ଭୟ କିରେ ନ ଥାଏ ତୋ ମନେ ॥
ଦାରା ପୁତ୍ର ଧନ ଆଦି ଆବୋରଣ ଥିଲୁ ।
ତହିଁରୁ କିଥିଁତ କିପାଁ ସଙ୍ଗେ ନ ଆଣିଲୁ ॥
ନ ଜାଣୁ କି ସଂସାରେ ମରିଗଲେ ଯେତେ ।
ସେମାନେ କେ କେତେ ଦ୍ରବ୍ୟ ନେଲେ କି ସଙ୍ଗତେ
କି ଅଥବା ତୋହର କର୍ଣ୍ଣ ନୟନ ନ ଥିଲା ।
ନେତ୍ରେ ନ ଦେଖିଲୁ ସିନା କର୍ଣ୍ଣ ନ ଶୁଣିଲ ॥
ମନୁଷ୍ୟ ଦେହରେ ମର୍ତ୍ତେ ହୋଇକରି ଜନ୍ମ ।
ଜାଣି ଶୁଣି ନ କରିଲୁ କିପାଁ ଦାନ ପୁଣ୍ୟ ॥
ଇହଲୋକେ ଦେଇଥିଲେ ପରଲୋକେ ପାଇ ।
ଯେ ଯେମନ୍ତ ଦିଏ ତାହା ଏଠାରେ ଭୁଞ୍ଜଇ ॥
ଏହପରେ ବୋଲି ତାକୁ ଦ୍ୟନ୍ତି ଦଣ୍ଡମାନ ।
କହିଁତେ ତାର ପ୍ରକାଶ ହେଲେ କିଛି ପୁଣ୍ୟ ॥
ତେବେ ସେହି ନରକରୁ ହୋଇବ ଉଦ୍ଧାର ।
ନୋହିଲେ ଆନ କାହିଁରେ ନୋହେ ପ୍ରତିକାର ॥
ପୁଣ୍ୟ ନ ଥିଲେ ହେ ମନ ତ୍ରାଣ ନାହିଁ ତହିଁ ।
ଯେହୁ ଯାହା ଦେଇ ଥାଇ ସେହି ତାହା ପାଇ ॥
ଧର୍ମଟି ଯେ ସାହାପ୍ରାୟ ଆନ ନାହିଁ ଜାଣ ।
ବିଷ୍ଣୁ ଆଶ୍ରିତ ଲୋକ ଯେ ସବୁହୁଁ ପ୍ରଧାନ ॥
ଯେବେ ତୁ ବିଷ୍ଣୁଙ୍କ ଆଶ୍ରେ କରିବୁ ସୁମନ ।
ନିଶ୍ଚେ ପ୍ରଭୁ ତୋହଠାରେ ହୋଇବେ ପ୍ରସନ୍ନ ॥
ଯେବଣ ଶମନଦୂତ ଦଣ୍ଡ ଦେଉଥିବେ ।
ତୋତେ ଦେଖିଲେ ସେମାନେ ଭୟେ ପଳାଇବେ
ପ୍ରଚଣ୍ଡ ତେଜ ତାହାର ହୋଇବ ନିଭନ ।
ବୋଲିବ ସେ ବୈକୁଣ୍ଠକୁ କର ହେ ଗମନ ॥
କେତେ ସେ କୋମଳବାକ୍ୟ କହିବ ବିନୟୀ
ତୁମ୍ଭେ ଏତେ ଭକ୍ତବୋଲି ନ ଜାଣଇଁ ମୁହିଁ ॥
ମୋହର ଯାବତ ଦୋଷ ତାହା କ୍ଷମାକର ।
ଯହିଁକି ତୁମ୍ଭର ଇଚ୍ଛା ତହିଁ ବିଜେକର ॥
ଅନେକ ପ୍ରକାରେ ଯମ ହୋଇବ ବିନୟୀ ।
ପ୍ରଭୁଙ୍କୁ ଆଶ୍ରେ କରିଲେ ଏମନ୍ତ ହୁଅଇ ॥

ନିଷ୍ଠା ପରେ ତାକୁ ଆଉ ନ ଥାଇ କଷଣ ।
ବିପଦ ପଡ଼ିଲେ ରକ୍ଷା କରନ୍ତି ମୋହନ ॥
ଏମନ୍ତ ଯେ ପ୍ରଭୁଙ୍କର ପାଦସେବା ଛାଡ଼ ।
କିଅର୍ଥେ ନ ମରୁ ନରେ ଭବଜଳେ ବୁଡ଼ି ॥
ଏ ଜୀବ ନାନା ଯୋନିରେ କରୁଛି ଭ୍ରମଣି ।
ଆତ ଯାତ ହେଉଅଛି ବେଳକାଳ ଜାଣି ॥
ଏ ଜୀବନ ବିପତ୍ତିକି ଧନପ୍ରାପ୍ତି କରି ।
କିଅର୍ଥେ ଜନମ ହୋଇ ଯାଉଅଛି ମରି ॥
ମନ ସ୍ଥିରକରି ଯେବେ ଦଣ୍ଡେ କରୁ ଲୟେ ।
କାଳେ କାଳେ ନ ହେବଟି ଜନ୍ତୁପତି ଭୟେ ॥
ଏବେ ସୁମନ ଗୋବିନ୍ଦେ ସଦା ଲକ୍ଷ୍ୟକର ।
ଭବସାଗରକୁ ଯେବେ ଅଛି ତୋର ଡର ॥
ଖର ବୋଝି ନୁହଇ ସେ ନୁହେ ବଡ଼ ଗରୁ ।
ହୃଦୟ ମଧରେ ଏକା ରାମ ନାମ ଧରୁ ॥
ସକଳ କଳୁଷ ତୋର ହୋଇଯିବ ନାଶ ।
ତିଳାର୍ଦ୍ଧେ ତହିଁରେ ତୋତେ ନ ଲାଗିବ କ୍ଲେଶ ॥
ବୃଦ୍ଧି ହେବ ପୁଣ୍ୟ ତୋର ପାପ ହେବ ଦୂର ।
ଦେହାନ୍ତେ ଲଭିବୁ ଯାଇଁ ବଇକୁଣ୍ଠପୁର ॥
ଏ ସବ ଶୁଣି ସୁମନ ଆନନ୍ଦତେ କହି ।
ଦିନକେ ଘଡ଼ିଏ ନାମ ଭଜିବ ଯେ ମୁହିଁ ॥
ନାମରେ ଅଛଇ ଯେବେ ମହିମା ଏମନ୍ତ ।
ସେ ଘଡ଼ିକ ଚଇତନ ଭଜିବ କେମନ୍ତ ॥
ଚଇତନ ବୋଲେ ଏହା ଶୁଣ କାହିଁପାଇଁ ।
ତହିଁର ବୃତ୍ତାନ୍ତ ତୋତେ କହୁଛି ବୁଝାଇ ॥
ପଞ୍ଚମନ ସ୍ଥିର କରି ନିଶ୍ଚଳ ଆସନେ ।
ବସି ଏକାନ୍ତେ ଭଜିବୁ ନାମ ଶୁଦ୍ଧମନେ ॥
ତୋର ପଞ୍ଚମନ ଆଉ ପଚିଶ ପ୍ରକୃତି ।
ସେହିକାଳରେ ନିଶ୍ଚଳେ ରହିଥିବେ ତଥି ॥
ଲୋଭ ମୋହ କାମ କ୍ରୋଧ ଆଉ ହିଂସା ରାଗ ।
ସେ କାଳରେ ଏ ସବୁକୁ କରିଦେବୁ ତ୍ୟାଗ ॥
ଧ୍ୟାନରେ ଏକା ରହିବୁ ପ୍ରଭୁ ଲକ୍ଷ୍ୟକରି ।
ପ୍ରକୃତିଏ ନ କରନ୍ତି ଯେସନେ ଦୁର ଯୁର ॥
ନବଦ୍ୱାରକୁ ନିରୋଧି କିଳିବୁ କବାଟ ।
ବାହ୍ୟକୁ ଯିବାପାଇଁକି ନ ପାଇବେ ବାଟ ॥
ଏମନ୍ତ ଯତନ କରି ରଖିଲେ ନିବାଡ଼ ।
କେ ଅଛି ସଂସାରେ ତୋତେ ପାରିବ ଘଉଡ଼ି

ଆରେ ମନ ଏହିପରି ଯେବେ ପାରୁ ରଖି ।
ତେବେ ସେ ଧ୍ୟାନମାର୍ଗରେ ପ୍ରଭୁ ରୂପ ଦେଖି ॥
ସୁନ୍ଦର ସୁକୋମଳ ଶରୀର ତାଙ୍କର ।
ନବଜଳଧର କାନ୍ତି ଯେହ୍ନେ ଦିବାକର ॥
ଆଜାନୁଲମ୍ବିତ ଭୁଜ ଆୟୁଧ ଯେ ଭିନ୍ନ ।
ଗଦା ସାରଙ୍ଗ ରଥାଙ୍ଗ କମ୍ବୁ ଶୋଭିବନ ॥
ସୁନ୍ଦର ନାସା ନୟନ ସୁଦୀର୍ଘ ଅଟଇ ।
ରଙ୍ଗ ଅଧରରେ ମନ୍ଦହାସ ପ୍ରକାଶଇ ॥
ଶିରରେ ହେମ ମୁକୁଟ କର୍ଣ୍ଣରେ କୁଣ୍ଡଳ ।
କଣ୍ଠଦେଶେ ଶୋଭାପାଏ ହେମ ରତ୍ନମାଳ ॥
ତା ପୁଣି ନାଭି ପର୍ଯ୍ୟନ୍ତ ହୋଇଛି ଲମ୍ବିତ ।
ତାହା ଯେ ଦେଖିବ ହେବ ତା ନେତ୍ର ପବିତ୍ର ॥
କଟିରେ ପୀତବସନ ସୁନ୍ଦର ଦିଶଇ ।
ତା ପରେ ରତ୍ନମେଖଳା ଶୋଭା ପ୍ରକାଶଇ ॥
ପୟରେ ରତ୍ନନୂପୁର ବାଜେ ରୁଣୁଝୁଣି ।
ଏପ୍ରକାରେ ତାଙ୍କୁ ଚିନ୍ତା କରିବ ମନେଣ ॥
ଏମନ୍ତ ପ୍ରଭୁଙ୍କୁ କଲେ ଦଣ୍ଡେମାତ୍ର ଲୟେ ।
ଆଉ କିସ ପାପବାଧା ରହିବ ତୋ ଦେହେଁ ॥
ଆହେ ସାଧୁଜନମାନେ ମୋ ଦୋଷ ନ ଘେନ ।
ସୁମନ ଆଗରେ ଯାହା କହିଲେ ଚୈତନ୍ୟ ॥
ଜନହିତେ ତା ଲେଖିଲି ଅନ୍ୟ କାର୍ଯ୍ୟ ନାହିଁ ।
ଯାହା କୃପା କଲେ ମୋତେ ଯଦୁକୁଳସାଇଁ ॥
କିସ ମୁଁ ଲେଖିପାରିବ କିସ ମୋର ତତ୍ତ୍ୱ ।
ବାଳକମାନଙ୍କ ପ୍ରାୟେ ନାହିଁ ମୋର ହେତୁ ॥
କେହୁ ଏ ଗ୍ରନ୍ଥ ଲେଖଇ କେ କରୁ ଗୋଚର ।
ଯେ ବସିଛନ୍ତି ହୃଦୟ ସିଂହାସନ ପର ॥
କେମନ୍ତ ସ୍ୱରୂପ ତାଙ୍କ କେଉଁରୂପେ ଛନ୍ତି ।
ଯୋଗୀଏ ଯାହାଙ୍କୁ ଯୋଗମାର୍ଗରେ ଚିନ୍ତନ୍ତି ॥
ନିରଞ୍ଜନ ସ୍ୱାମୀ ସେ ଯେ ଲକ୍ଷ୍ମୀ କୋଳେ ନେଇ ।
ବିଜୟ କରିଅଛନ୍ତି ବ୍ରହ୍ମାଣ୍ଡ ଗୋସାଇଁ ॥
ସେ ସିନା କହି ଦିଅନ୍ତି ସର୍ବ ବେଦଶାସ୍ତ୍ର ।
ଆନ କେ କହି ପାରିବ ଅଛି ସାମରଥ ॥
ଏହା ଭଲଣି ଆନନ୍ଦ ମୋର ପଥିମତ ।
କହିବା ପାଇଁ ମନରେ କରେ ବଡ଼ ହିତ ॥
ସେହି ଯାହା କହିଦିଅନ୍ତି ଲେଖଇଁ ମୁ ତାହା ।
ଏ ସକାଶୁ ହୃଦପଦ୍ମେ ଭାଳେ ଲକ୍ଷ୍ମୀନାହା ॥

କହଇ ହୀନ ମାଧବ ଅଜ୍ଞାନ ମୋ ମତି ।
ମୁ କାହୁଁ ଜାଣିପାରିବି ପୁରାଣର ଗତି ॥
ମୋଠାରୁ କ୍ରୂର କପଟୀ ମୂର୍ଖ ଯେ କୃପଣେ ।
ବ୍ରହ୍ମାଣ୍ଡେ ଖୋଜିଲେ ଆନ ନ ଥିବେକ ଜଣେ ॥
ଜୀବଙ୍କୁ ପ୍ରମାଦ ପାଏଁ ହିଂସାଭାବ ଘେନି ।
ପଶୁଙ୍କ ପ୍ରାୟେ ବଞ୍ଚିଲି ଦିବସ ରଜନୀ ॥
ପାପିଙ୍କ ମଧ୍ୟରେ ଶ୍ରେଷ୍ଠ ମୁହିଁ ଏକା ଜାଣ ।
କେବଳ କରୁଣା ଅଟେ ପତିତ ପାବନ ॥
ଏହି ସକାଶୁ ଭରସା ଅଛି ମୁହିଁ କରି ।
ଉଡ଼ୁଛି ମହିମାବାନା ସର୍ବଦିଗ ପୂରି ॥
ଚିରପାପୀ ବୋଲି ମୋତେ ନ ନେଲେ ଉଦ୍ଧରି
ଦୁଃଖେ ସୁଖେ ରହିଅଛି କର୍ମକୁ ଆଦରି ॥
ଏହା ମୁ ମନେ ମୋହର କରଇଁ ବିଚାର ।
ମୋହପରି ପାପୀ କେହି ନ ଥିବେ ସଂସାର ॥
ଯେବଣ ଶ୍ରୀଚରଣକୁ ସର୍ବ ସୁରମୁନି ।
ଶରଣ ପଶିବାପାଇଁ କରନ୍ତି ଦସ୍ମିନୀ ॥
ହର ବ୍ରହ୍ମା ଯାହାଙ୍କର ଚରଣେ ଆଶ୍ରିତ ।
ଯାହାଙ୍କ ଆଜ୍ଞାରେ ଚନ୍ଦ୍ର ସୂର୍ଯ୍ୟ ଆତଯାତ ॥
ପଦ୍ମାଳୟା ନ ଛାଡ଼ଇ ଯେବଣ ଚରଣ ।
ମୁ ଛାର ପାପୀ ପାଇବି କାହୁଁ ତାହା ପୁଣ ॥
କେବଳ ତାଙ୍କ ଭକତ ପାଦପଦ୍ମ ଧୂଳି ।
ମଣ୍ଡନ ହେଉଥାଉ ଯେ ମୋହର ମଉଳି ॥
ବୈଷ୍ଣବ ବ୍ରାହ୍ମଣ ଆଉ ସାଧୁ ସନ୍ଥଜନ ।
ସେବାରେ ସଦା ତତ୍ପର ହେଉ ମୋର ମନ ॥
ଏହା ଯେ ବାଞ୍ଛା କରଇଁ ମୁହିଁ ନିତ ନିତ ।
ମାଗଇ ପ୍ରଭୁଙ୍କ ପାଦେ କରିଣ ଭକତ ॥
ଏହିପରି ବିଚାର ମୁଁ କରେଁ ମନେ ମନ ।
ଯାହା ଇଚ୍ଛା ତାହା କର ତୁମ୍ଭେ ଭଗବାନ ॥
ମୋହର ଆୟତ୍ତ ନାହିଁ କରିବାକୁ କିଛି ।
ସଂସାର ଜାଲରେ ପଡ଼ି ବନ୍ଧନ ହୋଇଛି ॥
ଯେମନ୍ତ ବ୍ୟାଧ ଜାଲରେ ମୃଗ ପଡ଼ିଥାଇ ।
ସକଳ ବୁଦ୍ଧି ତାହାର ବିଅର୍ଥକୁ ଯାଇ ॥
ସେହିପରି କୁଟୁମ୍ବଙ୍କ ମାୟା ଜଞ୍ଜାଳରେ ।
ପଡ଼ି ଘାଣ୍ଟି ହେଉଅଛି ରାତ୍ରି ଦିବସରେ ॥
କେବଳ ଭରସା ମନେ ଅଛଇ ମୋହର ।
ପତିତପାବନ ବାନା ଉଡ଼େ ପ୍ରଭୁଙ୍କର ॥

ମହାପାପି ମାନଙ୍କୁ ସେ ଉଦ୍ଧରିବା ପାଇଁ ।
ପତିତପାବନବାନା ଅଛନ୍ତି ଉଡ଼ାଇ ॥
ତେଣୁକରି ଭରସା ମୋ ଅଛି ବହୁମତେ ।
ନୋହିଲେ ଆଉତ ବୁଦ୍ଧି ନ ଦିଶେ କାହିଁତେ ॥
ଆହେ ସାଧୁଜନମାନେ ମନରେ ବିଚାରି ।
ଭାଇ ବନ୍ଧୁ କୁଟୁମ୍ବାଦି କେ ନୁହେ କାହାରି ॥
ଭବଗ୍ରାହୀ ନାଥଙ୍କୁ ଯେ ଦୃଢେ ଆଶ୍ରେକର ।
ନୋହିଲେ ଏ ଭବଜଳୁ ନାହିଁଟି ଉଦ୍ଧାର ॥
ପାଣି ଥାଉଁ ଥାଉଁ ବନ୍ଧ ବାନ୍ଧ ଦୃଢକରି ।
ପ୍ରାଣ ଗଲେ ଆଉ କିଛି କରି ଯେ ନ ପାରି ॥
ମୋ ପରି ମୂର୍ଖ ସଂସାରରେ ରହିଛନ୍ତି ଯେତେ ।
ଏହି କଥାକୁ ବିଚାରି ନ କରନ୍ତି ଚିତ୍ତେ ॥
ବଡ଼ିମାପଣ କରିଣ ବସିଁଥାନ୍ତି ଦିନ ।
ଭାଳନ୍ତି ଆମ୍ଭର ଅଟଇ ଅଟୁଟ ଜୀବନ ॥
କିଏ ସେ ଅଛି ଆମ୍ଭର ସଙ୍ଗେ ସମସରି ।
ଏହା ବିଚାରି ବସିଁନ୍ତି ଦିବସ ଶର୍ବରୀ ॥
ଏହି ସବୁକୁ ବିଚାରି କରି ସାଧୁଜନ ।
କହେ ମାଧବ ଉଦ୍ଧାର କର ଭଗବାନ ॥
ଜୟ ଜୟ ଜଗନ୍ନାଥ ଶଙ୍ଖ ଚକ୍ରଧାରୀ ।
ଏ ଭବସାଗରୁ ନାଥ କର ମୋତେ ପାରି ॥
ପତିତପାବନବାନା ଯଶ ନୋହୁ ନାଶ ।
କରୁଣାକୁଠାରେ ମୋର ପାପ କର ଧ୍ୱଂସ ॥
ତୁମ୍ଭବିନୁ କେ ଭରସା ଆନ ନାହିଁ ମୋର ।
ଦୀନବନ୍ଧୁ ମୋହପ୍ରତି ବାରେ ଦୟାକର ॥
ଏମନ୍ତରୂପେ ସୁମନ ଚୈତନ୍ୟ ସମ୍ବାଦ ।
ପଢି ଶୁଣିଲେ ନ ବାଧେ ଭବପରମାଦ ॥



କୃତକର୍ମର ଭୋଗାଭୋଗ ।

ଏଥୁଅନ୍ତେ ଜନେ ଶୁଣ ସୁମନ ରାଜନ ।
ଚଇତନ ପାଦେ ପଡ଼ି ପୁଚ୍ଛେ ପୁଣ ପୁଣ ॥
ହେ ଚଇତନ କଥାଏ ପଚାରିବି ମୁହିଁ ।
ତାହା ମୋତେ କହିଦେବ ସଂଶୟ ଛିଡ଼ାଇ ॥
ଆହେ ଗୁରୁଦେବ ମୋତେ ଅନୁଗ୍ରହ କର ।
ଏ ଭବସାଗର ଅଟେ ଅପାର ଗମ୍ଭୀର ॥
ଏଥେ ମନୁଷ୍ୟ ଅଛନ୍ତି ଅନେକ ପ୍ରକାର ।
ନାନା କାର୍ଯ୍ୟ କରୁଛନ୍ତି ସଂସାର ଭିତର ॥
ଏଥିମଧ୍ୟେ କେତେଲୋକ ହୋଇଛନ୍ତି ଦୁଃଖୀ ।
କେତେକ ଲୋକ ହୋଇଣ ଛନ୍ତି ମହାସୁଖୀ ॥
କେଉଁଲୋକ ଅନ୍ଧ ଖୋଟା କେ କଣା ଅଟଇ ।
କେ ଜଡ଼ା କେ କୁଜା କେହୁ କଥା ନ କହଇ ॥
କେ ଅନ୍ନ ବସ୍ତ୍ର ହୀନ କେ ନିତ୍ୟ ମାଗିଖାଏ ।
କେ ଉଠି ନ ପାରଇ କେ ବ୍ୟାଧିମନ୍ତ ହୁଏ ॥
ଏହା ଦେଖିଣ ବିଚାରି କରେଁ ମୁହିଁ ମନ ।
କେମନ୍ତ ଚରିତ ଏହୁ କେମନ୍ତ ବିଧାନ ॥
ଏ ସଂସାର ଯେତେବେଳେ ହୋଇଲା ପ୍ରଳୟ ।
ମନୁଷ୍ୟାଦି ପଶୁ ପକ୍ଷୀ ସର୍ବେ ଗଲେ କ୍ଷୟ ॥
ପୁଣି କପରି ହୋଇଲେ ଏହା କହ ମୋତେ ।
ଚଇତନ ବୋଲେ ମନ ଶୁଣ ଏକଚିତ୍ତେ ॥
ହରିଙ୍କ ଆଜ୍ଞାରେ ବ୍ରହ୍ମା ହୋଇଲେକ ଜାତ ।
ଦେଖିକରି ତାକୁ ଦୟା କଲେକ ଅଚ୍ୟୁତ ॥
ବୋଇଲେ ତୁମ୍ଭେ ସର୍ଜନା କର ବ୍ରହ୍ମାଣ୍ଡକୁ ।
ଜନ୍ତୁଙ୍କ ମଧ୍ୟରେ ଶ୍ରେଷ୍ଠ କରିବୁ ନରଙ୍କୁ ॥
ସର୍ବ ବେଦବିଦ୍ୟା ଆଉ ଜପ ତପ ଧର୍ମ ।
ଶାସ୍ତ୍ରାନୁସାରେ କରିବୁ ଯାବତୀୟ କର୍ମ ।
ଶୁଣିକରି ବିଧାତା ଯେ ଶିରେ କରି ଯୋ'
ଅତି ବିନୟେ ପ୍ରଭୁଙ୍କ ପଦପାଦେ ପଡ଼ି ॥
ବୋଇଲା କେମନ୍ତ କରି ସୃଜିବି ସଂସାର ।
କାହିଁ କିଛି ନ ଦିଶଇ ଘୋର ଅନ୍ଧକାର ॥
କପରି ଆଜ୍ଞା ପାଳିବି କହନ୍ତୁ ବିଚାରି ।
ଶୁଣିଣ ପ୍ରସନ୍ନ ହୋଇ କହିଲେ ଶ୍ରୀହରି ॥
ଏଥିକୁ ମନରେ କିଛି ସଂଶୟ ନ କର ।
ଆମ୍ଭବୋଲେ ସର୍ବ ସିଦ୍ଧି ହୋଇବ ତୋହର ॥
ଯେତେବେଳେ ଯାହା ତୁମ୍ଭେ ବିଚାରିବୁ ଚିତ୍ତେ ।
ସେକ୍ଷଣି ତାହା ପ୍ରାପତ ହେଉଥିବ ତୋତେ ॥
ତୁ ଯାହା କହିବୁ ସେହି କଥା ହେବ ସାର ।
ଆମ୍ଭର ଆଜ୍ଞା ଅଟଇ ଏହା ନିରଧାର ॥
ଏତେ କହି ଅନ୍ତର୍ଦ୍ଧାନ ହୋଇଲେ ଅଚ୍ୟୁତ ।
ସେଠାରେ ରହି ବିଧାତା ସର୍ଜିଲେ ଜଗତ ॥
ସେହୁ ଚାରିମୁଖୁ ଚାରିବେଦ ଜାତ କଲେ ।
ଋକ ଯଜୁ ସାମ ଅଥର୍ବ ଯେ ନାମ ଦେଲେ ॥
ପୁନଶ୍ଚ ମୁଖୁ ପୁରାଣ ଅଷ୍ଟାଦଶ କଲେ ।
ଗୋବିନ୍ଦ ସୁମରି ଧାତା ସର୍ବ ଭିଆଇଲେ ॥

ପଶୁ ପକ୍ଷୀ ନର ଆଦି ସ୍ଥାବର ଜଙ୍ଗମ ।
ଏ ସର୍ବ ଭିଆଇ ବ୍ରହ୍ମା ହେଲେ ହୃଷ୍ଟମନ ॥
ଥୋକେ ଭୋଗ କରନ୍ତି ଲୋକ ବହୁତର ଧନ ।
ଥୋକେ ଭୋଗ କରନ୍ତି ଲୋକ ଯାନ ଯେ ବାହନ ॥
ରାଜାଙ୍କର ସୁଖଭୋଗ କହି ଯେ ନୁହଇ ।
ମାନବରୂପରେ ଜାତ ହରି ଛନ୍ତି ହୋଇ ॥
ବିଷ୍ଣୁ କଳା ନ ଥିଲେଟି ନୁହଇ ରାଜନ ।
କେ କହିପାରିବ ମନ ତାହାଙ୍କର ପୁଣ୍ୟ ॥
କ୍ଷିତିପତି ନରପତି ଅଟେ ଯାର ନାମ ।
ମନୁଷ୍ୟ ତାହାକୁ କାହୁଁ ହୋଇବ ସମାନ ॥
ଶୁଣି ସୁମନ ଚୈତନ ପାଦଛଇଲେ ପଢ଼ ।
ଆଉ ଲୋକ କଥା କହ ରାଜାଁକଥା ଛାଡ଼ ॥
ଅନ୍ୟର କଥାରେ ସିନା ଅଛି ମୋ ସନ୍ଦେହ ।
ତେଣୁ ତୋତେ ପଚାରଇ ଏହା ମୋତେ କହ ॥
ଶୁଣି ଚୈତନ୍ୟ ବିଷ୍ଣୁଙ୍କୁ ମନେ କଲେ ଚିନ୍ତା ।
ଜୟ ଜୟ ଜଗନ୍ନାଥ ଜଗତ କରତା ॥
ଜୟ ଜୟ ମହାପ୍ରଭୁ ଦେବ ଦାମୋଦର ।
ଜୟ ଜୟ ନାରାୟଣ ଶଙ୍ଖ ଚକ୍ରଧର ॥
ଜୟ ଜୟ ଦୀନବନ୍ଧୁ ଆରତ ଭଞ୍ଜନ ।
ଜୟ ଜୟ ମହାବାହୁ ଗରବ ଗଞ୍ଜନ ॥
ତୁମ୍ଭେ ଯେ ସଂସାରେ ପୂରି ସବୁକଥା କର ।
ତୁମ୍ଭବିନୁ କେହି ନାହିଁ ଜଗତ ମଧ୍ୟର ॥
ତୁମ୍ଭ ବିନା ଆଜ୍ଞା କରି ନ ପାରେ କେ କିସ ।
ସବୁ କରୁଅଛ ରହି ସର୍ବ ହୃଦଦେଶ ॥
ତୁମ୍ଭ କୃପାହେଲେ ପଙ୍ଗୁ ଲଙ୍ଘି ପାରେ ଗିରି ।
ତୁମ୍ଭ କୃପାହେଲେ ମୂକ ବାକ୍ୟ କହି ପାରି ॥
ତୁମ୍ଭ କୃପାହେଲେ ଅନ୍ଧ ନେତ୍ରକୁ ଦଶଇ ।
ତୁମ୍ଭ କୃପାହେଲେ ମୃତ ମନୁଷ୍ୟ ଜୀଅଇ ॥
ତୁମ୍ଭେ ଯେ ଏମନ୍ତ ପ୍ରଭୁ ସର୍ବହୃଦେ ଥାଇ ।
ଯାହାକୁ ଯେବଣ ମାର୍ଗେ ଚଳାଅ ଗୋସାଇଁ ॥
ସେହିଲୋକ ସେହିମାର୍ଗେ ହୁଏ ଆତ ଯାତ ।
ଆନ କରିବାକୁ ତାର ନାହିଁ ସାମରଥ ॥
ଉଦ୍ଧବକୁ କହିଥିଲ ଯେଉଁ ଜ୍ଞାନତତ୍ତ୍ୱ ।
ମୋତେ ତାହା କହିଦିଅ ଆହେ ପଦ୍ମନେତ୍ର ॥
ଏଣୁକରି ଧ୍ୟାନ କରେଁ ତୁମ୍ଭ ପଦ୍ମପାଦ ।
କୃପାକରି କହିବ ମୁଁ ଥୋକେ କିଛି ପଦ ॥

ଏହା କହିଣ ଚୈତନ୍ୟ କଲେ ତାଙ୍କ ଧ୍ୟାନ ।
ନିଶ୍ଚଳେ ବସି ସେ ପାଦେ ଲଗାଇଲେ ମନ ॥
ସେ ପାଦପଦ୍ମ ଗଲାଲ ଯେମନ୍ତ ପ୍ରକାରେ ।
ଧ୍ୟାନମାର୍ଗେ ଚଇତନ ତାକୁ କରି ତ୍ରାସ ॥
ଛାମରେ ଢଳି ପଡ଼ିଲେ ହୋଇ ଭୋଳମନ ।
ସୁମନ ସ୍ତ୍ରୀ ଦେଖି ତାକୁ ତୋଳିଲା ବହନ ॥
ତତକ୍ଷଣେ ଚଇତନ ଚେତାପାଇ ଉଠି ।
ହୃଦ ମଧ୍ୟେ ଗୋବିନ୍ଦଙ୍କ ନାମ କଲେ ଗଣ୍ଠି ॥
ସୁମନ ପୁଚ୍ଛିଲା ଶୁଣ ଆହେ ଚଇତନ ।
ପିତୃବେଗୀ ପ୍ରାୟ କିପାଁ ହୋଇଲ ଅପଣ ॥
କେବଣ କାରଣ ଏହା ଫେଡ଼ି କହ ମୋତେ
ନିଷ୍ଟପଟେ କହିବ ହେ ମୋହର ଅଗ୍ରତେ ॥
ଚଇତନ କହୁଅଛି ଶୁଣ ଆରେ ମନ ।
ଯହିଁକି ଢଳିପଡ଼ିଲୁଁ ତାହାର କାରଣ ॥
ତୁହି ପଚାରିଲୁ ମୋତେ ସଂସାରର କଥା ।
ଭଲ ମନ୍ଦ ଜାଣି ଆଉ ଅଧିକ ବ୍ୟବସ୍ଥା ॥
ତେଣୁକରି ମୁହିଁ ଧ୍ୟାନେ ଗଲି ବ୍ରହ୍ମପୁରେ ।
ପଚାରି ଆସି କହିବ ତୋତେ ନିରଧାରେ ॥
ଦେଖିଲି ଯେ ବେଦମାର୍ଗେ ଚଳନ୍ତି ବେଦସାର
ଜୀବ ପରମ ଜଗିଣ ଅଛନ୍ତି ଦୁଆର ॥
ବହୁତର ବ୍ରହ୍ମଋଷି ଥିଲେ ତହିଁ ବସି ।
ପଦ୍ମାସନେ ବସିଥିଲେ ଗୋଲୋକ ନିବାସି ॥
ଗୋବିନ୍ଦ ପଦାରବିନ୍ଦେ ନିବେଶିଣ ଚିତ୍ତ ।
ପାଞ୍ଚମନ ପ୍ରକୃତିକି କରିଣ ଏକତ୍ର ॥
ବାନ୍ଧି ରଖିଛନ୍ତି ତାଙ୍କ ପାଦ ପାଣିକରି ।
ଷଡ଼ ଅରିଙ୍କି ଦେଖି ଜ୍ଞାନଶର ମାରି ॥
ଏକଠାରେ ରଖିଛନ୍ତି ସମସ୍ତଙ୍କୁ ବାନ୍ଧିଣ ।
ଶୁଦ୍ଧମନେ ଭଜୁଛନ୍ତି ପ୍ରଭୁ ଭଗବାନ ॥
ପଶିଲି ତାହାଙ୍କ ମନ ମଧ୍ୟରେ ମୁ ଯାଇ ।
କ୍ରମେ କ୍ରମେ ଭଜୁଛନ୍ତି ଶ୍ରୀହରିଙ୍କି ସେହି ॥
ସେହିଠାରୁ ବ୍ରହ୍ମରନ୍ଧ୍ରେ ପଶିଲି ଯାଇଣ ।
ଦେଖିଲି ରାସମଣ୍ଡପେ ବିଜେ ନାରାୟଣ ॥
ସେହି ସ୍ଥାନର ସୌନ୍ଦର୍ଯ୍ୟ କେ ବର୍ଣ୍ଣିପାରିବ ।
ଲକ୍ଷ୍ମୀ ନାରାୟଣ ବିଜେ ଛନ୍ତି ଏକଠାବ ॥
ସେ ନାରାୟଣ ପାଦରୁ ଗଳେ ମକରନ୍ଦ ।
ତାକୁ ପାନ କରୁଛନ୍ତି ତହିଁ ଋଷିବୃନ୍ଦ ॥

ମୁହିଁ ମଧ୍ୟ ପାନକରି ସୁଧା ଇଚ୍ଛିମନେ ।
ତୋପାଶେ ଭଲପଡ଼ିଲି ଏଥିପାଇଁ ଭେଲେ ॥
ଚୈତନ୍ୟବାକ୍ୟେ ସୁମନ ପ୍ରମୋଦିତ ହୋଇ ।
ବୋଇଲା ଦେଖାଅ ମୋତେ ସେ ଦୁର୍ଲଭ ଭୂଇଁ
ଚୈତନ୍ୟ ବୋଇଲେ ସେହୁ ବଡ଼ଇ ସଙ୍କଟ ।
ମାଛି ଗଲବାକୁ ତହିଁ ଥିଲେ ନାହିଁ ବାଟ ॥
ଧ୍ୟାନମାର୍ଗେ ଯୋଗିଜନେ ଦେଖନ୍ତି ସେ ସ୍ଥାନ ।
ତୁ କାହିଁ ଦେଖିବୁ ଛାଡ଼ି ଦାରା ପୁତ୍ର ଧନ ॥
ଯେବେ ତୁ ଏହାଙ୍କ ଆଶା ପାରୁ ପରିହରି ।
ତେବେ ସିନା ତୁହି ଦେଖି ପାରିବୁ ସେ ପୁରୀ ॥
ବଂଶ ସହିତେ ଛାଡ଼ିବୁ ଏକଥିଲେ ପାଶ ।
ଜାଣ ସେ ସ୍ଥାନ କେବେହେଁ ନୋହିବଟି ଦୃଶ୍ୟ ॥
ଦୁର୍ଗମ ପଥ ଅଟଇ ଶ୍ରୀହରି ଭଜନ ।
ଭୟଙ୍କର ଯୋଗିଜନେ ଯାନ୍ତି ଘୋରବନ ॥
ଅଗମ୍ୟ ସ୍ଥାନକୁ ଯାଇଁ କୁଟିକରି ବସି ।
ଶ୍ରୀହରି ନାମକୁ ଦୃଢ଼େ ହୃଦମଧ୍ୟେ ଘୋଷି ॥
ଗୋବିନ୍ଦ ପଦ୍ମପାଦରେ ଚିତ୍ତକୁ ମଜାଇ ।
ଏକାନ୍ତେ ଭଜୁଅଛନ୍ତି ଫଳ ମୂଳ ଖାଇ ॥
ସଂସାର ମାୟା ମଣନ୍ତି ତେଣୁ ତୁଚ୍ଛ ପ୍ରାୟେ ।
ଅନ୍ତେ ତାଙ୍କର ପରମ ଗତି ଲାଭ ହୋଏ ॥
ପୁନଶ୍ଚ ଚୈତନ୍ୟ କହେ ଶୁଣ ହେ ସୁମନ ।
ପୂର୍ବେ ଯା ପଚାରିଥିଲୁ କେ ବଡ଼ କେ ସାନ ॥
ପାପ ପୁଣ୍ୟରୁ ପ୍ରାଣୀଏ ଊଣାଧିକ ହୋଇ ।
ପୁଣ୍ୟ କର୍ମରୁ ଉଦିତ ପାପେ କ୍ଷୟ ଯାଇ ॥
ତୁଯେ ବୋଇଲୁ ବିଧାତା ବ୍ରହ୍ମାଣ୍ଡକୁ କଲେ ।
ଊଣା ଅଧିକ କପାଇଁ ଏଥିରେ ହୋଇଲେ ॥
ଅନେକ ଅଧର୍ମ ଏଥେ କରୁଛନ୍ତି ପ୍ରାଣୀ ।
ବିଧାତାଙ୍କୁ କରୁଛନ୍ତି ନିନ୍ଦା ସେ ନ ଜାଣି ॥
ସୁମନ ବୋଇଲା ସେହି ଜଗତର ତାତ ।
ସେ କିପାଁ ସମାନକରି ନ କଲେ ଜଗତ ॥
ଊଣା ଅଧିକ କିପାଇଁ ସଂସାରେ ହୋଇଲେ ।
ଏକଥା ସଂଶୟ ଫେଡ଼ି କହିଦିଅ ଭଲେ ॥
ଯେତେବେଳେ ପ୍ରାଣୀମାନେ ବହୁ ସୁଖ ପାନ୍ତି ।
ବହୁମାପଣେ ବିଧିଙ୍କ ନିନ୍ଦା ଯେ କରନ୍ତି ॥
ଚୈତନ୍ୟ ବୋଲେ ତୁ ଶୁଣରେ ଅବୋଧ ମନ ।
ମୂର୍ଖପଣରୁ ତୁହି ନ ବୁଝୁ ବଚନ ॥
ଯେତେବେଳେ ବିଧାତାଏ ସୃଷ୍ଟି ଜାତକଲେ ।
ଆଗକରିଣ ମନୁଷ୍ୟ ମାନଙ୍କୁ ସର୍ଜିଲେ ॥
ତାଙ୍କ ପ୍ରାଣ ପୋଷିବାକୁ ବିଚାରିଣ ମନ ।
ଅନ୍ନର ନିମନ୍ତେ ଜାତ କରିଲେକ ଧାନ ॥
ବ୍ୟଞ୍ଜନ ନିମନ୍ତେ କଲେ ଶାକ ମୁଗ ବ୍ରୀହି ।
ଆଉର ବହୁପ୍ରକାରେ ଫଳ ମୂଳ ଲହି ॥
ବ୍ୟାଧି ନାଶପାଇଁ କଲେ ନାନାଦି ଔଷଧି ।
ମନୁଷ୍ୟଙ୍କ ପାଇଁ ଏହା କରିସାରି ବିଧି ॥
ପୁଣି ପିନ୍ଧିବା ନିମନ୍ତେ ବସନ ସର୍ଜିଲେ ।
ବ୍ୟବହାର ନିମନ୍ତରେ ନାନା ଧାତୁକଲେ ॥
ଅଷ୍ଟରତନେ ନାନାବିଧ କରି ଅଳଙ୍କାର ।
ରହିବା ନିମନ୍ତେ କଲେ ଉତ୍ତମ ମନ୍ଦିର ॥
କାମନାର ନିବାରଣ ହେତୁକୁ ବିଚାରି ।
ଯୋଷିତଦେଲେ ପୁରୁଷଙ୍କେ ଗୋଟାଏ ଯେ ନାରୀ ॥
ବୋଇଲେ ଏଥିରେ ହେବ ବଂଶ ବରଧିତ ।
ଏହାଙ୍କ ତହୁଁ ହୋଇବ ଦୁହିତା ଯେ ସୁତ ॥
ତେବେ ସିନା ଶୋଭମାନ ଦିଶିବ ଧରଣୀ ।
ଏସନ ସର୍ଜନା କରି ସୁଖୀ କୁଶପାଣି ॥
ସ୍ୱୟଂ ଗୋଲୋକାଧିକାରୀ ଧାତା ରୂପ ଧରି ।
ବ୍ରହ୍ମାଣ୍ଡ ସର୍ଜନା କଲେ ଅତି ଯତ୍ନକରି ॥
ପୁଣିହିଁ ମନ ମଧ୍ୟରେ କଲେକ ବିଚାର ।
ଯେତେକ କର୍ମ କର୍ମୀଣି ସଂସାର ବେଭାର ॥
ଯଜ୍ଞ ଧର୍ମ ତପ ଜପ ବ୍ରତ ଆଦି ଯେତେ ।
ଦେବା ଦୟା ସତ ଧର୍ମ କର୍ମାଦି ସହିତେ ॥
ବିଷ୍ଣୁଙ୍କର ଲୀଳାମାନ ଶୁଣିବାର ଅର୍ଥେ ।
ଅଷ୍ଟାଦଶ ପୁରାଣକୁ ସର୍ଜିଲେ ଜଗତେ ॥
ତହିଁରୁ ଅନେକ ଗ୍ରନ୍ଥମାନ କଲେ ଜାତ ।
ତାହା ଶୁଣି ପ୍ରାଣୀମାନେ ହୋଇବେ ମୁକତ ॥
ସୁକର୍ମେ ଚଳିବେ ନରେ ହେବେ ସର୍ବ ସୁଖୀ ।
ଏ ସକାଶୁ ପୁରାଣକୁ ଧାତା ଛନ୍ତି ଲେଖି ॥
ନାରାୟଣଙ୍କର ଲୀଳା ଲେଖିଲେ ସକଳ ।
ଶୁଣିଲେ ପ୍ରଭୁଙ୍କୁ ଧ୍ୟାନ କରିବେ କେବଳ ॥
ହରିନାମ ସଂକୀର୍ତ୍ତନ ଆଉ ଭାଗବତ ।
ସମସ୍ତ ଶାସ୍ତ୍ର ଲେଖିଲେ ଧର୍ମ ଏକା ସତ ॥
ମନୁଷ୍ୟଙ୍କ ଆୟୁକଲେ ଛକୋଡ଼ି ବରଷ ।
ଲୀଳା କଉତୁକ ସାରି ଯିବେ ସର୍ବେ ନାଶ ॥

ତଦୁତ୍ତାରୁ ଯାବଶାସ୍ତ୍ର ମନ୍ତ୍ର ଜପ କଲେ ।
ତାଙ୍କପାଇଁ ବୃକ୍ଷଲତା ତୃଣ ସରଜିଲେ ॥
ଯେଉଁ ପଶୁକୁ ଯେପର ଖଞ୍ଜିଲେ ବିଧାତା ।
ସେମାନେ ସେହି ମାର୍ଗରେ ହୁଅନ୍ତି ଆତଯାତ ॥
ତାହା ସେ ପଶୁ ଜାଣନ୍ତି ନ ଜାଣନ୍ତି ଆନ ।
କୀଟ ପତଙ୍ଗ ଯାହାର ଯେମନ୍ତ ଭୋଜନ ॥
ଦେଖ ସଂସାରେ ପାଦପ ଅଛନ୍ତି ଯେତେ ।
ସେ ସବୁ ସ୍ଥାପିଲେ ଧାତା ଔଷଧ ନିମନ୍ତେ ॥
ବୋଇଲେ ହେ ବୃକ୍ଷ ପର ଉପକାରେ ଥାଅ ।
ପୂର୍ଣ୍ଣ ହୋଇ ଏ ସଂସାରଯାକେ ତୁମ୍ଭେ ରହ ॥
ତୁମ୍ଭ ତହୁଁ ଲୋକେ ପତ୍ର ଫଳ ମୂଳ ନେଲେ ।
ନେବେ ରୋଗମାନଙ୍କରୁ ମୁକ୍ତ ହେବେ ବୋଲି ।
ତହିଁକି ବିଗୁଣ ତୁମ୍ଭେ ନ ଧରିବ କେହି ।
ଏହିପରି ଧାତା ତାଙ୍କୁ ଛନ୍ତି ଆଜ୍ଞା ଦେଇ ॥
ଆଜଯାଏ ଏ ପାଦପେ ବିଧାତା ବଚନ ।
ମାନି ନାଶ ହୁଅନ୍ତି ନ ଘେନନ୍ତି ସେ ବିଗୁଣ ॥
ବ୍ୟାଧିମନ୍ତ ଲୋକଙ୍କର ବ୍ୟାଧିକି ନାଶନ୍ତି ।
ବିଧାତା ବଚନେ ବୃକ୍ଷେ ସତ୍ୟ ପାଳୁଛନ୍ତି ॥
ଦେହ ଅନ୍ତରେ ସେ ବୃକ୍ଷ ଭଲ ଗତି ପାଇ ।
ପର ଉପକାରୀ ଯେଣୁ ସ୍ୱର୍ଗେ ସେ ବସଇ ॥
ପଶୁ ପକ୍ଷୀଙ୍କି ବିଧାତା ଯାହା ଛନ୍ତି କହି ।
ସେହିମାର୍ଗେ ସେ ଚଳନ୍ତି ଅଦ୍ୟାବଧି ରହି ॥
ମଚ୍ଛ କଚ୍ଛ ପତଙ୍ଗାଦି କୀଟ ଖଗ ମୃଗ ।
ବିଧାତା ଦେଇଅଛନ୍ତି ଯାକୁ ଯେଉଁ ଭୋଗ ॥
ସେହି ଭୋଗରେ ଚଳନ୍ତି ସେହୁ ପ୍ରତିଦିନ ।
କେବେ ବିକଳ୍ପ ନ ଥାଏ ତାହାଙ୍କର ମନ ॥
ଦିନକୁଦିନ ବିଧାତା ଖଞ୍ଜିଥାଏ ଯାହା ।
ସମ୍ପୂର୍ଣ୍ଣ ହୋଇ ତାହାକୁ ମିଳୁଥାଏ ତାହା ॥
ଦିନେହେଁ ଦୁଃଖ ବୋଲି ନ ଜାଣନ୍ତି ସେହି ।
ଯାହାକୁ ଯେଉଁମାର୍ଗରେ ଚଳାଅନ୍ତି ବିହି ॥
ଦେହଅନ୍ତେ ତାହାଙ୍କର କିଛି ନାହିଁ ଦୁଃଖ ।
ଦେଖ ଏ ନରେ ଅଟନ୍ତି କେତେପର ମୂର୍ଖ ॥
ସବୁ ଜାଣି ଶୁଣି ମୂଢେ ପାପକର୍ମ କଲେ ।
ନ ଜାଣି ପଶୁଜାତି ଏ ଆଗରେ ରହିଲେ ॥
ଧାତା କହିଲେ ନରଙ୍କ ଶାସ୍ତ୍ରକୁ ଦେଖାଇ ।
ସେହି କଥାକୁ ସେମାନେ ପ୍ରତେ ଗଲେ ନାହିଁ ॥

ଶାସ୍ତ୍ର ପୁରାଣମାନଙ୍କ ଶ୍ରବଣରେ ଶୁଣି ।
ଉପହାସ କରୁଛନ୍ତି ମିଛପ୍ରାୟ ମଣି ॥
ବୋଲନ୍ତି ଏ କଥାମାନ କବିକୃତ ମିନା ।
ନିଜ ମତ କବି କରି ପାରନ୍ତି ରଚନା ॥
କେ ବୋଲଇ ଏ ସକଳ ବାମ୍ଭଣଙ୍କ ବୃତ୍ତି ।
ଧନ ନେବାପାଇଁ କରି ଅଛନ୍ତି ଏ ବିଧି ॥
ଉଦାରଲୋକମାନଙ୍କ ଭଣ୍ଡିବାର ପାଇଁ ।
ରଚି ଶୁଣାଇ ତାଙ୍କର ସବୁ ନେବେ ବହି ॥
ଏମନ୍ତ ବୋଲନ୍ତି ଥୋକେ ଶାସ୍ତ୍ର ନ ମାନନ୍ତି ।
ଜାଣି ଶୁଣି ନାନାବିଧ ଅକର୍ମ କରନ୍ତି ॥
ଅଗମ୍ୟ ସ୍ଥାନମାନଙ୍କେ କରନ୍ତି ଗମନ ।
ଶ୍ରେଷ୍ଠଜାତିକି ନାରେ ନ କରନ୍ତି ଯେ ମାନ୍ୟ ॥
ବ୍ରାହ୍ମଣେ ଦେଖି କହନ୍ତି ଏ ମୂର୍ଖ ଅଜ୍ଞାନ ।
ଦେବତାଙ୍କୁ କହନ୍ତି ଯେ ଏ କାଷ୍ଠ ପାଷାଣ ॥
ସାଧୁଜନଙ୍କ ମନରେ ଲେଖା ନ କରନ୍ତି ।
ଗୁରୁଙ୍କ ଇତରପ୍ରାୟେ ପାଦେ ନ ପଡନ୍ତି ॥
ଅତିଥିଙ୍କ କେହି ଶ୍ରଦ୍ଧା ନ କରନ୍ତି ଦ୍ୱାରେ ।
ଅମାନନା କରନ୍ତି କେ ମାତା ପିତା ଠାରେ ॥
ଶ୍ରୀଗୁରୁଙ୍କୁ ଅମାନନା କରନ୍ତି କେ ଜନେ ।
ସାଧୁଙ୍କୁ ନିନ୍ଦନ୍ତି କେହୁ ଲୋହିତ ଲୋଚନେ ॥
ଆହାର ଦେଖାଇ କେହୁ ପର ଜୀବ ମାରେ ।
ନାନାବିଧ ଅକର୍ମମାନ କରୁଛନ୍ତି ନରେ ॥
ଦାନ ଧର୍ମ କଥା କେହୁ ନ ଶୁଣେ କର୍ଣ୍ଣର ।
ବୋଲଇ ନୁହଇ ଏହା ଧର୍ମର ବେଭାର ॥
ଉଦାରଲୋକେ ଶୁଣିଣ ଏ କଥା କରିବେ ।
ଆମ୍ଭେମାନେ ଏ କଥା ଯେ ନ କରୁଁ କେବେ ॥
ଥୋକେ ଲୋକ ବୋଲନ୍ତି ଯେ ସଂଶୟ ଅଛଇ ।
ବିପଦରେ ଏକା ଦେବ ଶାସ୍ତ୍ରେ ଅଛି କହି ॥
ତାହାଙ୍କର ସୁଖ ସେହୁ ବର୍ଣ୍ଣିବେ ପୁଣ ।
ଏଥିରେ ପ୍ରାଣୀଏ କାହିଁ ପାଇବେ କାରଣ ॥
ଏହା କହି ଥୋକେ ଲୋକ ଦ୍ୱିଜେ ନିନ୍ଦାକରି ।
ତାଙ୍କ ଲେମନ୍ତେ ସହିବ ଏହି ବସୁନ୍ଧରୀ ॥
ସାକ୍ଷାତେ ବ୍ରାହ୍ମଣ ଅଟେ ନାରାୟଣ ରୂପୀ ।
ତାଙ୍କୁ ଯେ ନିନ୍ଦା କରଇ ସେହୁ ବଡ଼ ପାପୀ ॥
ବ୍ରାହ୍ମଣଙ୍କୁ ନିନ୍ଦାକଲେ ବଂଶ ହୋଏ ନାଶ ।
ପୁରାଣକୁ ନିନ୍ଦାକଲେ କୁମ୍ଭୀପାକେ ବାସ ॥

ଆଉର ତାକୁ ଅନେକ ମିଳେ ଦୁଃଖ ମାନ ।
ଅନ୍ନ ବସ୍ତ୍ର ନ ମିଳଇ ହୁଏ ମ୍ଳାନମାନ ॥
ସୁସ୍ଥାନ ନ ମିଳେ ତାକୁ କୁସ୍ଥାନେ ତା ବାସ ।
ସୁସ୍ଥ ହୋଇ କେବେ ତାକୁ ନ ମିଳଇ ଗ୍ରାସ ॥
ଅନ୍ନ ନ ମିଳନ୍ତେ ସେହୁ ଭୁଲେ ଦେଇ ଦେଇ ।
ଜୀବନାନ୍ତେ କୁମ୍ଭୀପାକ ନରକେ ପଡ଼ଇ ॥
ଏହିପରି ନାନା ପାପ ଅର୍ଜୁଥାନ୍ତି ପ୍ରାଣୀ ।
ବିଧାତାଙ୍କ ନିନ୍ଦା ସେହୁ କରନ୍ତି ନ ଜାଣି ॥
ବିଧାତା କହିଲ କର୍ମ ମନ୍ଦ ପାଶୋରନ୍ତି ।
ତେଣୁ କରି ପ୍ରାଣିମାନେ ଶାସ୍ତି ପାଉଛନ୍ତି ॥
ଧାତା ବୋଲନ୍ତି ତଳାର୍ଦ୍ଧେ ନାହିଁ ମୋର ଦୋଷ
ଧର୍ମ ମାର୍ଗ ଛାଡ଼ିଲେ ରେ ବେଗେ ଯାଅ ନାଶ ॥
ଥୋକାଏକ ଲୋକ ପୁଣି ଅଛନ୍ତି ଏମନ୍ତ ।
ପରଧନ ପରଦାରେ ଦେଇଥାନ୍ତି ଚିତ୍ତ ॥
ଜାଲ୍‌ମତେ ମାରନ୍ତି କେ ବିଷ ଦେଇକରି ।
ପ୍ରତ୍ୟହ କେ ପରଦ୍ରବ୍ୟ ନିଅନ୍ତି ଚୋରି କରି ॥
ନିନ୍ଦା ବଚନ କେହୁ ସବୁବେଳେ କହି ।
ଖଟୁଆପଣ କରି କେ ସର୍ବଦା ବଞ୍ଚଇ ॥
କେହି ପରଲୋକ ଚିନ୍ତା ନ ଦେଖେ ନୟନେ ।
ନିଜର ସୁଖ ସ୍ୱଚ୍ଛନ୍ଦ ଭାବେ ସବୁଦିନେ ॥
ମନେ କାହାଠାରେ କେହି ହିଂସାଭାବ ବହି ।
କାହାର ଘରେ କେ ଦିଏ ଅନଳ ଲଗାଇ ॥
କେହି ମତ୍ତ ଗର୍ବ ପଣେ ପାପକୁ ନ ମଣି ।
ତୃଷାରେ ଗୋରୁଏ ପିଉଥିଲେ ଯାଇ ପାଣି ॥
ତାକୁ ଘଉଡ଼ାଇ ଦିଏ ଅତି ଆନନ୍ଦରେ ।
ତୃଷାର୍ତ୍ତି ହୋଇଣ ଗୋରୁ ଯାଏ ନିରାଶରେ ॥
ତାହାର ପାତକ କେହୁ ଅନ୍ତ କରି ପାରେ ।
ମୁଁ କିସ କହିବି ଜାଣେ ଜନ୍ତୁ ଅଧିକାରୀ ॥
ଯେବଣ ଲୋକର ଦ୍ୱାରେ ଅତିଥ ପ୍ରବେଶ ।
ନ ଦେଲେ ନ କହେ ଯାଏ ହୋଇ ସେ ନିରାଶ ॥
କେଉଁ ଲୋକ ଆଶା ଦେଇ ନିରାଶ କରଇ ।
ଆଜି କାଲି କହି ତାକୁ ବହୁତ ଭଣ୍ଡଇ ॥
କେବଣ ଲୋକ ପରକୁ ବିଶ୍ୱାସ ଦେଖାଇ ।
ସର୍ବସ୍ୱ ହରଇ ତାର କପଟରେ ନେଇ ॥
କେ ଋଣ ନେଇ ମାଗିଲେ ସାହୁକୁ ମାରଇ ।
କେ ପୁତ୍ର ତା ବୃଦ୍ଧ ପିତା ମାତା ନ ପୋଷଇ ॥
ବ୍ରାହ୍ମଣ ସ୍ତ୍ରୀଙ୍କ କେହି କରଇ ରମଣ
ସାଧୁଜନଙ୍କୁ ନିନ୍ଦଇ କେଉଁ ମୂଢ଼ଜନ ॥
ବିଷ୍ଣୁଭକତଙ୍କୁ କେହି କରଇ ନିରାଶ ।
ଠାଟ୍ଟା କରୁଥାଏ ତାଙ୍କୁ ହୋଇ ହସ ହସ ॥
କେଉଁ ଲୋକମାନେ ଯାଦେ ବ୍ରହ୍ମହତ୍ୟା କରି
ନିର୍ଦ୍ଦୋଷୀ ଜୀବଙ୍କୁ କେହି ଅକାରଣେ ମାରି
କେଉଁ ଲୋକମାନେ ସ୍ତ୍ରୀ ବାଳକ ସଂହାରି ।
ଗୋବଧ କରଇ କେହି ପାପ ନ ବିଚାରି ॥
ପୋଷିବାର ଜୀବ କେହି କରେ ପ୍ରାଣ ନାଶ ।
ଭୋଜନ ଦ୍ରବ୍ୟରେ କେହି ଦିଅଇଟି ବିଷ ॥
କେ କାହାର କରିଥାନ୍ତି ଯେଉଁ ଉପକାର ।
ପ୍ରତ୍ୟୁପକାର ସମୟେ ଭୁଲେ ଯାନ୍ତି ସ୍ଥିର ॥
କେ କାହାକୁ ଅନ୍ନବସ୍ତ୍ର ଦେଇକରି ପୋଷେ ।
ସେ ତାହାର ନାଶ ପାଇଁ ରଜନୀ ଦିବସେ ॥
କେ ଭୂତ ବେତାଳ ମାନ ସାଧନ କରିଣ ।
ତାହାର ବଳେ ହରେ ସେ ପରର ସର୍ବସ୍ୱ ॥
ଜଳଘାଟେ ବସି କେହି ମୀନଙ୍କୁ ସଂହାରେ ।
ବଳକୁ ଦେଖାଇ କେହି ସଜ୍ଜନ ମାରେ ॥
ଆହାର ଦେଖାଇ କେହି ଜନ୍ତୁଙ୍କୁ ମାରଇ ।
ପରଲୋକ ପ୍ରାଣ କେହି ଗୁପତେ ହରଇ ॥
ଜନ୍ତାରେ ଆହାର ଦେଇ କେ ଜୀବ ମାରଇ ।
ଦୋଷ ଥାଉଁ ଥାଉଁ କେହି ନିୟମ କରଇ ॥
ଦାନ ଦେଇକରି ତାକୁ ହରେ କେହି ପୁଣି ।
ବାଟରୁ ବୃକ୍ଷମାନଙ୍କୁ ପକାଏ କେ ହାଣି ॥
ବଟ ପିପ୍ପଳକୁ କେହି କରଇ ବିନାଶ ।
ଧର୍ମକୁ ନିନ୍ଦା କରଇ କେବଣ ପୁରୁଷ ॥
ବୃଦ୍ଧକାଳରେ ନ ପୋଷେ କେ ପିତା ଜନନୀ
ଅନ୍ତର ହୋଇଣ ଯାଏ ଘରଯାକୁ ଘେନି ॥
ବହୁତ ଗୋଧନ କେହି ରଖେ ଲୋଭ କରି ।
ଅବହେଳା କରିବାରୁ କଷ୍ଟେ ଯାନ୍ତି ମରି ॥
ଠେଙ୍ଗାଲେଉଟେ ଭେଣ୍ଡାଗୋରୁ ବିକଇ ହାଟରେ
ବ୍ୟାଧିମନ୍ତ ବୃଦ୍ଧଗୋରୁ ଯୋଚେ ଲଙ୍ଗଳରେ ॥
ଯେଉଁ ଗୋରୁ ବୃଦ୍ଧ ହୋଇ ଉଠି ନ ପାରଇ ।
ତାହାକୁ ଯେ ନ ପୋଷଇ ଖାଦ୍ୟ ପାଣି ଦେଇ ।
ବୋଲଇ ଏହାକୁ ଆଉ ଦେଲେ କିସ ହେବ ।
ମାସ ପକ୍ଷକରେ ଏତ ନିଶ୍ଚେ ମରିଯିବ ॥

ଏପରି ଯେ ପ୍ରାଣୀ କରେ ସେହି ରୋଗୀ ହୋଇ
ନ ମରି ଜୀଇଣ କଷ୍ଟେ ଗୃହେ ପଡ଼ିଥାଇ ॥
ଯେତେ ଯେତେ ମହୌଷଧି କରଇ ଭକ୍ଷଣ ।
କେବେ ଭଲ ନ ହୁଅଇ ଭୋଗଇ କଷଣ ॥
ଆପଣା କର୍ମକର୍ମିକୁ ମୂଢ଼ ନ ବିଚାରି ।
ବିଧାତାଙ୍କୁ ନିନ୍ଦାକରେ ବାର ବାର କରି ॥
ନିନ୍ଦାରୁ ଦୋଷ ହୋଇଲା ଅପାରୁ ଅପାର ।
ଏହି ପରକାରେ ସେହି ହୁଏ ନାରଖାର ॥
ତାହାର ପୂର୍ବ ପାତକ ବ୍ୟାଧିରୂପ ହୋଇ ।
ସେ ବ୍ୟାଧି ତାକୁ ମାରଇ କାଳବେଳ ପାଇ ॥
ଏ ଯେତେ ଚରିତ୍ର ମୁହିଁ କହିଲଇଁ ତୋତେ ।
ବିଧାତା ଏ ସବୁ କହିଛନ୍ତି ବେଦମତେ ॥
ଜାଣି ଶୁଣି ପ୍ରାଣିମାନେ ପାଉଛନ୍ତି ଦୁଃଖ ।
କେବେହେଁ ସେମାନଙ୍କୁ ଯେ ନ ମିଳଇ ସୁଖ ॥
ସୁମନ କହିଲେ ଆହେ ଚଇତନ ଶୁଣ ।
ଯେତେକ ପାତକ ମୋତେ କହିଲ ଆପଣ ॥
ଏତେ ଅକର୍ମ କରନ୍ତି ଯେଉଁ ଯେଉଁ ଜନ ।
ତାହାଙ୍କର ହୁଅଇତ ବହୁ ଧନ ଜନ ॥
ଥୋକାଏ ଲୋକ ଅଛନ୍ତି ସଂସାର ଭିତରେ ।
ପାପ ଆଚାର ନାହିଁଟି ତାହାଙ୍କ ମନରେ ॥
ଷଡ଼ସ୍ନାନ ପୁଣ୍ୟମାସ ମାନଙ୍କେ କରନ୍ତି ।
ଏକାଦଶୀ ବ୍ରତକୁ ସେ କେବେ ନ ଛାଡ଼ନ୍ତି ॥
ବିଷ୍ଣୁର ଚରିତ୍ର ଯହିଁ ହୁଅଇ ବଖାଣ ।
ତହିଁକି ସେମାନେ ଦେଇଥାଆନ୍ତି ଶ୍ରବଣ ॥
ଜୀବରେ ଦୟା ତାଙ୍କର ମନଟି ନିର୍ମଳ ।
କରନ୍ତି ପ୍ରଶଂସା ସେମାନଙ୍କୁ ଜନକୁଳ ॥
ଅତିଥ ଅଭ୍ୟାଗତ ଯେ ବୈଷ୍ଣବ ବ୍ରାହ୍ମଣ ।
ଦେଖିଲେ ସେବା କରନ୍ତି ତାହାଙ୍କ ଚରଣ ॥
ଏମନ୍ତ ଲୋକ କିପାଇଁ ବ୍ୟାଧିମନ୍ତ ହୋଇ ।
ତଦପରେ ତାକୁ କିପାଁ ଅନ୍ନ ନ ମିଳଇ ॥
ଏହିକଥାଟି ଅଟଇ କେମନ୍ତ ବିଧାନ ।
ସନ୍ତୁଷ୍ଟ ଚିତ୍ତରେ କହ ତୃପ୍ତ ହେଉ ମନ ॥
ସଂଶୟ ଫିଟାଇ ଏହା କହିଦିଅ ମୋତେ ।
ତୁମ୍ଭର ମୁଖୁ ଶୁଣିଲେ ଯିବଇଁ ପରତେ ॥
କହୁଛନ୍ତି ଚଇତନ ଶୁଣ ହେ ସୁମନ ।
ଯାହା ପୁଛାକଲୁ ମୋତେ କହିବା ତା ମର୍ମ ॥
ଜନ୍ମହେଲେ ନିଶ୍ଚେ ମୃତ୍ୟୁ ମଲେ ଜନ୍ମହୋଇ
ବିଧାତାର ଘଟସୂତ୍ର ଏମନ୍ତ ଅଟଇ ॥
ମାୟାର ରଜ୍ଜୁ ମନୁଷ୍ୟ ଗଳାରେ ଲଗାଇ ।
ଆତଯାତ କରନ୍ତି ସେ ନ ଜାଣନ୍ତି କେହି ॥
ସାତଜନ୍ମଠାରେ କରେ ଯେତେ ପାପ ପୁଣ୍ୟ ।
ରଖିଥାଏ ବିଧାତା ତା କରି ଭିନ୍ନ ଭିନ୍ନ ॥
ପାପ ପୁଣ୍ୟ ଦୁଇକି ସେ ବୁଝେ ସମକରି ।
କେ ଊଣା ଅଧିକ ହେଲେ ତାହାକୁ ବିଚାରି ॥
ପାପ ପୁଣ୍ୟ ଯେବେ ମନ ହୋଇବଟି ସମ ।
ସେହି ଲୋକମାନଙ୍କର ନୁହେ ହୀନକର୍ମ ॥
ବହୁତର ଭଣ୍ଡାର ସେ ପାରେ ଭୋଗକରି ।
କିବା ପାତକ ବହୁତ ଥାଏ ଯେବେ କରି ॥
ତେଣୁକରି ସେହି ପ୍ରାଣୀ ହୁଏ ହୀନକର୍ମୀ ।
ସୁସ୍ଥ ହୋଇ ତାକୁ ଦିନେ ନ ମିଳଇ ଅନ୍ନ ॥
ଗତ ଜନ୍ମେ ଯେବେ ସେହି ପୁଣ୍ୟ କରିଥାଇ ।
ସୁଖୀ ହୋଇ ଏ ଜନ୍ମରେ ଭୋଗ ସେ କରଇ ॥
ପାପରୁ ପୁଣ୍ୟ ଯେବେ ନ ହୁଅଇ ବହୁତ ।
ସେ ଲୋକକୁ ବଇକୁଣ୍ଠ ହୁଏ ପରାପତ ॥
ଇହଜନ୍ମରେ ପାତକ କରିଥାଏ ଯେତେ ।
ଆଗତ ଜନ୍ମରେ ତାହା ହୁଏ ପରାପତେ ॥
ଏହିରୂପେ ଆରେ ମନ ଦଇବ ଘଟଣା ।
କଲାକର୍ମ କେତେବେଳେ ନୁହଇ ମେଣ୍ଟଣା ॥
ତୁ ବୋଇଲୁ ଜନ୍ମକାଳୁ ଯାର ପାପ ନାହିଁ ।
ସେ କିପାଇଁ ବ୍ୟାଧିମନ୍ତ ହୋଇଣ ମରଇ ॥
ପୂର୍ବଜନ୍ମରେ ତାହାର କେଉଁ ପାପ ଥିଲା ।
ତେଣୁକରି ଏ ଜନ୍ମରେ ବ୍ୟାଧିମନ୍ତ ହେଲା ॥
ଏ ଜନ୍ମ ସୁକୃତ ତାର ରହିଲା ପଛକୁ ।
ପୁଣି ଭୋଗ କରିବ ସେ ଆଗତ ଜନ୍ମକୁ ॥
ଥୋକେ ଲୋକ ଅଛନ୍ତି ଏ ସଂସାରଭିତରେ ।
ଧର୍ମ ବୋଲି ନ ଜାଣନ୍ତି ଆପଣା ମନରେ ॥
ତାହାଙ୍କର ଧନ ଜନ ଅଛଇ ବହୁତ ।
ଭିକାରିଏ ତା ଦୁଆରୁ ଫେରନ୍ତି ସତତ ॥
ଭ୍ରମରେ ସେ ରାମନାମ ନ ବୋଲଇ ତୁଣ୍ଡେ ।
ସର୍ବଦା ଧନ ଚିନ୍ତାରେ ବୁଲେ ସେ ପାଷଣ୍ଡେ ॥
ଧରମ କଥା ଶୁଣିଲେ ତହୁଁ ଯାଏ ଉଠି ।
ପାଷାଣ୍ଡମାନଙ୍କ ସଙ୍ଗେ କରେ ଯାଇଁ ଗୋଷ୍ଠି

ଏହି କଥାଟି ଅଛଇ କେମନ୍ତ ବିଧାନ ।
ସଂଶୟ ଛେଦି କହିବା ଶୁଣ ଆରେ ମନ ॥
ପୂର୍ବର କର୍ମାକର୍ମ ନ ଜାଣଇ ସେହି ।
ମର୍ତ୍ତ୍ୟରେ ଜନ୍ମି ଅଜ୍ଞାନେ ପାଶୋରି ଅଛଇ ॥
ପୂର୍ବ ଜନ୍ମେ ସେବି ଅଛି ଅତିଥି ବହୁତ ।
ଆବର କରିଛି ଦାନ ପୁଣ୍ୟ ଅପ୍ରମିତ ॥
ତେଣୁ ଏ ଜନ୍ମଟି ଚଳେ ତାର ସୁଖ ପଣେ ।
କିନ୍ତୁ ଏ ଜନ୍ମଟି ତାର ଗଲା ଅକାରଣେ ॥
ଏବେ ଯେବେ ଅଗତିକୁ ପୁଣ୍ୟ କରିଥାନ୍ତା ।
ଆର ଜନ୍ମରେ ତାହାକୁ ଅଧିକ ମିଳନ୍ତା ॥
ଶୁଣ ମନ ଧର୍ମ ଧନ ହୁଅଇ ସଞ୍ଚିତ ।
ସେତେବେ ତାକୁ ବଇକୁଣ୍ଠ ହୁଅଇ ପ୍ରାପତ ॥
ଶୁଣ ମନ ହେତୁ କରି ଧର୍ମ ଏକା ସତ ।
ଧର୍ମରେ ଧରଣୀ ଜାଣ ଅଛେ ଏ ଜଗତ ॥
ଧର୍ମ ଅଧର୍ମ ଯେ ପାପ ପୁଣ୍ୟ ଏହି ସ୍ଥିର ।
ସ୍ୱର୍ଗ ନର୍କ ଧାତା ଏଥି ଅଛଇ ବିସ୍ତର ॥
ଦୟା ଧର୍ମକୁ ଆଶ୍ରୟ କରଇ ଯେଉଁ ନର ।
ଦେହାନ୍ତେ ସେ ଲୋକ ଯାଇଁ ବସଇ ସ୍ୱର୍ଗପୁର ॥
ସୁବାସ ଚନ୍ଦନ ଆଉ ବସ୍ତ୍ର ଅମଳାନ ।
ପାରିଜାତ ପୁଷ୍ପଗଣେ ହୋଇଣ ମଣ୍ଡନ ॥
ନନ୍ଦନରେ ରହିଇ ସେ ସୁଧାପାନ କରି ।
ପୁଣ୍ୟବନ୍ତ ପ୍ରାଣୀକି ଯେ ମିଳଇ ଏପରି ॥
ଅଧର୍ମ ପାପ ଆଶ୍ରୟ କରଇ ଯେଉଁ ନର ।
ତାହାକୁ ବହୁତ ଦଣ୍ଡ ଦିଏ ନାଶକର ॥
ଦୂତଙ୍କୁ ବୋଲଇ ସେଟୁ ଏ ପାପିକି ନିଅ ।
ରୌରବ ନର୍କରେ ଏହାକୁ ବନ୍ଧନ ପକାଅ ॥
ଆଜ୍ଞା ପରମାଣେ ସେହି ଯମର ଚରଇ ।
ସେ ନର୍କକୁଣ୍ଡରେ ତାକୁ ପକାନ୍ତି ସତ୍ୱର ।
ପ୍ରେତପିଣ୍ଡରେ ଭରଣ ବହୁ ଦଣ୍ଡ ଦିଅନ୍ତି ।
ଖୁର ନଖ ଚୁରୁଣୀ ଘେନି ଚକ୍ଷୁକୁ ଖୋଳନ୍ତି ॥
ତାହାର ଦେହକୁ କାଟି କରି ଖଣ୍ଡ ଖଣ୍ଡ ।
ବିବିଧ ପ୍ରକାରେ ତାକୁ ଦେଉଥାନ୍ତି ଦଣ୍ଡ ॥
ଧର୍ମଥିଲା ପ୍ରାଣୀମାନେ ଇହ ପର ଜିଣି ।
ତାହା ଉପରେ ସନ୍ତୁଷ୍ଟ ଥାନ୍ତି ଚକ୍ରପାଣି ॥
ଶ୍ରୀମନ୍ତ ପୁରୁଷ ତାର ଅବଗୁଣ ନାହିଁ ।
ମରୁଠି ସେ ଲୋକ ପୂଜା ଉତ୍ତମରେ ପାଇ ॥

ଏହି କଥା ହେତୁ କରି ମନେ ରଖ ମନ ।
ଶ୍ରୀକୃଷ୍ଣଙ୍କ ବିନୁ ଗତି ଅନ୍ୟେ ନାହିଁ ଜାଣ ॥
ତୁ ଯେ ପୁଚ୍ଛାକଲୁ ମନ ଅନ୍ଧ ଖୋଞ୍ଚା ଜନ ।
ଦରିଦ୍ର ଭିକ୍ଷୁକ ଯେହୁ ନ କହେ ବଚନ ॥
କାଳ ଆଦି ଗର୍ବେ ଯେତେ ପାପ କରିଥାନ୍ତି ।
ସେ ଦୋଷରେ ପ୍ରାଣୀମାନେ ଏ ଦଶା ହୁଅନ୍ତି ॥
ଅନ୍ଧ କାଲ ଗୁଙ୍ଗା ଖୋଞ୍ଚା ଏହିପରି ଜନ ।
ଏମାନେ ଭୋଗୁଅଛନ୍ତି ପୂର୍ବ ପାପମାନ ॥
ସେମାନେ ଶାପ କରିଣ ଅଛନ୍ତି ବହୁତ ।
ସେହେତୁ ଦଣ୍ଡ ଭୋଗନ୍ତି ଏ ଜନ୍ମେ ଏମନ୍ତ ॥
ଜଗତ ପିତା ବ୍ରହ୍ମାଙ୍କ ବାକ୍ୟ ଦୂର କରି ।
ଅଗମ୍ୟପଥେ ଗମନ କରି ନର ନାରୀ ॥
ତେଣୁ ନାନା ଦୁଃଖରେ ସେ ହୁଅନ୍ତି କାତରେଣି ।
ଅକର୍ମକୁ ସେହିମାନେ କର୍ମ ପ୍ରାୟ ମଣି ॥
ଦୁଃଖଭୋଗି ଧର୍ମକୁ ସେ ନିନ୍ଦା କରୁଥାନ୍ତି ।
ପୂର୍ବ ଅର୍ଜିତ କର୍ମ ସେ ପାଉଥାନ୍ତି ଶାସ୍ତି ॥
ସୁଜନ ଜନମାନେ ଯେ ଭଲକର୍ମ କରି ।
ଏ ଭବସାଗରୁ ସୁଖେ ଯାଉଛନ୍ତି ତରି ॥
ଶୁଣିଣ ସୁମନଙ୍କର ଆନନ୍ଦିତ ଚିତ୍ତ ।
କହଇ ମାଧବ ଏହା ସୁର ପାଧୁପଥ ॥



ମାନସିକ ପୂଜା ।

ଏଥୁଅନନ୍ତରେ ପୁଣି ମନ ନୃପମଣି ।
ଚଇତନ ପାଦେ ପଡ଼ି ପୁଚ୍ଛେ ପୁଣ ପୁଣି ॥
ଆହେ ଚଇତନ ତୁମ୍ଭ କୃପା ଅନୁଗ୍ରହେ ।
ଥୋକେ ଚରିତ୍ର ଶୁଣିଲି ପୂରୁବର ଭାଗ୍ୟେ ॥
କିରୂପେ ଏ ସଂସାରରୁ ହୋଇବି ମୁଁ ପାର ।
କିରୂପେ ଭଜିବି ମୁହିଁ ପ୍ରଭୁଙ୍କ ପୟର ॥
ହରିଙ୍କ ଦୟା କିରୂପେ ହୋଇବ ଯେ ମୋତେ ।
ଚୈତନ୍ୟ ବୋଇଲେ ମନ ଶୁଣ ଏକଚିତ୍ତେ ॥
ଏ ଜୀବ ପିଣ୍ଡରୁ ଯେବେ ହୋଇବ ଅନ୍ତର ।
ତେତେବେଳେ ଦିଶିବ ଯେ ନାନା ଭୟଙ୍କର ॥
ଆପଣାର କଲାକର୍ମ ମୂର୍ତ୍ତିମନ୍ତ ହୋଇ ।
ଜୀବନ୍ତେ ଯେତେକ ଜୀବ ମାରିଥାଇ ସେହି ॥
ପ୍ରାଣ ଯିବାବେଳରେ ସେ ହୋଇ ପରବେଶ ।
ବକ୍ରବଦନ ବଡ଼ ଭୟଙ୍କର ବେଶ ॥

କୁକୁର ଶୃଗାଳ ଆଉ ଗୃଧ୍ର କାକରୂପେ ।
ଆବର ବ୍ୟାଘ୍ର ଭଲ୍ଲୁକ ମାର୍ଜାର ସ୍ୱରୂପେ ॥
ଏହିପରି ନାନା ଜୀବ ଭୟଙ୍କର ବେଶେ ।
ପ୍ରାଣ ନେବାବେଳରେ ସେ ବେଢନ୍ତି ଚଉପାଶେ
ନାଗସର୍ପମାନେ ଆସି ଫଣାକୁ ବିସ୍ତାରି ।
ତାହାକୁ ଭୟ ଦେଖାନ୍ତି ଗର୍ଜି ନାଦକରି ॥
ମରିବାର ଲୋକକୁ ଯେ ଦର୍ଶନ ସମସ୍ତ ।
ଭୟରେ ସେ ପ୍ରାଣୀ ବଡ ହୁଅଇ ତରସ୍ତ ॥
ରାମନାମ କହିବାକୁ ଭାଗ୍ୟ ତାର କାହିଁ ।
ସହସ୍ର ଗନ୍ଧର୍ବ ତାକୁ ଜଗିଥାନ୍ତି ତହିଁ ॥
ରାମ ଗୋବିନ୍ଦ ଯେବେ ତୁ ବୋଲିବୁ ତୋ ତୁଣ୍ଡେ
ସମସ୍ତେ ଏ ଲୋହଦଣ୍ଡ ପିଟିବୁଁ ତୋ ମୁଣ୍ଡେ ॥
ହାଡ ପଞ୍ଜରା କରିବୁଁ ତୋର ଖଣ୍ଡ ଖଣ୍ଡ ।
ଅନେକ ପ୍ରକାରେ ତୋତେ ଦେବୁଁ ଆମ୍ଭେ ଦଣ୍ଡ
ଦେବତାଙ୍କର ମାୟା ଯେ ଅଟଇ ଏମନ୍ତ ।
ରାମନାମ ଧଇଲେ ଏ ଯିବ ସ୍ୱର୍ଗପଥ ॥
ଯମର ତାଠାରେ କେବେ ନାହିଁ ଅଧିକାର
ନିଶ୍ଚିନ୍ତରେ ଆସିବ ସେ ଏହି ସ୍ୱର୍ଗପୁର ॥
ଏତେ ମହାପାତକିର ନ ବାହାରିବ ମୁଖକୁ ।
ଏହି ବିଚାରେ ଗନ୍ଧର୍ବେ ଜଗନ୍ତି ତାହାକୁ ॥
ଦେବତାମାନଙ୍କର ଯେ ଏମନ୍ତ କପଟ ।
ପିଣ୍ଡେ ପ୍ରାଣ ଥାଉଁ ସେହୁଁ ହୁଏ ଛଟପଟ ॥
ତେଣୁକରି ସେହି ଲୋକ ମହାଭୟ ପାଇ ।
ଘଡ଼ିକ ଘଡ଼ି ସେ ଜୀବ ମୋହ ଯାଉଥାଇ ॥
କାହାକୁ କସ କହିବ ନ ଫିଟଇ ତୁଣ୍ଡ ।
ତାପ ଅନଳ ତାହାର ଦହୁଥାଇ ପିଣ୍ଡ ॥
ବେଢ଼ି ବସିଥାନ୍ତି ତାକୁ ସର୍ବ ବନ୍ଧୁ ଜନ ।
ତା ଭୟ ବିନାଶନ କେ ନୁହନ୍ତି ଭଞ୍ଜନ ॥
ପିଣ୍ଡ ଛାଡ଼ି ଜୀବ ଯିବାପାଇଁ କରେ ଲୋଭ ।
ବାହାରୁଥାଏ ଏଯଣି ଦେବେ ଏ ପ୍ରାଭବ ॥
ଏହିପରି ସମୟରେ ଯମର ଚଗର ।
ତା ପିଣ୍ଡରୁ ପ୍ରାଣ ବେଗେ କରନ୍ତି ବାହାର ॥
ଯାତନାପଥରେ ତାକୁ ନିଅନ୍ତି ଘୋଷାରି ।
ନାନାବିଧ ପ୍ରକାରରେ ଦଣ୍ଡମାନ ଦେଇ ॥
ଯେତେ ପାପ ପୂର୍ବ ଜନ୍ମେ ଥାଏ ସେ କରିଣ ।
ସେତେ ପାପ ଏ ଜନମେ ଭୋଗଇ ସେ ଜାଣ ॥

କର୍ମ ଅନୁସାରେ ପୁଣି ଜନମ ହୁଅଇ ।
ଧର୍ମ ଶାସ୍ତ୍ର ପୁରାଣରେ ଯେମନ୍ତ ଯୋଗାଇ ॥
ସେହି ଅନୁରୂପେ ତାକୁ ମିଳଇ ସେ ଭୋଗ ।
ବିଧାତା ଘଟାଇ ତାହା କରଇ ସଂଯୋଗ ॥
ହେ ମନ ଜୀବରେ ଦୟା ନାମେ ଆଶ୍ରାକର ।
ନିଶ୍ଚିନ୍ତେ ତରିଣ ଯିବୁ ଏ ଭବସାଗର ॥
ଅନେକ ପ୍ରକାରେ ତୋତେ କହୁଅଛୁ ମୁହିଁ ।
ମୋର କଥା କର ମନ ଏକଚିତ୍ତ ହୋଇ ॥
ପରକୁ ମନେ ପ୍ରମାଦ ଚିନ୍ତେ ଯେଉଁ ଜନ ।
ସେହି ଲୋକ ବିଷ୍ଣୁ ଦ୍ରୋହୀ ଭଲକରି ଜାଣ ॥
ପରମ ଗତିକି ସେହି ଲଭି ନ ପାରଇ ।
ତାହାଠାରୁ ମହାପାପୀ ସଂସାରରେ ନାହିଁ ॥
ଜଳ ଅନ୍ନ ବସ୍ତ୍ରଦାନ ମହାବ୍ରତମାନ ।
ଯେ ଏହା କରନ୍ତି ତାଙ୍କ ଜନ୍ମ ଅଟେ ଧନ୍ୟ ॥
ଇହ ପରଲୋକରେ ସେ ଗତି ମୁକ୍ତି ପାଇ ।
ଜୀବନ୍ତେ ସାଧୁ ସାଧୁ ଯେ ମଲେ ସ୍ୱର୍ଗେ ଯାଇ ॥
ନାମର ଆଶ୍ରୟ ନେଲେ ପାପ ଯାଏ ନାଶ ।
ଜୀବ ଅନ୍ତେ ଯାଏ ସେହି ବିଷ୍ଣୁଙ୍କର ପାଶ ॥
ତାହାକୁ ଲାଗଇ ନାହିଁ ଭବବନ୍ଧ ମାୟା ।
ସବୁବେଳେ ଶୁଦ୍ଧମନ୍ତ ଅଟେ ତାର କାୟା ॥
ତେଣୁ ତାହାକୁ ପରମ ଗତି ଲାଭହୋଏ ।
ସଂସାରର ମାୟାମୋହ ମଣେ ତୁଚ୍ଛପ୍ରାୟେ ॥
ତୁ ଏବେ ସୁମନ ଏହା ହେତୁକରି ଶୁଣ ।
ହୃଦପଦ୍ମ ମଧ୍ୟରେ ଯେ ଚିନ୍ତ ନାରାୟଣ ॥
ଗର୍ବକୁ ଛାଡ଼ି ଶ୍ରୀକୃଷ୍ଣ ପାଦେ ରଖ ମନ ।
ବୃଥାର୍ଥେ ସମୟ ତୁହି ନ କର କ୍ଷେପଣ ॥
ଘର ବାହାରେ ଅଛନ୍ତି ସବୁଠାରେ ହରି ।
ଏକଥା ତୋହର ମନେ ନ ଘେନୁ ବିସ୍ମରି ॥
ପାରିଲେ ଉଜାଣି ତୁହି ରଖ ଯେ ପବନ ।
ତେବେ ନିର୍ମଳ ହୋଇବ ତୋର ଆତ୍ମାଞ୍ଜନ ॥
ଚଞ୍ଚଳ ଚିତ୍ତକୁ ତୋର ରଖ ସ୍ଥିରକରି ।
ତତ୍ତ୍ୱକୁ ତୋ ନବଦ୍ୱାରେ କରାଅ ହୁଆଶ ॥
ଷଡ଼ଅରିକି ଆବର ପଚିଶ ପ୍ରକୃତି ।
ସମକଲେ ଛାଡ଼ିବ ତୋ ତ୍ରିଗୁଣ ବୃତ୍ତି ॥
ଜାଗ୍ରତେ ଜାଗିବୁ ଯେବେ କେବେ ନ ଶୋଇ ଯାଇ,
ନିର୍ମଳ ହୋଇଣ ତାର ଜ୍ୟୋତି ପ୍ରକାଶଇ ॥

ତ୍ରିବେଣୀ ଶିଖରୁ ଦେଖ ଝରୁଅଛି ନୀର ।
ସେହି ସ୍ଥାନରେ ରହିଣ ଅଛନ୍ତି ଶଙ୍କର ॥
ନିଶ୍ଚଳ ଆସନେ ଯେବେ ଚିତ୍ତକୁ ରଖିବୁ ।
ତ୍ରିକୂଟ ଉପରେ ତେବେ ଯାଇ ତୁ ଦେଖିବୁ ॥
ନ ଜାଣୁଛ ତୁହି ଶୂନ୍ୟପୁରରେ ଅଛୁ ରହି ।
ପ୍ରାଣ ଯିବାବେଳେ ତୋତେ ନ ରଖିବେ କେହି ॥
ନିମିଷ ମାତ୍ରକେ ତୁହି ପଡ଼ିଯିବୁ ଚଳି ।
ଚେତନବେଳେ ତୋତେ କେହି ରଖିବେ ସମ୍ଭାଳି ॥
ଦୃଢ଼ମନ କରି ଏକା ଭଜ ନାରାୟଣ ।
ଚଞ୍ଚଳ ମନକୁ ତୋର ଦୂର କର ପୁଣ ॥
ବିଷୟ ବଳେକୁ ତୁହି ସୁଧା ବେଳ ଖାଉ ।
ନିଶ୍ଚୟ ତଳପଡ଼ିବୁ ଦିନେ ଘୁଞ୍ଚି ଘୁଞ୍ଚି ॥
ଅନାମ ନାମକୁ ତୁହି ନିତ୍ୟରଥରେ ଧର ।
ଅଜପା ଜପିଲେ ତୁହି ହୋଇବୁ ଅଜାମର ॥
ତୋତେ ତୁହି ଦେଖିଲ ନା ଆନ କେହି ନାହିଁ ।
ପାଷାଣ୍ଡ ତର୍କକଥାକୁ ତେଜିଦେ ଯେ ପାଇ ॥
ବୃଥାକଥାକୁ ତେଜିଲେ ନିଶ୍ଚେ ହେବୁ ନାଶ ।
ସଂସାରେ ଦେହ ଧରିବା ପ୍ରୟୋଜନ କିସ ॥
ଦହନ ହୋଇଣ ଯିବ ତୋହର ଶରୀର ।
ତୋ ଆତ୍ମା ରହିବ ଯାଇଁ ଶମନ ନଗର ॥
ଚିତ୍ତକୁ ସ୍ଥିରକରଣ ଦଣ୍ଡେ କର ଲକ୍ଷ୍ୟ ।
ତହିଁକି ଆଉ କିଛି ନ ଥିବ ତୋର ଭୟ ॥
ଦେଖ ତୁ ପରମବ୍ରହ୍ମ ଅଟନ୍ତି ଅନାଦି ।
ସଖୀଶତଷଡ଼ଭଙ୍ଗ ଅଟନ୍ତି ସେ ଭେଦ ॥
ଏହି ପୁଙ୍ଖାବନ୍ଧ ସିନା ସତପ୍ରାୟେ ଧେନା ।
ଗୋଲୋକ ମଣ୍ଡଳରେ ଯେ ଶୁଭୁଅଛି ଧ୍ୱନି ॥
ବଜାଅନ୍ତି ବେଣୁନାଦ ବଟମୂଳେ ରହି ।
ବସାକରି ରହିଛନ୍ତି ବଙ୍କନାଳେ ଯାଇଁ ॥
ଭ୍ରମର ଗୁମ୍ଫାକୁ ତୁହି ଲକ୍ଷ୍ୟକରି ଦେଖ ।
ଭକତି ହୋଇଲେ ତାଙ୍କୁ ଦେଖିବୁ ପ୍ରତ୍ୟକ୍ଷ ॥
ମନକୁ ନିଶ୍ଚଳ କରି ବ୍ରହ୍ମରନ୍ଧ୍ରେ ଧରି ।
ମଣିମୟ ମଣ୍ଡପରେ ଦେଖ ତୁ ମୁରାରି ॥
ପିଣ୍ଡେ ପ୍ରାଣ ଆଣି ଥାଉଁ କର ଏହି ଭାବ ।
ଦେଖ ସେ ସ୍ଥାନରେ ଜଗି ରହିଛନ୍ତି ଶିବ ॥
ରାସମଣ୍ଡପ ଉପରେ ଦେଖିବୁ ତୁ ଯାଇଁ ।
ରାଧିକା ପ୍ରସନ୍ନା ହେଲେ ସର୍ବ ସିଦ୍ଧ ହୋଇ ॥

ନିଶ୍ଚଳେ ଏବେ ତୁ ପଦ୍ମପାଦେ କର ଧ୍ୟାନ ।
ତେବେ ସିନା ଲଭିବୁ ତୁ ବୈକୁଣ୍ଠ ଭୁବନ ॥
ବ୍ରହ୍ମାଦି ଶଙ୍କର ଯେଉଁ ପାଦପଦ୍ମ ଧ୍ୟାନ୍ତି ।
ଅଜାମର ହୋଇଛନ୍ତି କଳ୍ପ କଳ୍ପ ରହି ॥
ସେ ପ୍ରଭୁଙ୍କ ଶ୍ରୀଚରଣେ କରିଲେ ଭକତି ।
ତେବେ ଯେ ବିନାଶ ହେବ ଭବଭୟ ଭ୍ରାନ୍ତି ॥
ଏମନ୍ତେ ଉଦୟ ହେବ ବ୍ରହ୍ମଜ୍ଞାନ ସନ୍ଧି ।
ଯୋଗିଜନମାନେ ଏହା ପାରନ୍ତି ଯେ ଭେଦି ॥
ଅନ୍ୟକୁ ଦୃଶ୍ୟ କାହିଁବା ହୋଇବ ସେ ଜ୍ଞାନ ।
ଯାହାକୁ ଦୟା କରନ୍ତି ପ୍ରଭୁ ଭଗବାନ ॥
ସେହି ସେ ଜାଣିପାରିବ ଏହା ଭେଦାଭେଦ ।
ଆନକୁ ଦୃଶ୍ୟ ନୁହଇ ସେହି ପଦ୍ମପାଦ ॥
ଏବେ ତୁ ସୁମନ ହରିପାଦେ ଲକ୍ଷ୍ୟ କର ।
ଲକ୍ଷ୍ୟକଲେ ମେରୁପର ହେବୁ ଅଜାମର ॥
ପଛକୁ ନ ଥିବ ଆଉ ତୋର ମୃତ୍ୟୁଭୀତି ।
କି କରିପାରିବ ତୋର ସ୍ଥିର ଜଳ୍ପମତି ॥
ଶୁଣିକରି କରଯୋଡ଼ି କହଇ ସୁମନ ।
ଏଥିକୁ ମୁହିଁ କପରି ହୋଇବି ଭାଜନ ॥
ତୁମ୍ଭେ ଯା କହିଲ ତାହା ଅଗମ୍ୟ ଅଟଇ ।
ଏଥିମଧ୍ୟେ ଗମିବାକୁ ଶକ୍ତି ମୋର ନାହିଁ ॥
ମୁ ଯେବେ ଏହି କଥାକୁ କରିବି ସାହସ ।
ଦୁଇଆଡ଼ୁ ନୋହି ମୁହିଁ ମଧ୍ୟେ ଯିବି ନାଶ ॥
ନ ଜାଣି ସାଧିବି କେଉଁପରି ବ୍ରହ୍ମଜ୍ଞାନ ।
ଚିରକାଳ ବସି ଯାହା ନ ଜାଣେ ଈଶାନ ॥
ମାୟାଧାମେ ରହି ମନ ଭ୍ରମେ ଅହର୍ନିଶି ।
ମୁଁ କାହିଁପାରିବି ବ୍ରହ୍ମଜ୍ଞାନ ମଧ୍ୟେ ପଶି ॥
ଅଳପ ସୂକ୍ଷ୍ମରେ ସିନା ଯାହା ପାର କରି ।
ଯେମନ୍ତେ ତରିବି ଏହି ଭବସିନ୍ଧୁବାରି ॥
ସେ ପାଦକମଳେ ରହେ ଯୋଗିଙ୍କର ଚିତ୍ତ ।
ତହିଁରେ ମନ ମୋର ନ ପଶେ କଦାଚିତ ॥
ପୁତ୍ର ଦାର କୁଟୁମ୍ବଙ୍କୁ ଆବୋରି ମୁଁ ଥିବି ।
ସଂସାରର ବିଧାନ ମୁଁ କେମନ୍ତେ ଛାଡ଼ିବି ॥
ଯାବତ ଗୃହବିଷୟ ସବୁ କରୁଥିବି ।
ଗୃହଧର୍ମେ ଥାଇଣ ମୁଁ ଯେମନ୍ତେ ତରିବି ॥
ଏଥିକୁ ବିଚାର କରି ବୁଦ୍ଧି ମୋତେ କହ ।
ଯେମନ୍ତେ ଉଦ୍ଧାର ହେବ ମୋର ପାପ ଦେହ ॥

ଏହି କଥା ମୋର ଆଗେ କହ ହେ ଚୈତନ ।
ଶୁଣି ଚୈତନ କହିଲେ ଶୁଣ ହେ ସୁମନ ॥
ଯାହା ପୁଚ୍ଛିଲୁ କହିବା ତହିଁର ବେଭାର ।
ଶ୍ରବଣରେ ପାନକର ତୁହି ସୁଧାଧାର ॥
ସଂସାରରୁ ତରିବାର ଯେମନ୍ତ ବିଧାନ ।
ତୋ ଆଗେ କହିବା ତାହା ଶୁଣ ଦେଇ ମନ ॥
ସଦା ପର ଅହଂକାରେ ଥାଏ ଯାର ମନ ।
ସେ କାହିଁ ଦେଖି ପାରିବ ପ୍ରଭୁ ଭଗବାନ ॥
ଗୋବିନ୍ଦର ନାମଗୋଷ୍ଠ ମୁଖେ ଯେବେ କହି ।
ତେବେ ସେ ଭବ ତାପର ବାଧା ନ ଲାଗଇ ॥
ସକଳ ଜୀବରେ ମନ କର ସମବୁଦ୍ଧି ।
ତେବେ ତୁହି ତରିପିବୁ ଏ ଭବଜଳଧି ॥
ସାଧୁ ଏ ମିଳିବେ ଯେବେ ତୋର କର୍ମବଳେ ।
ଦଣ୍ଡେ ନିମିଷେ ବସିବୁ ପାଇଁ ତାଙ୍କ ମେଳେ ॥
ସଂସାରିକ ସର୍ବକର୍ମ କରୁଥିବୁ ଠୁଳ ।
ବିଷ୍ଣୁଙ୍କ ପ୍ରୀତ୍ୟର୍ଥେ ତାହା ଅର୍ପିବୁ ସକଳ ॥
ବିଷ୍ଣୁଙ୍କର ଯେତେ ଦ୍ରବ୍ୟ ସବୁ ଠୁଳକରି ।
ମାନସିକ ମତେ ପୂଜା କରିବୁ ଶ୍ରୀହରି ॥
ଧ୍ୟାନମାର୍ଗେ ତୁହି ଯେବେ ଦେଖିବୁ ଶ୍ରୀମୁଖ ।
ଆଉ କି ରହିବ ତୋର ଭବତାପ ଦୁଃଖ ॥
ସଂସାର ବିଷୟେ ଥାଇ ତୁହି ଏହା କର ।
ତେବେ ସେ ଭବସିନ୍ଧୁକୁ ସୁଖେ ହେବୁ ପାର ॥
ମନ କହିଲା କହିଲ ତୁମ୍ଭେ ଅସମ୍ଭବ ।
କିପରି ମିଳିବ ମୋତେ ବିଷ୍ଣୁ ପୂଜା ଦ୍ରବ୍ୟ ॥
କୁଟୁମ୍ବର ଜଞ୍ଜାଳେ ମୁଁ ନାନାଦୁଃଖେ ପଡ଼ି ।
ଆୟୁ ଯାଉଁ ହୋଇବ ଯେ ବେଳ ଦଶଗଡ଼ି ॥
କେଉଁଦିନ ମୋର ଥିବ ନ ଥିବ ବା ଅନ୍ନ ।
ସେହିଦିନ ମନ ମୋର ହୋଇଯିବ ଭ୍ରମ ॥
ବିଷ୍ଣୁଙ୍କ ପୂଜାକୁ ମୁହିଁ କାହିଁ ଯୋଗ୍ୟ ହେବି ।
କେତେବେଳେ ଗନ୍ଧପୁଷ୍ପ ତୋଳି ମୁଁ ଆଣିବି ॥
କେମନ୍ତ ପ୍ରକାରେ ଅବା ବିଷ୍ଣୁଙ୍କୁ ମୁଁ ଦେବି ।
ଏତେକ ଦ୍ରବ୍ୟ ଅବା ମୁଁ କିପରି ପାଇବି ॥
ଘରେ ନାହିଁତ ମୋହର କଡ଼ାଏ କଉଡ଼ି ।
କିପରି ଆଣିବି ମୁହିଁ ଏତେ ଦ୍ରବ୍ୟ ଲୋଡ଼ି ॥
ଭୋକିଲୋକ ଯେବେ ଅନ୍ନ ମାଗିବେ ସକାଳେ ।
ବୋଲିବା ପଳା ନା ତୁହି ନାହିଁ ଏତେବେଳେ ॥

ଏମନ୍ତ କହି ତାହାକୁ କଲେକ ନାରାଣ ।
କେଉଁମତେ ପାଇବି ମୁଁ କୃଷ୍ଣଲୀଳା ରସ ॥
ଶୁଣି ଚଇତନ ବୋଲେ ଶୁଣ ହେ ସୁମନ ।
ପଦେ ପଦେ କରି କହି ଦେବା ତା ବିଧାନ ॥
ତୁହି ବୋଲୁଅଛୁ ମୋତେ ନ ମିଳିବ ଦ୍ରବ୍ୟ ।
କେଉଁ ପ୍ରକାରେ ପୂଜିବି ଶିଶୁ ବାସୁଦେବ ॥
ରାତି ଦିନରେ ଷାଠିଏ ଦଣ୍ଡ ଯେ ହୁଅଇ ।
ଏଥିରୁ ଦଣ୍ଡେକ ଯେବେ ପାରୁ ନାମ ଧ୍ୟାଇ ॥
ଯେବେ ଧନ ନାହିଁ ତୋର ନ ଲାଗେ କଉଡ଼ି ।
ଭାବରେ ସବୁ ପଦାର୍ଥ ଆଣ କିନା ଲୋଡ଼ି ॥
ବାଞ୍ଛାରେ ତୁ ନାନା ପୁଷ୍ପମାନ କର ଠୁଳ ।
ମନେ ମନେ ସେ ସବୁକୁ ଗୁନ୍ଥ ଧଣ୍ଡାମାଳ ॥
ଜାଇ ଯୂଇ କେତକୀ ଯେ ତୁଳସୀ ଦୟଣା ।
ମାଳତୀ ବକୁଳ ନାଗେଶ୍ୱର ଛୁରିଅନା ॥
ମଲ୍ଲୀ କୁରୁବେଲୀ ଚମ୍ପା କିଆ କନିୟର ।
ତଗର ତରାଟ କୁନ୍ଦ ମାଧବୀ ମନ୍ଦାର ॥
ଏମନ୍ତ ନାନାବର୍ଣ୍ଣର ପୁଷ୍ପ ମାଳ ସ୍ମରି ।
ଧ୍ୟାନରେ ଗୁନ୍ଥିବୁ ତୁହି ଅତି ଯତ୍ନ କରି ॥
ଆମ୍ବ ପଣସ କଦଳୀ ବେଲ ନଟିକାଳ ।
ଟଭା ନାରଙ୍ଗ କମଳା ଲେମ୍ବୁ କନ୍ଦମୂଳ ॥
କ୍ଷୀରି ଖେଚଡ଼ ଆବର ଅଧାମ ଶାକର ।
ଖଣ୍ଡ ଖଜା ଛେନାପଣା ଦଧି ଦୁଗ୍ଧସର ॥
ଏହିପରି ନାନାଦ୍ରବ୍ୟ ମନେ ଠୁଳକରି ।
ବିଷ୍ଣୁଙ୍କୁ ସ୍ନାନ କରାଇ ଦେବୁ ଗଙ୍ଗାବାରି ॥
ସରୁ ଝିନବାସରେ ଶ୍ରୀ ଅଙ୍ଗ ପୋଛିଦେବୁ ।
ଅମଳାନ ବାସ ଘେନି ତାଙ୍କୁ ପିନ୍ଧାଇବୁ ॥
ଦେବାଙ୍ଗ ପାଟଦୋଷଡ଼ା ଅଙ୍ଗରେ ଖଞ୍ଜିବୁ ।
ସୁବର୍ଣ୍ଣର ଆସନରେ ନେଇ ବସାଇବୁ ॥
ନାନାବର୍ଣ୍ଣର କୁସୁମ ଯେତେ ଧଣ୍ଡାମାଳ ।
ସବୁ ଲମ୍ବାଇବୁ ନେଇ ପ୍ରଭୁ ବକ୍ଷସ୍ଥଳ ॥
ନାନା ରତ୍ନ ଅଳଙ୍କାରେ ମଣ୍ଡଣି କରିବୁ ।
ଚନ୍ଦନ କର୍ପୂର ତାଙ୍କ ଅଙ୍ଗେ ବୋଳିଦେବୁ ॥
ସଂକଳ୍ପ ପଦାର୍ଥ ସବୁ ଠୁଳକରି ଆଣି ।
ଧ୍ୟାନେ ନୈବେଦ୍ୟ କରିବୁ ଶଙ୍ଖ ଚକ୍ରପାଣି ॥
ନୈବେଦ୍ୟ ମନ୍ତ୍ର ଯାହା ଗୁରୁ ଥିବେ କହି ।
ସେହି ମହାମନ୍ତ୍ରେ ତାଙ୍କୁ ନଇବେଦ୍ୟ ଦେଇ ॥

ସୁନ୍ଦର ପଦ୍ମ ମସ୍ତକରେ ଯୋଡ଼ ବେଣୀ କର ।
ସୁଣିହ୍ନି ମାଦେ ଗନ୍ଧରୁ ମନ କର ସ୍ଥିର ॥
ଏମନ୍ତ କହନ୍ତେ ଦେଖିଲୁ ତାଙ୍କ ପଦ୍ମମୁଖ ।
ଆଉ ତୋ ଶରୀରରେ ରହି ନ ପାରିବ କି ଦୁଃଖ ॥
ଇହଲୋକେ କରିଥିଲୁ ତୁହି ଯେତେ ପାପ ।
ପ୍ରଥମ ଦିବସେ ସବୁ ହୋଇଯିବ ଲୋପ ॥
ସାଂସାରିକ ଘୋରତାପ ହେବ ତୋ ବିନାଶ ।
ରବି ଉଦେ ହେଲେ ଯେସନେ ଅନ୍ଧକାର ନାଶ ॥
ଦିନକେ କ୍ଷଣମିଷେ ଯେବେ ପାରୁ ଏହା କରି ।
ତେବେ ତୁ ନିସ୍ତରି ଯିବୁ ଭବସିନ୍ଧୁ ବାରି ॥
ସଂସାରରେ ଥାଇ ଏହା କରେ ଯେଉଁ ଜନ ।
କେ ଅନ୍ତ କରି ପାରିବ ତାହାର ଯେ ପୁଣ୍ୟ ॥
ସେହିଲୋକ ସଂସାରରୁ ନିସ୍ତରି ଯିବ ତରି ।
ପଦ୍ମପତ୍ରେ ଯେସନେକ ନ ଲାଗଇ ବାରି ॥
ମାନସିକ ପୂଜା ଏହୁ ଋଷିଙ୍କର ମତ ।
ନିତ୍ୟ ଧ୍ୟାନେ ଏପରି ସେ ପୂଜନ୍ତି ଅଚ୍ୟୁତ ॥
ବିଶ୍ୱାସରେ ସର୍ବଦ୍ରବ୍ୟ କରିଥାନ୍ତି ଠୁଳ ।
ନେତ୍ରକୁ ବୁଜି ପୂଜନ୍ତି ଧ୍ୟାନେ ଆଦିମୂଳ ॥
ଏହିପରି ଭବଗ୍ରାହୀ ବଶ ଯେ ହୁଅନ୍ତି ।
ଏ ଭବସାଗରୁ ତାକୁ ହରି ନିଅନ୍ତି ॥
ତୁହି ଏବେ ସୁମନ ହୋ ଏହିରୂପେ କର ।
ଯେବେ ନ ଛାଡ଼ିବୁ ତୁହି ସଂସାର ବେଭାର ॥
କେବଳ ଦେବା ଦସ୍ୟରେ ହୃଦମାତ୍ର ଥିବ ।
ଭବଜଳେ ଥିଲେ ତୋର ଅନିଷ୍ଟ ନୋହିବ ॥
ଶୁଣିଣ ସନ୍ତୁଷ୍ଟ ହେଲା ସୁମନରାଜନ ।
ଚୈତନ ପାଦେ ପଡ଼ି ହୋଇଲା କାରୁଣ୍ୟ ॥
ତୁମ୍ଭର ମୁଖୁ ଶୁଣିଲି ବିଷ୍ଣୁ ପୂଜାରୀତି ।
ପବିତ୍ର ହୋଇଲା ଆତ୍ମା ଲଭିବ ମୁକତି ॥
ମନଠାରୁ ଏହା ଶୁଣି ହରଷ ଚୈତନ୍ୟ ।
କହଇ ମାଧବ କୃଷ୍ଣପାଦେ ରଖି ମନ ॥



ବିରୂପାକ୍ଷ ଶବରର ଉପାଖ୍ୟାନ ।

ପୁନଶ୍ଚ ମନରାଜନ ଚୈତନକୁ ଚାହିଁ ।
କହିଲା ଆହେ ପଣ୍ଡିତ କଥାଏ ପୁଛଇ ॥
ଯେଉଁ ଭକ୍ତିକଥା ମୋତେ ବୁଝାଇ କହିଲ ।
ତହିଁରେ ମୋହର ମନର ସଂଶୟ ନାଶିଲ ॥
ଏବେ ଏଥିରୁ ଉତ୍ତମ କଥା ଥିଲେ କହ ।
ଶୁଣିଣ ସନ୍ତୁଷ୍ଟ ହେଉ ମୋର ମନ ଦେହ ॥
ରହିଛନ୍ତି ଏ ଦେହରେ ପାଞ୍ଚଗୋଟି ମନ ।
ସେମାନଙ୍କର ପ୍ରକୃତି ଅଟେ ଭିନ୍ନ ଭିନ୍ନ ॥
ଯେତେବେଳେ ବସି ମୁହିଁ ପୂଜୁଥିବି ହରି ।
ତାହାଠାରେ ସମସ୍ତ ଦ୍ରବ୍ୟ ଥିବ ଠୁଳ କରି ॥
ବିଷ୍ଣୁ ପୂଜା କରୁଥିବି ହୋଇ ଏକଚିତ୍ତ ।
ତେତେବେଳେ ମନସବୁ ହେଲେ ବିଚଳିତ ॥
ତତକ୍ଷଣେ ଭାଜିଯିବ ସକଳ ସମ୍ଭାର ।
ଆଉ ତ ଦୃଶ୍ୟ ନୋହିବେ ମୋତେ ଚକ୍ରଧର ॥
ସେହି ସମୟରେ ମୁହିଁ କରିବି କିସ ।
ଏହା ଭଲ ଭଲ ମୋର ଉଡ଼ୁଛି ସାହସ ॥
ପାଞ୍ଚମନ ପରା ଯେ ପ୍ରକୃତି ଅଛନ୍ତି ।
ସେମାନଙ୍କୁ ଦମନ କରିବା ମୋର ନାହିଁ ଶକ୍ତି ॥
ଏମାନେତ ଯେ ଯାହାର ଅବଗୁଣ ରୀତି ।
ସେ ସମସ୍ତେ ଦେଖାଇଲେ ହେବ ଅଭକତି ॥
ଏ ମୋ ଆତ୍ମାକୁ କରିବେ ବୋଲି ସେ ବିନାଶ ।
ନାନାମାର୍ଗେ ଚଳିବାକୁ କରିବେ ମୁହିଁ ଆଶ ॥
ଏହାଙ୍କ ଯେଉଁ ସ୍ୱଭାବ କରୁଥିବେ ଏହି ।
କିରୂପେ ଭକ୍ତି କରିଣ ତରିବଇଁ ମୁହିଁ ॥
ଯାର ପ୍ରତିକାର ମୋତେ କହ ଚଇତନ ।
ତେବେ ଯେ ସନ୍ତୁଷ୍ଟ ହେବ ଏ ମୋହର ମନ ॥
ଶୁଣି ଚୈତନ୍ୟ ବୋଇଲେ ହସ ହସ ହୋଇ ।
ଯେତେପ୍ରକାରେ କହିଲୁ ବୋଲୁ ନ ପାରଇ ॥
ଆଉ କେଉଁ ପରକାରେ ବୁଝାଇବି ତୋତେ ।
ଏବେ ଯା କହୁଛୁ ମନ ଶୁଣ ଏକଚିତ୍ତେ ॥
ଅଟନ୍ତି ଏ ବ୍ରହ୍ମାଣ୍ଡର ନାଥ ନାରାୟଣ ।
ତାଙ୍କର ନାମକୁ ସଦା କର ଉଚ୍ଚାରଣ ॥
ଜଗନ୍ନାଥ ଜଗଦାତ୍ମା ମୁକୁନ୍ଦ ମାଧବ ।
ନରହରି ଦଇତ୍ୟାରି କୃଷ୍ଣ ବାସୁଦେବ ॥
ପରମାନନ୍ଦ ଗୋବିନ୍ଦ ଶ୍ରୀ ମଧୁସୂଦନ ।
ନାରାୟଣ ଚକ୍ରପାଣି ଅଚ୍ୟୁତ ଶ୍ରୀରାମ ॥
ପଦ୍ମନାଭ ହୃଷୀକେଶ ପ୍ରଭୁ ଜନାର୍ଦ୍ଦନ ।
ଏହାଙ୍କୁ ସଦା ହୃଦରେ କର ତୁ ଭଜନ ॥
ଏକାବେଳେ ନ ପାରିଲେ କ୍ରମେ କ୍ରମେ କର ।
ମନଇଚ୍ଛା କରୁଥାଅ ସଂସାର ବେଭାର ॥

ପ୍ରତ୍ୟକ୍ଷେ ଏମନ୍ତ କହିଲେ ମନ ନର ବର ।
ଏ ଭବସାଗରୁ ସୁଖେ ହୋଇଯିବୁ ପାର ॥
ଜ୍ଞାନରେ ହେଉ ଅଥବା ଅଜ୍ଞାନରେ ହେଉ ।
ରାମନାମ ଯେ ଧରଇ ତରିଯାଏ ସେହୁ ॥
ସୁମନ କହିଲା କହ ମୋ ଆଗେ ବିସ୍ତାରି ।
ରାମନାମ ଧରି ଭବୁ କେ ଯାଇଛି ତରି ॥
ଏହା କେଉଁଠାରେ ତୁମ୍ଭେ ଦେଖି ଶୁଣିଅଛ ।
ସତ କରି କହିବ ଯେ ନ କହିବ ମିଛ ॥
ଭଣ୍ଡି କହିଲେ ପାଇବ ବହୁ ଅପରାଧ ।
ସ୍ଫୁଟ କହିଣ ମୋର ପାପହରି ଛେଦ ॥
ଚଇତନ ବୋଇଲେ ଯେ ଶୁଣ ହେ ସୁମନ ।
କହିଦେବା ତୋତେ ଏବେ ତହିଁର ବିଧାନ ॥
ବିରୂପାକ୍ଷ ନାମେ ଥିଲା ଏକଇ ଶବର ।
ଜନ୍ତୁମାରି କୁଟୁମ୍ବଙ୍କୁ ନିତ ପୋଷେ ତାର ॥
ଏଥିରୁ ଆନ ବୃତ୍ତି ସେ ନ ଜାଣଇ ଆଉ ।
ଜାଲ ଜନ୍ତା ଅଠାକାଠି ଯୋଗେ ଧରେ ସେହୁ ॥
ସକାଳୁ ସନ୍ଧ୍ୟାଯାଏ ସେ ମାରୁଥାଏ ଜୀବ ।
ତିଳାର୍ଦ୍ଧେ ନ ଥାଏ ତାର ମନେ ଦୟାଭାବ ॥
ରାମନାମକୁ ଶୁଣିବ ସେହୁ କାହୁଁ କର୍ଣ୍ଣେ ।
ସକାଳୁ ସନ୍ଧ୍ୟାପର୍ଯ୍ୟନ୍ତ ବୁଲୁଥାଏ ବନେ ॥
ଧନୁ ନାରାଚକୁ ଧରି ସେହୁ ବୁଲୁଥାଇ ।
କ୍ଷୁଧା କଲେ ବନେ ମାଂସ ପୋଡ଼ିଣ ଭକ୍ଷଇ ॥
ଯେତେ ଜୀବ ତା ଦୃଷ୍ଟିରେ ପଡ଼େ ମାରି ଆଣେ ।
ଗୃହିଁ ବସିଥାଏ ତେଣେ ତାହାର ଘରଣୀ ॥
ଗୃହେ ଆସି ସେ ଜୀବଙ୍କୁ ସମର୍ପି ଦିଅଇ ।
ଏମନ୍ତ ପ୍ରକାରେ ସବୁଦିନେ ସେ ବଞ୍ଚଇ ॥
କେତେଦିନ ଗତେ ସେହୁ ଅଠାକାଠି ଧରି ।
ବନମଧ୍ୟରେ ପଶିଲା ପକ୍ଷୀଜୀବ ମାରି ॥
ଦୈବେ ସେହିଦିନ କାର ପୋଷା ଶୁଆଗୋଟି ।
ପଳାଇଣ ଆସିଥିଲା ବନ୍ଧନରୁ ଫିଟି ॥
ବୃକ୍ଷ ଉପରେ ନିଶ୍ଚିନ୍ତ ହୋଇ ବସିଥିଲା ।
ହରେ ରାମ ଗୋବିନ୍ଦ ତା ମୁଖେ କହୁଥିଲା ॥
ଦେଖିଣ ଶବର ଲତା ଉହାଡ଼କୁ ଗଲା ।
ଅଠାକାଠି ଲଗାଇଣ ଶୁଆକୁ ଧଇଲା ॥
ତତକ୍ଷଣେ ପଡ଼ିଲା ସେ ପକ୍ଷୀ ତଳେ ଲେଟି ।
ଯାଇଣ ଶବର ତାକୁ ଧଇଲା ସାଉଁଟି ॥

ମାରିବ ବୋଲିଣ ତାର ଚାପୁଥିଲା ତଣ୍ଟି ।
ବିକଳରେ ଶୁଆପକ୍ଷୀ ରାମନାମ ରଟି ॥
ଶୁଣିଣ ଶବର ବଡ଼ ଚକିତ ହୋଇଲା ।
ବିଚାରଇ ଏ କଥାତ ବିପରୀତ ହେଲା ॥
ପ୍ରତିଦିନ ମୁଁ ମାରଇ ନାନା ଜୀବଗଣ ।
କେହିତ ରାମ ବୋଲିବା ନ ଶୁଣିଲି କର୍ଣ୍ଣ ॥
ପ୍ରାଣ ନ ଯାଉଣୁ ପକ୍ଷୀ ବୋଇଲାକ ରାମ ।
ରାମ ବୋଲି ଯା କହିଲା ଏ କେବଣ ଧର୍ମ ॥
ଏ ପଦର ଅର୍ଥ ମୁହିଁ କିଛି ନ ଜାଣିଲି ।
ଏହାଲାଗି ଆଜିଦିନ ବୃଥା ଗଞ୍ଜି ହେଲି ॥
ଯାହା ହେଉ ଏ କଥାରେ ସଂଶୟ ରହିଲା ।
ଏହା ଭାବି ନ ମାରିଣ ଶୁଆକୁ ଛାଡ଼ିଲା ॥
ରାମନାମ ଗୋଟି ମୋର ହୃଦେ ରହିଥିବ ।
ଏଠାରୁ ଗଲେ ଘରକୁ ଲୋକଙ୍କୁ ପୁଚ୍ଛିବ ॥
ଏ ଉତ୍ତାରୁ ଆଉ କେତେ ଜୀବଙ୍କ ପରାଣ ।
ସଂହାରି ତା ପତ୍ନୀପାଶେ କରି ସମର୍ପଣ ॥
ଶବରପଲ୍ଲିରେ ସେହି ପ୍ରବେଶିଲା ଯାଇଁ ।
କହିଲା ଅପୂର୍ବ କଥା ଶୁଣ ଆହେ ଭାଇ ॥
ଶୁଆପକ୍ଷୀ ଗୋଟିଏ ଯେ ଆଜ ମୁ ଧଇଲି ।
ରାମନାମ ବୋଲନ୍ତେ ମୁ ତାକୁ ଛାଡ଼ିଦେଲି ॥
ତୁମ୍ଭେମାନେ ଜାଣି କହ ଏଥିର ସନ୍ଦେଶ ।
ରାମନାମ ବୋଲିଣ ଯେ ଅଛି ପୁଣ କିସ ॥
ଗ୍ରାମରଲୋକେ ବୋଇଲେ ଶୁଣ ଆହେ ଭାଇ ।
ଏଥିର ଉତ୍ତର ଦେବା ଶକ୍ତି ଆମ୍ଭ ନାହିଁ ॥
ଶବର ବୋଇଲା ଏହା ଯେବେ କେ କହନ୍ତା ।
ଏଥିପାଇଁ ମୋର ଘୋର ଚିନ୍ତା ନାଶଯାନ୍ତା ॥
ପୁନଶ୍ଚ ବୋଇଲେ ସର୍ବେ ଭାବୁଅଛ କିସ ।
ଅନ୍ୟ ଗ୍ରାମେ ଯାଇଁ ଏହା ବୁଝିକରି ଆସ ॥
ଏପରି ଶୁଣି ଶବର ଭାବେ ପର୍ଯ୍ୟମତ ।
ଦାରୁଣ ବିଧାତା କିପାଁ ଦେଲା ଏ ବିପତ୍ତି ॥
ଜନ୍ତୁ ମାରିବାର କଥା ମୋର କେଣେ ଗଲା ।
ରାମନାମ ପଦ ମୋତେ ଏତେ ଦୁଃଖ ଦେଲା ॥
ମରିବି କି ତରିବି କି କିଛି ନ ଜାଣିଲି ।
ରାମନାମ ପୁଚ୍ଛି ପୁଚ୍ଛି ଖେଦରେ ମୁ ମଲି ॥
କୁଟୁମ୍ବର ଚିନ୍ତା ଆଉ କିଏ ବୁଝୁଅଛି ।
ମୁହିଁ ମରୁଛି ଲୋକଙ୍କୁ ଏହା ପୁଚ୍ଛି ପୁଚ୍ଛି ॥

ଏବେ ବୋଲି ଶବରର ଉଦବେଗ ନାଶ ।
ଶୂଦ୍ରଗ୍ରାମକୁ ସେଠାରୁ ଚଳିଲ ତ୍ୱରିତ ॥
ପାରେଶୋରବ ବୋଲି ଘୋଷୁଅଛି ରାମ ରାମ ।
ଯାଇଣ ପ୍ରବେଶ ହେଲ ଯହିଁ ଶୂଦ୍ରଗ୍ରାମ ॥
ସେଠାର ଲୋକମାନଙ୍କୁ ପଗ୍ଚରିଲ ଯାଇଁ ।
ଶୁଆପକ୍ଷୀ ରାମ ବୋଲି ବୋଇଲ କପାଇଁ ॥
ରାମ ରାମ ବୋଲିବାର କେବଣ ଚରିତ ।
ଜାଣିଥିଲେ କହ ମୋତେ ଏଥିର ବୃତ୍ତାନ୍ତ ॥
ସେ ବୋଇଲ ଥିଲା କାର ପୋଷାଶୁଆଟିଏ ।
ତେଣୁ ରାମନାମକୁ ସେ ମୁଖେ ଅଛି ରଟି ॥
ଶବର ବୋଇଲା ସେହୁ ରାମ ବୋଲିବାର ।
ଶ୍ରବଣେ ଶୁଣିଲେ ତାହା ପାର କି ଅପାର ॥
ସେଲୋକେ ବୋଇଲେ ଏହା ଭଲ ଅଟେ ତୋତେ
ତାହାଙ୍କର ବଚନକୁ ନ ଗଲ ପରତେ ॥
ଅନ୍ୟ ଅନ୍ୟ ଗ୍ରାମରେ ସେ ପଗ୍ଚରିଲ ଯାଇଁ ।
ପକ୍ଷୀ ରାମ ରାମ ବୋଲି ବୋଇଲ କପାଇଁ ॥
ସେମାନେ ବୋଇଲେ ଭଲ କିଛି ନ ବିଗ୍ଚର ।
ରାମନାମ ପଦ ଯେବେ ଶୁଣିଲୁ କର୍ଣ୍ଣର ॥
ଏହି କଥା ଗୋଟି ତୋତେ ଅତି ଶୁଭ ହେଲ ।
ପ୍ରତେ ନ କର ଶବର ବାହୁଡ଼ି ଅଇଲ ॥
ଏହିପରି ମନେ ମନେ ଭାବେ ପ୍ରତିଦିନ ।
କାହାର ଯୋଗେ ନୋହିଲ ସନ୍ଦେହ ଭଞ୍ଜନ ॥
ଶୟନ ଭୋଜନେ ସଦା ଶୁଣୁଥାଏ ସେହି ।
ପକ୍ଷୀ ରାମ ରାମ ବୋଲି ବୋଇଲ କପାଇଁ ॥
ଏହିପରି ଭାବୁ ଭାବୁ କେତେଦିନ ଗଲ ।
ଶବରର ମୃତ୍ୟୁକାଳ ପ୍ରବେଶ ହୋଇଲ ॥
ଜାଣି ଯମଦୂତେ ବେଗେ ହୋଇଲେ ପ୍ରବେଶ ।
କରେ ଲୌହଦଣ୍ଡ ଆଉ ଘେନି କାଳପାଶ ॥
ତାକୁ ନେବାପାଇଁ ତହିଁ ହେଲେ ଉପସ୍ଥିତ ।
ଏ ସମୟେ ବିଷ୍ଣୁଦୂତେ ଘେନି ସ୍ୱର୍ଣ୍ଣରଥ ॥
ଉପସ୍ଥିତ ହୁଅନ୍ତେ ଯମଦୂତେ ଭୟ ପାଇ ।
ପଳାଇ ଯାଇ ସେମାନେ ଖଣ୍ଡଦୂରେ ରହି ॥
ବିଷ୍ଣୁଦୂତଙ୍କୁ ବୋଇଲେ ଏମନ୍ତ ବଚନ ।
ଯମପଣ କାଟିଲେ କି ପ୍ରଭୁ ଭଗବାନ ॥
ଏ ଶବର ମହାପାପୀ ଅଟେ ଜୀବଦ୍ରୋହୀ ।
ଏହାକୁ କେମନ୍ତେ ନେବ ରଥରେ ବସାଇ ॥

ଏହାକୁ ନେଇଣ ଆମ୍ଭେ ଦ୍ୟନ୍ତୁ ଦଣ୍ଡ ମଣ୍ଡ ।
ବାନ୍ଧିଣ ପକାନ୍ତୁ ନେଇ ମହା ନର୍କକୁଣ୍ଡ ॥
କଳ୍ପେ ପରିଯନ୍ତେ ସେହି ନର୍କେ ପଡ଼ିଥାନ୍ତା ।
ତହିଁର ଉଦ୍ଧାର ପଛେ ଯା ହେଲେ ହୁଅନ୍ତା ॥
ଏ ପାପୀକି ନେବ ଯେବେ ବଇକୁଣ୍ଠପୁର ।
ଯମର କାହାରେ ଆଉ ହେବ ଅଧିକାର ॥
ପୂର୍ବେ ଯମକୁ କହିଣ ଛନ୍ତି ବାସୁଦେବ ।
ଜୀବଦ୍ରୋହୀ ଲୋକେ ନେଇ ନର୍କେ ପକାଇବ ॥
ବିଶ୍ୱାସଘାତକ ଆଉ ଯେହୁ ଜୀବଦ୍ରୋହୀ ।
ପରର ଧନ କେତେ ଯେ ଆଣଇ ଚୋରାଇ ॥
ସାହୁଠାରୁ ଧନ ନେଇ ନ ଦିଅଇ ଯେହୁ ।
ଧର୍ମ କୀର୍ତ୍ତିମାନ ଭାଙ୍ଗେ ଯେହୁ କହୁଁ କହୁଁ ॥
ପତିବ୍ରତା ନାରୀକି ଯେ କରଇ ରମଣ ।
କୃଷ୍ଣେ ସମର୍ପିଲ ଧନ ଯେ କରେ ହରଣ ॥
ବ୍ରାହ୍ମଣୀ ସ୍ତ୍ରୀରୀଙ୍କୁ ଯେହୁ ରମେ ଇଚ୍ଛାକରି ।
ଦାନ କୀର୍ତ୍ତିମାନ ଯେହୁ ବଳାତ୍କାରେ ହରି ॥
ପରକୁ ପ୍ରମାଦ ଯେହୁ ଚିନ୍ତେ ଅହର୍ନିଶି ।
ସାଧୁଜନଙ୍କୁ ଯେ ନିନ୍ଦା କରୁଥାଏ ବସି ॥
ଗୋ ବ୍ରାହ୍ମଣ ସ୍ତ୍ରୀରୀନ ଯେ ପ୍ରାଣେ ବଧ କରେ ।
ପୋଷିବାର ଜୀବକୁ ଯେ ଭକ୍ଷପାଇଁ ମାରେ ॥
ବିଷ୍ଣୁ ପ୍ରତିମାକୁ ନିନ୍ଦା କରେ ଯେଉଁଜନ
ଭୃତ୍ୟଙ୍କୁ ଅଦୋଷରେ ଯେ ଦିଏ ଦଣ୍ଡମାନ ॥
ଏମାନଙ୍କ ପରେ ହେବ ତୁମ୍ଭ ଅଧିକାର ।
ବାନ୍ଧି ପକାଇବ ନେଇ ତାକୁ ନର୍କ ଘୋର ॥
ବିବିଧ ପରକାରରେ ଦଣ୍ଡମାନ ଦେବ ।
କଳ୍ପେ ପରିଯନ୍ତେ ତାକୁ ନର୍କେ ରଖିଥିବ ॥
ଯେବେ କି ପୂର୍ବର ପୁଣ୍ୟ କିଛି ଥିବ ତାର ।
ତେବେ ନର୍କରୁ ତାହାକୁ କରିବ ଉଦ୍ଧାର ॥
ଏମନ୍ତ ଯମକୁ କହିଥିଲେ ନାରାୟଣ ।
ଏବେ ସେ କଥା ମାନିତ ହୁଏ ଅକାରଣ ॥
ବିଷ୍ଣୁଦୂତେ ବୋଇଲେ ହୋ ଶୁଣ ଯମଗଣ ।
ତୁମ୍ଭେ ଯାହା କହିଲଟି ସେ କଥା ପ୍ରମାଣ ॥
ଏ ଶବର ନ ଜାଣଇ କିଛି ପାପ ପୁଣ୍ୟ ।
କେବଳ ଜୀବ ମାରନ୍ତେ ଗଲା ଯାର ଦିନ ॥
ଏମାନଙ୍କର ଏହିତ ଅଟେ ଜାତିବୃତ୍ତି ।
ଭଲ ମନ୍ଦ ପାପ ପୁଣ୍ୟ କିଛି ନ ଜାଣନ୍ତି ॥

ଶୁଆପକ୍ଷୀ ମୁଖରୁ ଏ ଶୁଣି ରାମନାମ ।
କସ ଏ ବୋଲି ମୁକ୍ତିଲ ପାଇଁ ରାମ ରାମ ॥
ଗ୍ରାମ ଲୋକଙ୍କ କଥାରେ ବିଶ୍ୱାସ ନୋହିଲା ।
ତେଣୁ ସେ ନାମ ଏହାର ହୃଦେ ନୃତ୍ୟ କଲା ॥
ନିତ ଶ୍ରୀ ରାମନାମକୁ ସୁମରିଲା ଏହି ।
ଜନ୍ତୁବଧ ପାପ ଆଉ ଏହା ଦେହେଁ ନାହିଁ ॥
ଆଜଠାରୁ ତୁମ୍ଭେମାନେ ଥାଅ କର୍ଣ୍ଣେ ଶୁଣି ।
ଅଜ୍ଞାନେ ପାପ କରଇ ଯେବଣ ପରାଣୀ ॥
କେଉଁ ପାପ କେଉଁ ପୁଣ୍ୟ କିଛି ନ ଜାଣଇ ।
ସେ ଲୋକ ପଶୁସଙ୍ଗରେ ଗଣନା ହୁଅଇ ॥
ସେହି ଯେବେ ଅଜ୍ଞାନରେ ବୋଲେ ରାମରାମ ।
ସକଳ ପାତକ ତାର ହୋଇବ ଦହନ ॥
ତାଙ୍କଠାରେ ଅଧିକାର ନ କରିବ ତୁମ୍ଭେ ।
ନାରାୟଣ ଶ୍ରୀମୁଖରୁ ଶୁଣିଅଛୁଁ ଆମ୍ଭେ ॥
ଏଥିକୁ ସଂଶୟ ତୁମ୍ଭେ ନ କର ଯେ କେହି ।
ଜନ୍ତ୍ରପତି ପାଶେ ଏହା କହ ବେଗେ ଯାଇ ॥
ଏତେ ବୋଲି ରଥରେ ଯେ ବସାଇଲେ ତାକୁ ।
ଅତଶୀଘ୍ର ଘେନି ଗଲେ ବୈକୁଣ୍ଠପୁରକୁ ॥
ଶୁଣିଲୁ କି ମନରାଜା ନାମର ବୃତ୍ତାନ୍ତ ।
ଅଜ୍ଞାନେ ନାମ ଧଇଲେ ବଇକୁଣ୍ଠ ପ୍ରାପ୍ତ ॥
ଏବେ ତୁହୋ ମନରାଜା ନାମ ଆଶ୍ରେକର ।
ଏ ଭବସାଗରୁ ସୁଖେ ହୋଇଯିବୁ ପାର ॥
ଏହା ଶୁଣି ମନରାଜା ଭାବେ ହେଲା ଭୋଳ ।
ଗୀତରେ କହେ ମାଧବ ଚନ୍ଦ୍ର ଆଦିମୂଳ ॥



ଅନନ୍ୟ ଗୋପାଳର ଦୃଢଭକ୍ତି ।

ପୁଣି ସୁମନ କହଇ ଆହେ ଚଇତନ ।
ଶବରର କଥା ଶୁଣି ହେଲା ଦିବ୍ୟଜ୍ଞାନ ॥
ଆଉ କିଛି କଥା ଥିଲେ କହ ଏହିପରି ।
ତୁମ୍ଭ ମୁଖରୁ ଶୁଣିଲେ ଯିବ ଭବୁ ତରି ॥
ଶୁଣି ଚୈତନ୍ୟ କହିଲେ ଶୁଣ ହେ ସୁମନ ।
ବିଷ୍ଣୁଦାସ ନାମେ ଥିଲା ଏକଇ ବ୍ରାହ୍ମଣ ॥
ବ୍ରହ୍ମଚାରୀ ବେଶରେ ସେ ନାନା ତୀର୍ଥ ଫେରି ।
ବୁଲି ବୁଲି ମିଳିଲା ସେ ଚମ୍ପାବତୀ ପୁରୀ ॥
ସେ ପୁରଲୋକେ ତାହାକୁ ଦେଖିଣ ସନ୍ତୋଷେ ।
ଆଦର ପାଇ ରହିଲା ତହିଁ ବିଷ୍ଣୁଦାସ ॥
ବସା ଦେଇ ତଣ୍ଡୁଳାଦି ସବୁ ସଜାଁ ଦ୍ୟନ୍ତେ ।
ଦାସେ ରହିଲେ କୋଡଏ ଦିବସ ପର୍ଯ୍ୟନ୍ତେ ॥
ତାଙ୍କୁ ସେମାନେ ବୋଇଲେ ଶୁଣ ହେ ବଚନ ।
ଦଶବରଷର ଛନ୍ତି ଦଶୋଟି ନନ୍ଦନ ॥
ଏ ପିଲାଙ୍କ କର୍ଣ୍ଣେ ତୁମ୍ଭେ ମହାମନ୍ତ୍ର ଦିଅ ।
ଅପ୍ରତିଷ୍ଠା ପିଲାଙ୍କୁ ଯେ ପ୍ରତିଷ୍ଠା କରାଅ ॥
ଶୁଣି ସେହି ବ୍ରହ୍ମଚାରୀ ବୋଲନ୍ତି ବଚନ ।
ଅକର୍ତ୍ତବ୍ୟ କଥାକୁ ମୁଁ କରିବି କେସନ ॥
ଶିଷ୍ୟର ଦେହରେ ଯେତେ ପାପମାନ ଥାଇ ।
ସେ ଗୁରୁ ସେହି ପାପର କାରଣୀ ହୁଅଇ ॥
ଗୁରୁର ବଚନ ଶିଷ୍ୟ ହୃଦପଦ୍ମେ ଧରି ।
ଏ ଭବସାଗରୁ ମହାସୁଖେ ଯାଏ ତରି ॥
ଶ୍ରୀଗୁରୁଙ୍କ ଚରଣରେ ଭକ୍ତି ଥାଏ ଯାର ।
ତାଠାରେ ପ୍ରସନ୍ନ ଥାନ୍ତି ପ୍ରଭୁ ଚକ୍ରଧର ॥
ଯେତେବେଳେ ଶିଷ୍ୟ ଗୁରୁ ପାଦତଳେ ପଡ଼େ ।
ତେତେବେଳେ ଶିଷ୍ୟ ସର୍ବ ପାପ ଯାଏ ଛାଡ଼ି ॥
ଗୁରୁ ଉପରେ ସେ ପାପ ହୁଅଇ ପତନ ।
ଯେବେ ସେ ଗୁରୁ ଆଶ୍ରୟ କିଏ ଭଗବାନ ॥
ତେବେ ସେ ଗୁରୁର ଠାରୁ ପାପ ହୋଏ କ୍ଷୟ ।
ନୋହିଲେ ସେ ଗୁରୁ ପଡ଼େ ନରକ ନିଚୟ ॥
ରାମ ନାମ ନ ଧରଇ କେତେ କାଳ ତୁଣ୍ଡେ ।
ମାଳା ତିଳକ କାଟିଣ ବୁଲେ ଦାଣ୍ଡେ ଦାଣ୍ଡେ ॥
ଏହି ପରକାରେ ଯେଉଁ ଗୁରୁ ଶିଷ୍ୟ କରେ ।
ଦେହଅନ୍ତେ ସେ ପଡ଼ଇ ରୌରବ ନର୍କରେ ॥
ଏପରି କଥାକୁ ମୋତେ ଲାଗୁଅଛି ଡର ।
ଶୁଣି ସେ ଲୋକେ ବୋଇଲେ କିଛି ନ ବିଚାର ॥
ତୁମ୍ଭେତ ବ୍ରାହ୍ମଣ ଆଉ ବିଷ୍ଣୁପରାୟଣ ।
ତୁମ୍ଭଠାକୁ ପାପ କିପାଁ ଯିବ ଅକାରଣ ॥
ଅପ୍ରତିଷ୍ଠା ବାଳକଙ୍କୁ ପ୍ରତିଷ୍ଠା କରିବ ।
ଏଥୁ ଅଧିକ ସେ ପୁଣ୍ୟ କାହୁଁବା ପାଇବ ॥
ଶୁଣିଣ ସେ ବ୍ରହ୍ମଚାରୀ ସନମତ କଲେ ।
ସେ ଦଶପିଲାଙ୍କ କର୍ଣ୍ଣେ ମହାମନ୍ତ୍ର ଦେଲେ ॥
ଲଲାଟେ ତିଳକ କଣ୍ଠେ ତୁଳସୀର ମାଳ ।
ଦେଇ ଜ୍ଞାନ ଧ୍ୟାନ କଥା କହିଲେ ସକଳ ॥
ଏ ସମୟେ ସେ ଗ୍ରାମର ଗୋପାଳର ଶିଷ୍ୟ ।
ଲହଡ଼ି ଧରି ମିଳିଲା ଗୁରୁଙ୍କର ପାଶ ॥

ଗୋରୁମାନେ ଯେ ଯାହାର ଗୃହେ ଚଳିଗଲେ ।
ଗୁରୁପାଶେ ସେ ବାଳକ ମିଳିଲା ସନ୍ଧ୍ୟାକାଳେ ॥
ବୋଇଲା ଗୋସାଇଁ ତୁମ୍ଭେ ମୋତେ ମନ୍ତ୍ର ଦିଅ ।
ଏହି ଗ୍ରାମଗୋପାଳର ଅଟେ ମୁହିଁ ପୁଅ ॥
ଶୁଣି ସେହି ବ୍ରହ୍ମଋଷି ବୋଲେ ନାହିଁ ନାହିଁ ।
ତୁ ଗଉଡ଼ ପିଲା ତୋର କେତେ ଜ୍ଞାନ କାହିଁ ॥
ଶୁଣିଣ ସେହି ବାଳକ ଗୃହେ ଚଳିଗଲା ।
ମାତା ପିତା ଆଗେ କାନ୍ଦି ଭୂମିରେ ପଡ଼ିଲା ॥
କାହିଁକି କାନ୍ଦୁଛୁ ବୋଲି ପୁତ୍ରକୁ ପୁଚ୍ଛିଲେ ।
ସେ ବୋଇଲା ଗୁରୁ ମୋତେ ମନ୍ତ୍ର ଯେ ନଦେଲେ
ତତକ୍ଷଣେ ପିତା ତାକୁ ସଙ୍ଗେ ଘେନି ଗଲା ।
ଋଷିରେ ପଦ ଅନେକ ପ୍ରକାରେ କହିଲା ॥
ପାଶେ ବସିଥିବା ଲୋକ ଅନେକ କହିଲେ ।
ଶୁଣିକରି ବ୍ରହ୍ମଋଷି ସନମତ କଲେ ॥
ମାଥେ ତିଳକ ତୁଳସୀମାଳ କଣ୍ଠେ ଦେଇ ।
ଦକ୍ଷିଣ କର୍ଣ୍ଣରେ ତାର ମହାମନ୍ତ୍ର କହି ॥
ଯେତେବେଳେ ଶ୍ରବଣ ଫୁଙ୍କିଲେ ତାହାର ।
ହସିଲା ଗୋପାଳବାଳ ହୋଇ କର କର ॥
ଗୁରୁ ଦେଖିଣ ବୋଇଲେ ଆରେ ମୂର୍ଖ ବାଇ ।
ତେଣୁକରି ତୋତେ ଆମ୍ଭେ ବୋଲୁଥିଲୁଁ ନାହିଁ
ଭର୍ତ୍ସନା କଲେ ତାହାକୁ କ୍ରୁଦ୍ଧ ହୋଇକରି ।
ଏ ସମୟେ ପିଲା ଗଲେ ଯେ ଯାହାର ପୁରୀ ॥
ଗୋପାଳର କର୍ଣ୍ଣେ ଗୁରୁ ଯାହା ଥିଲେ କହି ।
ପାଶୋରିଲା ତା ମନରେ ରହିଲା ଯେ ନାହିଁ ॥
ସବୁ ପିଲା ଗୃହେ ଗଲେ ନ ଗଲା ଯେ ସେହି ।
ବହୁତ ଡାକିଲା ତାର ମାତା ତହିଁ ଯାଇଁ ॥
ନ ଯିବାର ଦେଖିକରି ପିତା ତାର ଗଲା ।
ଦେଖିଲା ପୁଅ ବସିଛି ହୋଇଣ ଏକଲା ॥
ଗୁରୁ ବୋଇଲେ ଏଠାରେ ବସିଛୁ କିପାଇଁ ।
ତୋଠାରେ ଆମ୍ଭର ଆଉ କିଛି କାର୍ଯ୍ୟ ନାହିଁ ॥
ଶୁଣିଣ ସେହି ବାଳକ ଯୋଡ଼ି କରପତ୍ର ।
ବୋଇଲା ଭୁଲିଲି କର୍ଣ୍ଣେ କହିଲ ଯେ ମନ୍ତ୍ର ॥
ଶୁଣି ସେ ଗୁରୁ ବୋଇଲେ ତାକୁ କୋପ ବହି ।
ବୋଇଲେ ତୋ କର୍ଣ୍ଣେ କହିଥିଲି ବାଳ ମୁହିଁ ॥
ବିଶ୍ୱାସେ ସେ ସୂତ ଜାତ ବୋଲେ ବାଳ ବାଳ ।
ବନ ମଧ୍ୟକୁ ସେ ଗଲା ଘେନି ଗୋରୁପଲ ॥

ସେ ବନ ମଧ୍ୟରେ ଗୋରୁ ପାଖେ ଥିଲା ।
ତହିଁରେ ବସିଲା ଯାଇଁ ସେ ଗୋପାଳ ପିଲା ॥
ଆଖି ବୁଜି ବୋଲୁଥାଏ ମୁଖେ ବାଳ ବାଳ ।
ଆପଣା ଜାନୁରେ ନେଇ ମାରେ କରତାଳ ॥
ଏହିପରି ତିନିଦିନ ଅନାହାରେ ତହିଁ ।
ବସନ୍ତେ ଜାଣିଲେ ତାହା ବଇକୁଣ୍ଠ ସାଇଁ ॥
ଶ୍ରୀ ବାଳମୁକୁନ୍ଦ ରୂପେ ବିଜେ ନରହରି ।
ଗଳଦେଶେ ମୋତିମାଳ ଲମ୍ବେ ସପ୍ତସରି ॥
ସୁବାସ କୁସୁମେ ଲମ୍ବେ ଘଣ୍ଟିମାଳମାନ ।
କର୍ପୂର ଚନ୍ଦନ ଶିରୀ ଅଙ୍ଗେ ବିଲେପନ ॥
କଟିରେ ଶୋଭା ଦିଶଇ ତାଙ୍କ ପୀତପଟ ।
ରତ୍ନ କଙ୍କଣ ଶ୍ରୀଭୁଜେ ଝୁଲେ ଝଟ ଝଟ ॥
ଶ୍ୟାମମେଘେ ଯେସନେ ଶୋହେ ବିଜୁଳିର ପ୍ରଭା
ଶରୀର ଦିଶଇ ତାଙ୍କ ତେସନେକ ଆଭା ॥
ସୁବର୍ଣ୍ଣ ନୂପୁର ପାଦେ ବାଜେ ଝମ ଝମ ।
ପିନ୍ଧିଥିବା କଟିଡୋରେ ହୀରା ରତ୍ନ କମ ॥
ଏହିପରି ବେଶେ ବିଜେ କଲେ ଭବଗ୍ରାହୀ ।
ଗୋପାଳସୁତ ପାଶରେ ପ୍ରବେଶିଲେ ଯାଇଁ ।
ଦେଖି ସେ ଗୋପାଳବାଳ ଅତ୍ୟନ୍ତ ହରଷ ।
ବୋଇଲା ତୁମ୍ଭର ନାମ ଅଟଇ କି ସ ॥
ଏଠାକୁ ତୁମ୍ଭର ଘର ଅଟେ କେତେ ଦୂର ।
କେଉଁ ଜାତି ଅଟ ତୁମ୍ଭେ ଏତେକ ସୁନ୍ଦର ॥
ଏ ବନକୁ ଏକା ହୋଇ ଅଇଲ କେମନ୍ତେ ।
ନ ଆଣିଲ କିପାଁ ଆଉ କାହାକୁ ସଙ୍ଗତେ ॥
ଏତେ ଅଳଙ୍କାର ତୁମ୍ଭେ ପିନ୍ଧିଛ ଦେହରେ ।
ନିର୍ଭୟେ ଏକା ଅଇଲ କେଉଁ ପରକାରେ ॥
ସୁଗନ୍ଧ କୁସୁମରେ ଯେ ବାସେ ତୁମ୍ଭ ଦେହ ।
ତୁମ୍ଭ ପିତାଙ୍କର ନାମ ଅଟେ କିସ କହ ॥
ତୁମ୍ଭଙ୍କୁ ଦେଖିଣ ମୋର ପ୍ରମୋଦିତ ମନ ।
କହ କହ ମୋତେ ତୁମ୍ଭେ ସ୍ୱରୂପ ବଚନ ॥
ଶୁଣି କରି ନାରାୟଣ ହସ ହସ ହୋଇ ।
ବୋଇଲେ ଆମ୍ଭେ ଜାତିରେ ଗୋପାଳ ବୋଲାଇ
ନନ୍ଦ ଗଉଡ଼ର ମୁହିଁ ଅଟଇ ଯେ ସୁତ ।
କାହ୍ନୁ ବୋଲି ମୋର ନାମ ଦେଲେ ତାତ ମାତ ॥
ଦାଣ୍ଡର ଲୋକେ ବୋଲନ୍ତି ନନ୍ଦର ନନ୍ଦନ ।
କେହୁ ବୋଲଇ ମୁକୁନ୍ଦ କେହୁ ଭଗବାନ ॥

ଦେଖ କଳା ଅଛଇ ଯେ ମୋର ଦେହଯାକ ।
ତେଣୁ କାଳିଆ ବୋଲନ୍ତି ମୋତେ ଆନେକ ଲୋକ ॥
ବଉଁଶୀ ଗୋଟିଏ ମୁହିଁ ଧରିଥାଏ ହସ୍ତେ ।
ତେଣୁ ବେଣୁଧର ବୋଲି ଡାକନ୍ତି ଯେ ମୋତେ ॥
ଏମନ୍ତେ ନାନାପ୍ରକାରେ ଡାକନ୍ତି ସମସ୍ତେ ।
ସେଥିପାଇଁ କାହା ଛଳ ନ ଧରେ ମୁଁ ଚିତ୍ତେ ॥
ଖେଳ ଖେଳିବାକୁ ଲୋଡ଼େ ସମସର ପିଲା ।
ତେଣୁକରି ବନେ ବନେ ବୁଲଇଁ ଏକଲା ॥
ତୁମ୍ଭେ କେଉଁ ଜାତି କହ ତୁମ୍ଭ ନାମ କିସ ।
ଏହା ଶୁଣିଣ କହଇ ଗୋପାଳର ଶିଷ ॥
ଜାତି ଗଉଡ଼ ଅନନ୍ତ ନାମ ଅଟେ ମୋର ।
ଏହି ନାମ ଦେଇଛନ୍ତି ଜନକ ପିଅର ॥
ଏହି ନାମ ବିନା ମୁହିଁ ନ ଜାଣଇ ଆନ ।
ଶୁଣି ହସ ହସ ହୋଇଲେ ପ୍ରଭୁ ଭଗବାନ ॥
ତେବେ ତୁମ୍ଭର ଆମ୍ଭର ହେଲା ଏକଜାତି ।
ଏଥେ ଖେଳ ଖେଳୁଥିବା ତୁମ୍ଭେ ଆମ୍ଭେ ନିତି ॥
ଗୋପାଳ ବୋଇଲା ତୁମ୍ଭେ ଆସିବ କି ନାହିଁ ।
ମୋ ଦେହ ଛୁଇଁ କହିଲେ ପରତେ ଯିବଇଁ ॥
ଶ୍ରୀକୃଷ୍ଣ ବୋଇଲେ ଶୁଣ ଆମ୍ଭ କଥା ସତ ।
ଆଜଠାରୁ ତୁମ୍ଭେ ଆମ୍ଭେ ହୋଇଲୁଁ ମଇତ୍ର ॥
ଏତେ ବୋଲି କୋଳାଗତ କଲେକ ଶ୍ରୀହରି ।
ପୁଣି ଗୋପ ବାଳକର ଭୁଜ ହସ୍ତେ ଧରି ॥
ଏମନ୍ତେ ନାନାବିଧ ଖେଳ ଖେଳିଲେ ସେ ବନେ ।
ଭକତ ଭାବରେ ପ୍ରଭୁ ପଡ଼ିଲେ ବନ୍ଧନେ ॥
ଗୋପାଳ ବୋଇଲା ତୁମ୍ଭେ ଶୁଣ ଆହେ ମିତ ।
ମୁହିଁ ମାରୁଅଛି ତାଳ ତୁମ୍ଭେ କର ନୃତ୍ୟ ॥
ହେଉ ବୋଲି କହି ନୃତ୍ୟ କଲେ ବନମାଳୀ ।
ଗୋପବାଳକ ତାଳରେ ମାରେ କରତାଳି ॥
ଭକତ ଭାବରେ ନୃତ୍ୟ କରନ୍ତି ଶ୍ରୀରଙ୍ଗ ।
ଦେଖି ହୋଇ ହୋଇ ହୋଇଲା ବହନ୍ତେ ଶ୍ରୀଅଙ୍ଗ ॥
ଗୋପାଳସୁତ ବୋଇଲା ମିତ ରହିଲ ଯିବା ।
ବେଳ ବୁଡ଼ିଲାଣି ଆଉ ବନରେ ନ ଥିବା ॥
ଦେଖେଁ ମୋର ଗାଈମାନେ ଗଲେ କେଉଁ ଆଡ଼
ଶୁଣି କରି ଗୋପାଳକୁ କହନ୍ତି ଶ୍ରୀପତି ॥
ରହିଲ ଆଗ ସର୍ବ ଗାଈ ଆଣି ଠୁଳ କରି ।
ତେବେ ଯାଇ ଯିବା ମିତ ସେ ଯାହାର ପୁରୀ ॥

ହେଉ ବୋଲି କହି ତହୁଁ ବେଗିଗଲେ ଗଲେ ।
ସକଳ ଗୋରୁ ବାଛୁରୀ ଖୋଜିଣ ଆଣିଲେ ॥
ଶ୍ରୀକୃଷ୍ଣ ବୋଇଲେ ମିତ ଯାଅ ତୁମ୍ଭ ଘର ।
ଆମ୍ଭେ ଯାଉଅଛୁଁ ଏବେ ଆମ୍ଭ ନିଜପୁର ॥
ଗୋପାଳ ବୋଇଲେ ଆସିବ ମିତ ପ୍ରତିଦିନ ।
ତୁମ୍ଭଙ୍କୁ ଛାଡ଼ିବାକୁ ମୋ ବଳୁନାହିଁ ମନ ॥
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଆସିବ ଯେବେକାଳେ ।
ଡାକିଲାକ୍ଷଣି ଆସିବି ମୁହିଁ ଅବହେଳେ ॥
ମୋ ଆସିବା କଥା ତୁମ୍ଭେ ନ କହିବ କାହିଁ ।
କହିବ ଯେଦିନ ଆଉ ନ ଆସିବି ମୁହିଁ ॥
ତୁମ୍ଭଠାରେ ମୋର କିଛି ନାହିଁ ଯେ ଅନ୍ତର ।
ଏଥିକୁ ମନରେ ମିତ ଆନ ନ ବିଚାର ॥
ଶ୍ରୀକୃଷ୍ଣଙ୍କ ସଙ୍ଗେ କଥା କହୁଥାଏ ଯେତେ ।
ବାଳ ବାଳ ବୋଲି ମୁଖେ ବୋଲୁଥାଏ ଏତେ ॥
ହସିଣ ଶ୍ରୀକୃଷ୍ଣ ତାକୁ ବୋଇଲେ ଏ କିସ ।
ବାଳ ବାଳ ବୋଲି କିମ୍ପା ଅନୁକ୍ଷଣେ ଘୋଷ ॥
ଗୋପାଳ ବୋଇଲା ମୋର ଗୁରୁ ଛନ୍ତି କହି ।
ତେଣୁକରି ମିତ ଏହା ଘୋଷୁଥାଏ ମୁହିଁ ॥
ଶ୍ରୀକୃଷ୍ଣ ବୋଇଲେ ଏଥେ କିସ ପ୍ରୟୋଜନ ।
ଦାଣ୍ଡରେ ଶୁଣିଲେ ଲୋକେ ହସିବେ ତକ୍ଷଣ ॥
ଗୋପାଳ ବୋଇଲା ଏହା କେବେ ନ ଛାଡ଼ଇ ।
ଗୁରୁଙ୍କ ବାକ୍ୟ କେମନ୍ତେ ମୁହିଁ ଲଙ୍ଘିବଇଁ ॥
ଶୁଣିକରି ନାରାୟଣ ହସ ହସ ହୋଇ ।
ଯାଅ କହି ଅନ୍ତର୍ଦ୍ଧାନ ହୋଇଲେକ ତହିଁ ॥
ଗୋରୁ ଘେନିଣ ଗୋପାଳ ମନ୍ଦିରେ ପ୍ରବେଶ ।
ଭୋଜନ ସାରି ଶୋଇଲା ରାତି ହେଲା ଶେଷ ॥
ପୁଣିହି ଆରଦିବସ ଗୋରୁ ଘେନିଗଲା ।
ବେଗେ ଆସ ମିତ ବୋଲି ଆସ୍ଥେ ରେ ଡାକିଲା ॥
ତତକ୍ଷଣେ ନାରାୟଣ ମିଳିଲେ ତା ପାଶ ।
ଖେଳ କଉତୁକେ ମାତି କଲେ ହାସ ରସ ॥
ଧରାଧରି ହୋଇଣ ସେ ହୁଅନ୍ତି କୋଳାକୋଳି ।
କେତେବେଳେ ଗୋପସୁତ ମାରେ କରତାଳି ॥
ସେ ତାଳ ଶୁଣି ନାଚନ୍ତି କୃଷ୍ଣ ଚଳ ଚଳ ।
ଏହିପରି କେଳିଜନ କରୁଥାନ୍ତି କେଳି ॥
ଦିନଅନ୍ତେ ସେ ଯାହାର ପୁରେ ଯାନ୍ତି ଚଳି ।
ପୁଣିହି ଆରଦିବସ ହୁଅନ୍ତି ମେଳି ॥

ଏରୂପେ ଖେଳ କୌତୁକ ଷଡ଼ମାସ ପରେ ।
ଗୁରୁ ଆସିଣ ପ୍ରବେଶ ହୋଇଲେ ସେ ଗ୍ରାମରେ ॥
ସର୍ବ ଶିଷ୍ୟ ଯାଇଁ ତାଙ୍କୁ ଦରଶନ କଲେ ।
ହାଣ୍ଡି ତଣ୍ଡୁଳ ଗୁରୁଙ୍କୁ ସଞ୍ଚି ବସାଦେଲେ ॥
ରନ୍ଧନ ଭୋଜନ ସାରି ଗୁରୁ ଛନ୍ତି ବସି ।
ଏ ସମୟେ ଗୋପବାଳ ଗୋରୁ ଘେନି ଆସି ॥
ଗୁରୁ ଆସିବା ବାରତା ଶୁଣିଲେଣି କର୍ଣ୍ଣେ ।
ତତକ୍ଷଣେ ମିଳିଲେ ସେ ଗୁରୁ ସନ୍ନିଧାନେ ॥
ଦୂରୁ ଦେଖି ଗୁରୁଙ୍କର ଚରଣରେ ପଡ଼ି ।
ଉଠି ଉଭା ହୋଇଲେ ସେ ଶିରେ କରଯୋଡ଼ି ॥
ସୁବାସ ମହକଉଠେ ଗୋପାଳ ଶରୀରୁ ।
ଚମତ୍କାର ହେଲେ ଗୁରୁ ବାସ ପାଇବାରୁ ॥
ଗୋପାଳସୁତକୁ ଡାକି ଆଶ୍ୱାସନା କରି ।
କୋମଳବାକ୍ୟେ ପୁଛିଲେ ତାଙ୍କୁ ବ୍ରହ୍ମଚାରୀ ॥
ଏ ବାସଦ୍ରବ୍ୟ ବାବୁ ରେ ପାଇଲୁ ତୁ କାହିଁ ।
ତୋହର ଦେହୁ ବିଶେଷ ସୁଗନ୍ଧ ବାସଇ ॥
ବେଗକରି କହ ମୋତେ ଏଥିର ସନ୍ଦେଶ ।
ଆମ୍ଭେ ତୋର ଗୁରୁ ତୁହି ଅଟୁ ଆମ୍ଭ ଶିଷ୍ୟ ॥
ଗୁରୁ ଆଗେ ଶିଷ୍ୟ ଯେବେ ମିଛକଥା କହି ।
ଦେହାନ୍ତରେ କଷ୍ଟେ ସେହି ନରକେ ପଡ଼ଇ ॥
ଗୁରୁଠାରେ ଶିଷ୍ୟ ଯେବେ କରଇ କପଟ ।
ତାକୁ ଅଦୃଶ୍ୟ ହୁଅଇ ସଦା ଧର୍ମବାଟ ॥
ଗୁରୁଙ୍କ ଚରଣେ ଯେହୁ ହୁଏ ଅଭକତ ।
ବହୁତ ଦଣ୍ଡ ତାହାକୁ ଦିଏ ଜନ୍ତୁପତ ॥
ତପ୍ତ ଶାବେଳ ବସାଇ ସେ ଶିଷ୍ୟର ମୁଣ୍ଡେ ।
ପୁନଶ୍ଚ ତାକୁ ପକାନ୍ତି ଯମ ନର୍କକୁଣ୍ଡେ ॥
ଏଥକୁ ବିଚାରି ବାବୁ ମୋତେ ସତ କହି ।
ସୁଗନ୍ଧ ବାସେ କିପାଇଁ ଏ ତୋହର ଦେହ ॥
ଏପରି ଶୁଣି ବାଳକ ବିଚାରଇ ଚିତ୍ତ ।
କାହିଁ ନ କହିବି ବୋଲି କହିଛନ୍ତି ମିତ ॥
ଏତ ମନ୍ତ୍ରଦାତା ଗୁରୁ ପଚାରିଲେ ମୋତେ ।
ଏହାଙ୍କ ଆଗରେ ମିଛ କହିବି କେମନ୍ତେ ॥
ନ ଆସିଲେ ସଚେ ମିତ ନ ଆସିବେ ସେହି ।
ଯେବେ କି ମିଛ କହିବି ନର୍କେ ପଡ଼ିବଇଁ ॥
କହିଲେ ମିତଙ୍କୁ ନେତ୍ରେ ନ ଦେଖିବି ଆଉ ।
କେଉଁଦୋଷ୍ୟାଦେଖି ଧାତା ଏତେ ଦୁଃଖ ଦେଉ ॥

ଏହା ଭାବି ସେ ବାଳକ ହୋଇଲା ବିକଳ ।
ଛଳଛଳେ ଅଶ୍ରୁହୋଇଲା ତା ନୟନ ଯୁଗଳ ॥
ପୁଣି ମନେ ଧର୍ମ ଧରି ବିଚାରିଲା ଚିତ୍ତେ ।
କହିଲେ ସିନା ଛାଡ଼ିବେ ମୋତେ କାଳ ମିତ ॥
ଯେବେ ନ ଆସିବେ ମୁହିଁ ଯିବି ତାଙ୍କ ତହିଁ ।
ଏ ସ୍ଥାନ ନିକଟରେତ ଅଛନ୍ତି ସେ ରହି ॥
ଅନେକମତେ ବିନୟ ତାଙ୍କଠାରେ ହୋଇ ।
ଖେଳିବା ସ୍ଥାନକୁ ତାଙ୍କୁ ଆଣିବି କଢ଼ାଇ ॥
କହିବି ମୁ ଗୁରୁବିନା କହିନାହିଁ ଆନେ ।
ଏଥରକ କ୍ଷମାକର ତୁମ୍ଭ କ୍ଷମାଗୁଣେ ॥
ଏହା ଶୁଣିଣ ସନ୍ତୁଷ୍ଟ ହେବେ ମୋର ମିତ ।
ମୋଠାରେ ସ୍ନେହ ତାଙ୍କର ଅଛଇ ବହୁତ ॥
ଏହା ଭାବି ବୋଇଲା ସେ ଶୁଣ ହେ ଗୋସାଇଁ ।
ଗୋରୁ ଘେନି ବନସ୍ଥଳୁ ନିତ ଯାଏ ମୁହିଁ ॥
ଅତ୍ୟନ୍ତ ସୁନ୍ଦର ରୂପ ଶ୍ୟାମକଳା ହୋଇ ।
ବହୁତର ଅଳଙ୍କାର ଅଛି ତାଙ୍କ ଦେହୀ ॥
ନାନା କୁସୁମରେ କେଶ ହୋଇଛି ସାଜେଣି ।
ପୟରେ ସ୍ୱର୍ଣ୍ଣ ନୂପୁର ବାଜେ କଣି କଣି ॥
ହୃଦରେ ଲମ୍ବିଛି ନାନା ପୁଷ୍ପମାଳ ମାନ ।
ଚତୁଃସମ ହୋଇଥିଲେ ଅଙ୍ଗରେ ଲେପନ ॥
କଟିରେ ପୀତଅମ୍ବର ରତ୍ନର ମେଖଳା ।
କର୍ଣ୍ଣରେ କୁଣ୍ଡଳ କଣ୍ଠେ ଶୋହେ ରତ୍ନମାଳା ॥
ଭୁଜେ ବାହୁଟି କଙ୍କଣ ଅଙ୍ଗୁଷ୍ଠିରେ ମୁଦି ।
ଶ୍ୟାମଳ ମେଘରେ ଯେହ୍ନେ ବିଜୁଳି ଆଚ୍ଛାଦି ॥
ଚାଳୁପରେ ଶିଖିଚୂଳ କୁସୁମର ଗଭା ।
ଶ୍ରୀମୁଖ ମଣ୍ଡଳକୁ ଦେଖେ ଦଶନ ଦିବ୍ୟ ଶୋଭା ॥
ସୁନ୍ଦର ନାସିକା ସାଜେ ସୁରଙ୍ଗ ଅଧର ।
କଞ୍ଜଦଳ ସମ ନେତ୍ର ବଚନ ଗମ୍ଭୀର ॥
ସ୍ୱଭାବ ଦେଖିଣ ଲୋଭ ହୋଇଲା ମୋର ମତ ।
ତାହାଙ୍କର ସଙ୍ଗେ ଖେଳ ଖେଳୁଥାଏ ନିତ ॥
ତାଙ୍କ ଲାବଣ୍ୟ ଶରୀର ବାସେ ମହ ମହ ।
କୋଳା କୋଳହୁନ୍ତେ ଲାଗେ ଦୁହିଙ୍କର ଦେହ
ତାଙ୍କ ଦେହରେ ସୁଗନ୍ଧ ବାସଥାଇ ଯେତେ ।
ଏ ମୋହର ଦେହେ ଲାଗି ବାସେ ସେହିମତେ ॥
ଏକଥାରୁ ଆନ କିଛି ନ ଜାଣଇ ମୁହିଁ ।
କ୍ଷମ କରୁଛି ଗୁରୁ ତୁମ୍ଭ ପାଦ ଛୁଇଁ ॥

ଶୁଣିଣ ଯେ ବ୍ରହ୍ମଋଷି ହୋଇ ଅତଡେଳ ।
ଆଶ୍ୱାସ କରିଣ ତାଙ୍କୁ ବସାଇଲେ କୋଳ ॥
ଛନ୍ଦନ୍ତି ଆଉଁସି ତାର ମୁଖେ ଚୁମ୍ବଦେଲେ ।
ସତକଥା ମନେ କରି ବିଶ୍ୱାସ କରିଲେ ॥
ବିଚାରିଲେ ଯାଙ୍କୁ କାଷ୍ଟେ ପ୍ରସନ୍ନ ମୁରାରି ।
ଏତେ ତୀର୍ଥ ଭ୍ରମି ମୁହିଁ ଯାଙ୍କୁ ନୁହେ ସରି ॥
ଏହୁ ଗୋବିନ୍ଦଙ୍କ ସଙ୍ଗେ ଅଛୁ ସଙ୍ଗ ହୋଇ ।
ସ୍ନେହେ କୋଳ କରିଛନ୍ତି ଯାଙ୍କୁ ଭବଗ୍ରାହୀ ॥
କେଉଁ କର୍ମ କରିଣ ଏ ଲଭିଛି ମୁରାରି ।
ପଚାରିଲେ ଶିଷ୍ୟଙ୍କୁ ଯେ ବିଚାରି ବିଚାରି ॥
ଆରେ ବାବୁ ଯେବେ ମୁହିଁ ତୁମ୍ଭଠାରୁ ଗଲି ।
ଅନେକ ତୀର୍ଥ ବୁଲିଣ ଛମାସେ ଅଇଲି ॥
ମୁଁ ଗଲାଦିନରୁ ବାବୁ କଲୁ କେଉଁ କୃତ୍ୟ ।
ମିଛ ନ କହିଣ ମୋର ଆଗେ କହ ସତ୍ୟ ॥
ଶୁଣି ବାଳକ କହେ ମୁଁ କିଛି କରିନାହିଁ ।
ତୁମ୍ଭେ ଯେଉଁ ମନ୍ତ୍ର କହି ଥିଲଟି ଗୋସାଇଁ ॥
ତାହା ଘୋଷୁଥାଇ ଜାତ ଅନ୍ୟ ନାହିଁ କିଛି ।
ମୁଁ କି ମନ୍ତ୍ର କହିଥିଲି ଗୁରୁ ତାଙ୍କୁ ପୁଛି ॥
ବାଳକ ବୋଲେ କହିଣ ଥିଲ ବାଳ ବୋଲି ।
ତାହା ଘୋଷୁଥାଇ ଜାତ ପାସୋରିବ ବୋଲି ॥
ଏହା ଛଡ଼ା ଅନ୍ୟକର୍ମ କିଛି କରିନାହିଁ ।
ନିଅମ କରୁଛି ଗୁରୁ ତୁମ୍ଭପାଦ ଛୁଇଁ ॥
ବୋଇଲେ ରେ ବାବୁ ତୋର ଗୁରୁ ମୁଁ ଅଟଇ ।
ଏବେ ତୋତେ ମୁହିଁ ଗୁରୁ ଦକ୍ଷିଣା ମାଗଇଁ ॥
ଯେବଣ ବାଳକ ସଙ୍ଗେ ଖେଳ ଖେଳୁ ତୁହି ।
ପାରିବୁକି ବାବୁ ମୋତେ ତାହାଙ୍କୁ ଦେଖାଇ ॥
ଶୁଣିକରି ଗୋପାଳ ଯେ ବୋଇଲା ଗୁରୁଙ୍କୁ ।
ଆସନ୍ତି ସେ ବୃନ୍ଦାବନ ଦେଖାଇବି ତାଙ୍କୁ ॥
ଡାକିଲାକ୍ଷଣି ଆସନ୍ତି ସେହି ଧାଇଁ ଧାଇଁ ।
ସତ କିବା ମିଛ ତାହା ଦେଖିବ ଗୋସାଇଁ ॥
ଅଧିକ କହିଲେ ଆଉ ହୋଇବ ଯେ କିସ ।
ଦେଖିବ କେଡ଼େସୁନ୍ଦର ସେହି ବାଳଶିଷ୍ୟ ॥
ଏ କଥାକୁ ଚିନ୍ତା ତୁମ୍ଭେ ନ କର ଯେ ଚିତ୍ତେ ।
ମୋ ସଙ୍ଗରେ ଯିବା ହେବେ କାଲିର ପ୍ରଭାତେ ॥
ଏମନ୍ତ କହି ଗୋପାଳ ଗଲା ନିଜଘର ।
ବ୍ରହ୍ମଋଷି ମନୋଧ୍ୟାନ କଲେ ବଂଶୀଧର ॥
ଭ୍ରମଇ ବହୁତ ତୀର୍ଥ ଭ୍ରମିଲି ବୃଥାରେ ।
ଘରେ ଗୋପସୁତ ଥାଇ ଦେଖିଲା ସାକ୍ଷାତେ ॥
ଜପ ମନ୍ତ୍ର ବେଦ ଶାସ୍ତ୍ର ମୁହିଁ ପଢ଼ିକରି ।
ଗୋପାଳ ବାଳକ ସଙ୍ଗେ ନୋହିଲଇଁ ସରି ॥
ଭୋଳଦେବ ଦେବାଧିରାଜ ମୋତେ କ୍ରୋଧକର ।
କାହିଁରେ ଦେଖାଅ ବାଳକ ରୂପକୁ ତୁମ୍ଭର ॥
ଏହାପରେ ବ୍ରହ୍ମଋଷି ବହୁସ୍ତୁତି କରି ।
ଅନାହାରେ ଶୋଇଲେ ଯେ ନେତ୍ରେ ନିଦ୍ରା ଘାରି ॥
ରଜନୀ ଶେଷେ ଦିବସ ପ୍ରବେଶ ହୋଇଲା ।
ଗୋପବାଳ ଗୁରୁଙ୍କର ଦୁଆରେ ଡାକିଲା ॥
ଶୁଣି ଗୋସାଇଁ ଅଇଲେ କବାଟ ଫିଟାଇ ।
ଦେଖିଣ ଗୋପାଳ ବେଗେ ପାଦେ ପଡ଼ି ଶୋଇ
କଲ୍ୟାଣ କରିଣ ଗୁରୁ ନେଲେ କୋଳକରି ।
ବନେ ଯିବା ସରି ବାବୁ ବୋଲେ ବ୍ରହ୍ମଋଷି ॥
ଶୁଣିଣି ବାଳକ ବୋଲେ ଆସ ବେଗହୋଇ ।
ଏତେ ବୋଲିଣ ଗୋପାଳ ଘଉଡ଼ିଲା ଧାଇ ॥
ସଙ୍କେତ ସ୍ଥାନରେ ଯାଇ ହୋଇଲେ ପ୍ରବେଶ ।
ଗୁରୁଙ୍କୁ ବୋଇଲା ତୁମ୍ଭେ ଉହାଡ଼ରେ ବସ ॥
ଶୁଣିକରି ଗୁରୁ ଲତା ଉହାଡ଼ରେ ରହି ।
ଆପଣାର ହୃଦ ମଧ୍ୟେ ଚିନ୍ତି ଭବଗ୍ରାହୀ ॥
ପାଷାଣ ଉପରେ ବସି ଗୋପାଳର ସୁତ ।
ଆଣ୍ଠୁକରି ଡାକିଲା ଯେ ବେଗେ ଆସ ମିତ ॥
ଅନ୍ତର୍ଯ୍ୟାମୀ ଦୁହିଙ୍କର ମନ ଭାବ ଜାଣି ।
ସେଠାରେ ବିଜୟ କଲେ ଭକ୍ତଭାବ ଘେନି ॥
ବୋଇଲେ ମିତ କପଟ କଲ ଆମ୍ଭଠାରେ ।
କାହାକୁ ଆଣି ରଖିଛ ଲତା ଉହାଡ଼ରେ ॥
କାହାରେ ନ କହିବ ବୋଲି ଆମ୍ଭେ ଥିଲୁଁ କହି ।
ଗୁରୁଙ୍କ ଆଗରେ ତୁମ୍ଭେ କହିଲ କପାଇଁ ॥
ତୁମ୍ଭଠାରେ ଆମ୍ଭମାନେ ନ ଥିଲୁ ଅନ୍ତର ।
ଆଜଠାରୁ ବନ୍ଦହେଲା ଆମ୍ଭ ଆସିବାର ॥
ଜୀବନ୍ତେ ଐଶ୍ୱର୍ଯ୍ୟ ଥିବ ମଲେ ପାଅ ଗତି ।
ଏସନେକ ଆଜ୍ଞା ତାଙ୍କୁ ଦେଇ ଶିରୀପତି ॥
ବିଜୁଳି ସମାନ ତହୁଁ ହେଲେ ଅନ୍ତର୍ଦ୍ଧାନ ।
କର୍ଣ୍ଣିରେ ଗୁରୁ ତାଙ୍କୁ କରନ୍ତେ ଦର୍ଶନ ॥
ଦେଖିବାମାତ୍ରେ ଗୁରୁଙ୍କ ପାଶ ଗଲା ଛାଡ଼ି ।
ଶିଷ୍ୟ କହେ ଦେଖିଲତ ଶିରେ କରଯୋଡ଼ି ॥

ଗୁରୁ ବୋଇଲେକ ଧନ୍ୟ ମୋହର ଜୀବନ ।
ତୋ ପୁଣ୍ୟବଳେ ଦେଖିଲି ଆଜ ଭଗବାନ ॥
ଜନମକାଳରୁ କେତେ ପୁଣ୍ୟ କରିଥିଲି ।
ତେଣୁ ଏ ପାପନୟନେ ପ୍ରଭୁଙ୍କୁ ଦେଖିଲି ॥
କି ଜାଣି ପୂର୍ବ ଜନ୍ମରେ କଲି କେତେ ପୁଣ୍ୟ ।
ତେଣୁ ମୁଁ ମୂଢ଼ ପାଇଲି ତାଙ୍କ ଦରଶନ ॥
ଶୁଣ ବାବୁ ଶୁଭଯୋଗେ କଲି ତୋତେ ଶିଷ୍ୟ ।
ତୋ ଯୋଗେ ଦେଖିଲିନେତ୍ରେ ପ୍ରଭୁ ହୃଷୀକେଶ ॥
ଗୋପାଳ କହିଲା ପ୍ରଭୁ ତୁମ୍ଭକାର୍ଯ୍ୟ ହେଲା ।
ଶରଧନ ପାଇଁ ମୋର ସଙ୍ଗସୁଖ ଗଲା ॥
ଆହା ସେ ସୁନ୍ଦରରୂପ ଆଉ କି ଦେଖିବି ।
ଜୀବ ଥିବାଯାଏ ଭବ ଭ୍ରମଣ ମରିବି ॥
ସତେ କି ଆଉ ଦେଖିବି ମିତଙ୍କ ଶ୍ରୀମୁଖ ।
ତୁମ୍ଭପାଇଁ ଭାଙ୍ଗିଗଲା ମୋର ଏତେ ସୁଖ ॥
ମିତ ମିତ କହୁଥିଲେ ସେ କେତେ ଭଙ୍ଗିରେ ।
ସେ ମଧୁରସ୍ବର ଆଉ ଶୁଣିବି କି ଥରେ ॥
ଆଉ ସେ ସୁନ୍ଦରରୂପ ଏ ପାପନୟନ ।
ସତେ କି ଦେଖିବ କରିଅଛି ଏତେ ପୁଣ୍ୟ ॥
ତାକଇଲମାନେ ପାଖକୁ ଆସୁଥିଲେ ସେତ ।
ଏହାପରେ ଛଅମାସ ହୋଇଥିଲା ଗତ ॥
ଗୋବତ୍ସ ଖୋଜି ଆସିଲେ ମୋହର ସଙ୍ଗରେ ।
ମୋ ଥିବାଯାଏ ଆସିଲେ ମୋ ପାଶେ ବନରେ ॥
ନିୟମ ଭଙ୍ଗ ହେବାରୁ ନ ଆସିବ ବୋଲି ।
କହି ଚାଲିଗଲେ କିଛି କହି ନ ପାରିଲି ॥
ନାରାୟଣ ବୋଲି ତାହାଙ୍କୁ ଚିହ୍ନି ନ ପାରିଲି ।
ତୁମ୍ଭ କହିବାରୁ ଏବେ ଏତେ ମୁଁ ଜାଣିଲି ॥
ଆହା ପ୍ରଭୁ କିବା ଦୋଷେ ହୋଇଲି ଅନ୍ତର ।
ସେବା କରି ନ ପାରିଲି ଶ୍ରୀପଦେ ତୁମ୍ଭର ॥
ପିଲାଙ୍କନେ ମୁହିଁ ମୂଢ଼ ଖେଳରେ ମାତିଲି ।
ଜଗତକର୍ତ୍ତା ବୋଲି ଚିହ୍ନି ନ ପାରିଲି ॥
ଏପରି କହି ମୂର୍ଚ୍ଛିତେ ପଡ଼ିଲା ଭୂମିରେ ।
ଗୁରୁ ତାହାକୁ ଉଠାଇ ଧଇଲେ କୋଳରେ ॥
ବୋଇଲେ ରେ ବାବୁ ଏହା ବିଧାତା ଲେଖନ ।
ଯେତେଦିନ ଥିଲା ପୁଣ୍ୟ କଲୁ ଦରଶନ ॥
ଆଉ ତାହାଙ୍କୁ ଖୋଜିଲେ ପାଇବୁ ତୁ କାହିଁ ।
ଏବେ ମନରୁ ସନ୍ତାପ ଛାଡ଼ିଦିଅ ତୁହି ॥
ଏହା କହି ବୋଧ ଦେଇ ଗୁରୁ ନେଲେ ଘର ।
କହେ ମାଧବ ହେ ହରି ଭକ୍ତ କର ପାର ॥



ଚନ୍ଦ୍ରଜିତ ରାଜା ପାଣି ମହାଦେଈ ଚନ୍ଦ୍ରାବତୀ
ଅଙ୍ଗେ ବ୍ରହ୍ମଗ୍ରାସ ପ୍ରବେଶ ଓ
ଅଳ୍ପ ମାହାତ୍ମ୍ୟ ।

ଏଥୁ ଅନନ୍ତରେ ପୁଣି ମନ ନରପତି ।
ଚଇତନ ପାଦତଳେ କରିଣ ପ୍ରଣତି ॥
ବୋଇଲା ହେ ଗୁରୁଦେବ ଗୋପାଳବିଷୟ ।
ଶୁଣିକରି ଆନନ୍ଦିତ ହେଲା ମୋ ହୃଦୟ ॥
ତୁଳନା ନାହିଁ ଯେ ଆଉ ନାମ ମହିମାରୁ ।
ଦୃଢ଼କଲେ ମୂଢ଼ଜନେ ପାଆନ୍ତି ହରିଙ୍କୁ ॥
ଏ ଉତ୍ତାରୁ ଆଉ କିଛି କଥା ଥିଲେ କହ ।
ଯା ଶୁଣିଲେ ସ୍ଥିରମନ ହେବ ମୋର ଥୟ ॥
ଚୈତନ୍ୟ କହିଲେ ତୁହି ଶୁଣ ମନଦେଇ ।
ସୁଜନଙ୍କ ସଙ୍ଗ କେଭେ ନ ଛାଡ଼ିବୁ ତୁହି ॥
ସୁଜନଙ୍କ ସଙ୍ଗେ ନୀତି କରୁଥିବୁ ଭାବ ।
ସେ ଯେବେ ନାହିଁ କରିବେ କେଭେ ନ ଛାଡ଼ିବ ॥
ଉତ୍ତମଲୋକ ଯଦ୍ୟପି ଦେବ ପରାଭବ ।
ବିଗ୍ରହବ ପଛକୁ ସେ ହୋଇବଟି ଲଭ ॥
ପ୍ରଥମରେ କଷ୍ଟ ହୁଏ ପଛେ ହୁଏ ଭଲ ।
ଉତ୍ତମଲୋକର ବାକ୍ୟ କେଭେ ନୁହେ ସଲ ॥
ଏଥିକୁ ଉପମା ଏକ କହିବା ଯେ ଶୁଣ ।
ଉତ୍ତମ ବ୍ୟକ୍ତିମାନଙ୍କ ସେହିପରି ଗୁଣ ॥
ଯେସନ୍ତେ ଔଷଧ ଖାଇଲେ ବଡ଼ କହୁ କରେ ।
ଗର୍ଭରେ ପଡ଼ିଲେ ତାର ସୁଗୁଣ ବାହାରେ ॥
ଉତ୍ତମ ଲୋକଙ୍କର ଯେ ଏମନ୍ତ ବିଧାନ ।
ତାହାଙ୍କର ସଙ୍ଗ କେଭେ ନ ଛାଡ଼ିବୁ ମନ ॥
ସୁଜନ ଲୋକଙ୍କ ସଙ୍ଗେ ସଦା ରହିଥିବ ।
ଦୁର୍ଜନଲୋକଙ୍କ ସଙ୍ଗ କେଭେ ନ କରିବ ॥
ସେ ଯେବେ କୋମଳକରି କହିବ ବଚନ ।
ତାହାକୁ ପରତେ କେଭେ ନ କରିବୁ ମନ ॥
କୁସୁମ ଚନ୍ଦନ ଦେଇଁ ବନ୍ଧୁ ବୋଲିଦେବ ।
କି ଅବା ଲୋଭ ଦେଖାଇ ବହୁତ କହିବ ॥
କେବେହେଁ ସେହି କଥାକୁ ବିଶ୍ୱାସ ନ ଯିବୁ ।
ବିଶ୍ୱାସ କଲେ ତୁ ନାଶେ ନାଶକୁ ଲଭିବୁ ॥

ପ୍ରଥମରେ ଭଲ ସେହୁ ପଛକୁ ଦୁର୍ଗୁଣ ।
ଏଥିର ଉପମା ତୋତେ କହିବା ଯେ ଶୁଣ ॥
କର୍ପୂର ପଇଡ଼ପାଣି ଆଉ ଲେମ୍ବୁରସ ।
ଏ ସବୁ ଅତିଶୀତଳ ଏକତ୍ରରେ ବିଷ ॥
ଲୋଭକରି ଯେବେ କେହି ଏହା କରେ ଗ୍ରାସ ।
ତତକ୍ଷଣେ ତାର ଆତ୍ମା ଯିବ ଯମବାସ ॥
ପିଣ୍ଡରୁ ପ୍ରାଣ ଛାଡ଼ିଣ ଅନ୍ତରିକ୍ଷେ ଯାଇ ।
ଦୁର୍ଜନଲୋକର ସଙ୍ଗ ଏମନ୍ତ ଅଟଇ ॥
ଏଥକୁ ସୁମନ ତୋତେ କହୁଅଛି ମୁହିଁ ।
ବିଗୁଣି କାର୍ଯ୍ୟ କରିଲେ ପରମାଦ ନାହିଁ ॥
ସାଧୁଲୋକ ସହିତରେ ଯେହୁ ସଙ୍ଗ ହୋଇ ।
ସେ ଲୋକ ନିଶ୍ଚେ ଉତ୍ତମ ଗତିକି ଲଭଇ ॥
କଦଳୀପଟ ତୁଳସୀମାଳ ସଙ୍ଗ ହୋଇ ।
ମହାପ୍ରଭୁଙ୍କ ବକ୍ଷରେ ଯେସନେ ଲମ୍ବଇ ॥
ତୁଳସୀର ସଙ୍ଗେ ପଟ ଯହୁଁ ହେଲା ସଙ୍ଗ ।
ତେଣୁ ପଟକୁ ବହିଲେ ପ୍ରଭୁ ଶିରିରଙ୍ଗ ॥
ନୋହିଲେ ପଟକ କାହିଁ ହୋନ୍ତା ଯୋଗ୍ୟମାନ ।
ଉତ୍ତମ ସଙ୍ଗରେ ଥିଲେ ଉତ୍ତମ ବିଧାନ ॥
ସାଧୁଙ୍କ ସଙ୍ଗେ ବସିଲେ ଶୁଣି ହିତକଥା ।
ତେବେ ସେ ମନରୁ ଫିଟିଯିବ ଭବବ୍ୟଥା ॥
ବ୍ୟାଧର ସଙ୍ଗରେ ଯେବେ ବସିବଟି ଯାଇ ।
ଜନ୍ତୁବଧ କଥା ବିନା ଆନ ହେବ ନାହିଁ ॥
ଧୀବରଜନ ସଙ୍ଗତେ ଯେ ଜନ ବସିବ ।
ମୀନ ମାରିବାର କଥା ଶ୍ରବଣେ ଶୁଣିବ ॥
ଯାହାବିନା ସେ ଲୋକ କିଛି ନ ଜାଣଇ ଆନ ।
ସୂତ୍ର ଦିବା ଖୋଜଇ ସେ ମୀନଙ୍କର ସ୍ଥାନ ॥
ଚୋରଙ୍କର ସଙ୍ଗେ ସଙ୍ଗ ଯେ ଲୋକ ହୁଅଇ ॥
ଜାଣ ସେ ଲୋକ ଅବଶ୍ୟ ଚୋରି ଯେ କରଇ ॥
ପରଧନ ପରଦାରା ଠାରେ ଯାର ରତି ।
ଜୀବଙ୍କୁ ବଧ କରଇ ଯେହୁ ନିତ୍ୟ ନିତ୍ୟ ॥
ତାହାଙ୍କର ମୁଖ ଯେବେ ପ୍ରଭାତରେ ଚାହିଁ ।
ସେ ଦିନ ସୁକୃତ ନାଶ ଅବଶ୍ୟ ହୁଅଇ ॥
ଯାହା ଦେଖିବାମାତ୍ରେ ଯେବେ ବୋଲ ରାମ ରାମ ।
ତେବେ ସେ ନାଶ ହୋଇବ ତାର ପାପମାନ ॥
ପ୍ରଭାତରୁ ଉଠି ଦେଖିଲେ ଧର୍ମିଷ୍ଠ ବ୍ରାହ୍ମଣ ।
ତେବେ ବିଚାରିବ ଆଜ ମୋର ଶୁଭଦିନ ॥
ପ୍ରଭାତକାଳେ ଯେ ସୂର୍ଯ୍ୟ କରିବ ଦର୍ଶନ ।
ସକଳ ପାତକ ତାର ହୋଇବ ଦହନ ॥
ଗୁରୁଦରଶନ ମନ ନିତ୍ୟ ଯେହୁ କରି ।
ବିଷ୍ଣୁ ଦରଶନ ସଙ୍ଗେ ସେହି ସମସରି ॥
ଶୁଣ ହୋ ସୁମନ ମୁହିଁ କହୁଅଛି ତୋତେ ।
ଦୁର୍ଜନର ସଙ୍ଗେ ସଙ୍ଗ ନୋହିବୁ କଦାପିତେ ॥
ଯେବେ ତା ସଙ୍ଗରେ ସଙ୍ଗ ହେବୁ ଯିବୁ ନାଶ ।
ବିଷଧର ମୁଖରୁ କି ବାହାରେ ପୀୟୂଷ ॥
ବିଷ୍ଣୁର ଭକତ ଯେହୁ ସେହି ସାଧୁଜନ ।
ହରିକଥାବିନୁ ସେହି ନ ଜାଣନ୍ତି ଆନ ॥
କହିଲେ କହନ୍ତି ସେହି ଶ୍ରୀକୃଷ୍ଣ ଚରିତ ।
ଯେଉଁନାମେ ପ୍ରାଣିମାନେ ହୁଅନ୍ତି ମୁକତ ॥
ବିଷ୍ଣୁକଥାବିନୁ ଯେହୁ ନ ଜାଣନ୍ତି ଆନ ।
ତେଣୁକରି ବସିବ ଯେ ତାଙ୍କ ସନ୍ନିଧାନ ॥
ଦଣ୍ଡେ ବା ନିମିଷେ ଯେବେ ବସିବ କେ ଯାଇ ।
ତେବେ ସେ ସର୍ବ ପାପରୁ ବିମୁକ୍ତ ହୁଅଇ ॥
ନିରକ୍ଷଜନଙ୍କୁ ଯେହୁ ଆଶ୍ୱାସନା କରି ।
ପ୍ରତିପାଳନ କରିବ ଦେଇ ଅନ୍ନ ବାରି ॥
ଘର କରିଦେଇ ତାକୁ ତହିଁ ରଖିଥିବ ।
ଧର୍ମିର ସନ୍ତାନ ବୋଲି ମନେ ବିଚାରିବ ॥
ଯେଉଁଲୋକ ଅନ୍ନବିନା ଦାଣ୍ଡେ ବୁଲୁଥାଇ ।
ତାହାକୁ ପୋଷଇ ଯେହୁ ଅନ୍ନ ପାଣି ଦେଇ ॥
କି କହିବି ତା ସୁକୃତ ଅଟଇ ବିଶେଷ ।
କାଳେ ସେହି ଲୋକ ଯେବେ ହୋଇ ଅବିଶ୍ୱାସ ॥
ତା ଅନିଷ୍ଟ ଚିନ୍ତା ଯେବେ କରେ ସେହି ଲୋକ
ଜଗନ୍ନାଥ ତାକୁ ଦଣ୍ଡ ଦିଅଇ ଅନେକ ॥
ଏପରି ଲୋକକୁ ତିନିପୁରେ ନାହିଁ ପାରି ।
ଧର୍ମବନ୍ତ ପରାଣୀ ଯେ ଜାଣେ ଇହ ପର ॥
ଧର୍ମହିଁ ପ୍ରାଣିମାନଙ୍କୁ ସଖା ଚିରଯୁଗେ ।
ଧର୍ମବନ୍ତ ଲୋକକୁ ଯେ ପ୍ରମାଦ ନ ଲାଗେ ॥
ଭେଖିଲୋକମାନଙ୍କୁ ଯେ ଦିଏ ଅନ୍ନଦାନ ।
କେ ଅନ୍ତ କରି ପାରିବ ତାହାଙ୍କର ପୁଣ୍ୟ ॥
ଦିନ ଦିନ ତା ସୁକୃତ ବୃଦ୍ଧି ହେଉଥାଇ ।
ଏହା ସଙ୍ଗେ ଅନ୍ୟ ଧର୍ମ ସରି ପେ ନୁହଇ ॥
ସୁମନ ବୋଇଲା ତୁମ୍ଭେ ଶୁଣ କରିତନ ।
ଉତ୍ତ କରି କହିଲ ଯେ କିପରେ ଅନ୍ନଦାନ ॥

ନାଶକର ବୋଇଲା ତୁ ସାବଧାନେ ଶୁଣ ।
ଚନ୍ଦ୍ରକାନ୍ତନାମେ ଅଛି କର୍ଣ୍ଣାଟ ରାଜନ ॥
ଚନ୍ଦ୍ରାବତୀ ନାମେ ଅଛି ତାର ପାଟରାଣୀ ।
ଅପୂର୍ବ ସୁନ୍ଦରୀ ସେହୁ ଗୁଣ ସୁଲକ୍ଷଣୀ ॥
ତାହାର ଅଙ୍ଗେ ପ୍ରବେଶ ହୋଇବୁ ତୁ ଯାଇଁ ।
ଅବଶ୍ୟ ତାହାର ଯୋଗୁଁ ମୋକ୍ଷ ହେବୁ ତୁହି ॥
ସେ ଦେଶରେ ଆଉ ଜଣେ ଅଛି କୃଷ୍ଣଦାସ ।
ଅତିଥି ମାଗିଲେ ତାଙ୍କୁ ଦିଅଇ ସେ ଗ୍ରାସ ॥
ଶୁଦ୍ରାଦି ବ୍ରାହ୍ମଣଯାଏ ଯେ ଅନ୍ନ ମାଗଇ ।
ଯେରୂପେ ହେଉ ଦିଅଇ ନ ବୋଲଇ ନାହିଁ ॥
ସାତପୁତ୍ରରେ ଦୁହିତା ଗୋଟିଏ ତାହାର ।
ସେ ଝିଅଟି ଅଜ୍ଞାନ ଯେଁ ସାତବରଷରେ ॥
ତାହାର ସାନବୋହୂଟି ଘରଧନ୍ଦା କରେ ।
ଅଳସ ବୋଲି ତାହାର ନ ଥାଏ ମନରେ ॥
ସମସ୍ତଙ୍କୁ ଦିଅଇ ସେ ନ ବୋଲଇ ନାହିଁ ।
କେଉଁଦିନ ଅବା ରାତ୍ର ଅର୍ଦ୍ଧ ହୋଇଯାଇ ॥
ଦେଉଁ ଦେଉଁ କେଉଁଦିନ ନ ଅଣ୍ଟିଲେ ଅନ୍ନ ।
ଉପବାସେ ରହଇ ସେ ନୁହଇ ବିମନ ॥
ଏଥୁଅନନ୍ତରେ ଦିନେ ପାଞ୍ଚ ସାତ ଚୋର ।
ଚୋରିକରି ଗଲେ ଏକ ସାଧୁର ମନ୍ଦିର ॥
ସେହି ଚୋରଙ୍କ ମଧ୍ୟରୁ ଜଣେ ଚୋର ଗଲା ।
ସାଧବ ଘରଭିତରେ ଯାଇଣ ପଶିଲା ॥
କୌଣସି ଉପାୟେ ଧନ ନ ପାରିଲା ଆଣି ।
ଆଣିବା ଲକ୍ଷ୍ୟ ମନେ ବିଚାରଇ ପୁଣି ॥
ଆସିବାକୁ କେଉଁମତେ ନ ପାଇଲା ବାଟ ।
ତିନିଦିନ ଉପବାସେ ପାଇଲା ସେ କଷ୍ଟ ॥
ସଙ୍ଗଚୋରମାନେ ତାକୁ ଚାହିଁ ଦୁଇଦିନ ।
ସେ ଚୋରେ ଛାଡ଼ିଣ ଗଲେ ଯେ ଯାହା ଭବନ
ଏହିରୂପେ ଦେଖ ତହିଁ ଦଇବର ଯୋଗ ।
କର୍ମହୀନ ଲୋକମାନେ ନ ପାଆନ୍ତି ଭୋଗ ॥
ସାଧବର ଘରେ ଥିଲା ଯେଉଁ ଚୋର ରହି ।
ତିନିଦିନ ଉତ୍ତାରୁ ସେ ବାହାରିଲା ତହିଁ ॥
ପାଞ୍ଚଘଡ଼ି ରାତ୍ରରେ ସେ ହୋଇଲା ବାହାର ।
ଚାଲି ନ ପାରଇ ସେହୁ ଭୋକରେ ଅସ୍ଥିର ॥
କୃଷ୍ଣଦାସ ଘରଠାରେ ପ୍ରବେଶ ହୋଇଲା ।
କ୍ଷୁଧାରେ ଆକୁଳ ହୋଇ ବହୁତ ଡାକିଲା ।
ଘର ଯାକ ସମସ୍ତେ ସେ ଅଚେତନ ହୋଇ ।
ଶୋଇଅଛନ୍ତି କାହାର ଅଙ୍ଗେ ଜ୍ଞାନ ନାହିଁ ॥
ପୁଣ ପୁଣ ବିକଳରେ ଡାକେନ୍ତ ବହୁତ ।
କୃଷ୍ଣଦାସ ସାନବୋହୂ ଶୁଣି କର୍ଣ୍ଣପଥ ॥
କାହାକୁ ଉଠାଇବି ମୁଁ ସର୍ବେ ଛନ୍ତି ଶୋଇ ।
ତିନିଦିନ ଉପବାସେ ଅଛି ସେ ବୋଲଇ ॥
ଏକଦିନ ଉପବାସ ରହେ ଯେଉଁଜନ ।
ଆରଦିନକୁ ବ୍ୟାକୁଳ ହେଉଥାଇ ମନ ॥
ଆଜିତ ହାଣ୍ଡିରେ ଭାତ ବହୁତ ଯେ ନାହିଁ ।
ଦଇବର ଯୋଗେ ଆଜ ଖାଇନାହିଁ ମୁହିଁ ॥
ଏହି ପରକାରେ ବୋହୂ ବିଚାରଇ ଚିତ୍ତ ।
ପୁଣି ଚୋର ବିକଳରେ ଡାକଇ ବହୁତ ॥
ମୁ ପଛେ ଉପବାସରେ ଆଜକ ରହିବ ।
ସମସ୍ତ ଠୁଳ କରିଣ ତାକୁ ନେଇ ଦେବ ॥
ଏହା ଭାବି ରୋଷଘରେ ପଶିଲା ତରୁଣୀ ।
ଯାହା ଥିଲା ହାଣ୍ଡି ମଧ୍ୟେ ଆଣିଲା ସେକ୍ଷଣି ॥
ତାହାର ଖାଇବାପାଇଁ ଯେତେ ରଖିଥିଲା ।
ସେ ସବୁ ଏକତ୍ର କରି ପତ୍ରରେ ଧଇଲା ॥
ନେଇ ଅତିଥି ଆଗରେ ତାହା ଥୋଇଦେଲା ।
କୋମଳ କରିଣ ତାକୁ ବଚନ ବୋଇଲା ॥
ଧୀର କରିଣ କହିଲା ଆଉ ଅନ୍ନ ନାହିଁ ।
ଯାହା ଥିଲା ହାଣ୍ଡିମଧ୍ୟେ ଆଣିଦେଲି ମୁହିଁ ॥
ସନ୍ତୋଷେ ଭୁଞ୍ଜି ବୋଲି ସେ ଭିତରକୁ ଗଲା ।
ତତକ୍ଷଣେ ସେହି ଚୋର ନେଇଣ ଭୁଞ୍ଜିଲା ॥
ଆମ୍ଳପିତ୍ତରୁ ତାହାର ଦଗ୍ଧ ହେଉଥିଲା ।
ଉଦରେ ଅନ୍ନ ପଡ଼ନ୍ତେ ସୁସ୍ଥକୁ ଲଭିଲା ॥
ତହିଁର ସୁକୃତ ଯେତେ କେ ପାରିବ କହି ।
ଦଶଯଜ୍ଞ ଫଳ ତାକୁ ସରିହେବ ନାହିଁ ॥
ସେହି ଧର୍ମ ଦେଲେ ରାଜା ସନ୍ତୋଷ ହୋଇବ ।
ତେବେ ତୁମ୍ଭର ରାଣୀକି ଛାଡ଼ି ଚାଲିଯିବ ॥
ବ୍ରହ୍ମଦୈତ୍ୟ ବୋଇଲା ଯେ ଦିଏ ଅନ୍ନଦାନ ।
ସଂସାର ମଧ୍ୟରେ ସେହି ଅଟେ ଭାଗ୍ୟବାନ ॥
ତାକୁ ପାପରାଶି କେବେ ଦୁଃଖ ନ ଦିଅନ୍ତି ।
ତା ଦେହୁ ରୋଗ ସକଳ ନାଶକୁ ଲଭନ୍ତି ॥
ତୁହି ରାଜନ ଲକ୍ଷେକ ବ୍ରାହ୍ମଣ ଭୋଜନ ।
ଦେଇଅଛି ଆଣିକରି ପ୍ରଜାଠାରୁ ଧନ ॥

ତହିଁର ଫଳେ ମୁଁ କେବେହେଁ ନୋହିବ ଉଦ୍ଧାର ।
ତେଣୁ ରାଜନ ଏଥୁ ଉଦ୍ଧର ମୋତେ ତ୍ରାହିକର ॥
ଯେବେ ଦେଇପାର ସେହି ବୋହୂର ଧର୍ମକୁ ।
ତେବେ ଛାଡ଼ିବ ନ ନେବ ତୋ ରାଣୀ ପ୍ରାଣକୁ ॥
ଏହାପର କହିଥିଲେ ବାଙ୍କଦଣ୍ଡପାଣି ।
ଏବେ ମୁଁ କହିଲି ତୋତେ ଶୁଣ ନୃପମଣି ॥
ଶୁଣିଣ ରାଜନ ହେଲେ ଆନନ୍ଦିତ ଚିତ୍ତ ।
କୃଷ୍ଣଦାସକୁ ଅଣାଏ ବରଗିଣ ଦୂତ ॥
ରାଣୀର କହିବା କଥା ତା ଆଗେ କହିଲେ ।
ଶୁଣିକର କୃଷ୍ଣଦାସ ସ୍ତମ୍ଭୀଭୂତ ହେଲା ।
ମୋର ବୋହୂ କେଉଁପରି ଦେଲା ଅନ୍ନଦାନ ।
ପଚାରିଣ ଆସ ବୋଲି କହିଲେ ରାଜନ ॥
ଶୁଣିକର କୃଷ୍ଣଦାସ ଘରଠାକୁ ଗଲା ।
ଦାନ ଦେବାର ବିଷୟ ବୋହୂକୁ କହିଲା ॥
ଯେମନ୍ତ ପ୍ରକାରେ ବୋହୂ ପାତ୍ରେ ଥିଲା ଦେଇ ।
ସେହିପରି ଶ୍ୱଶୁରକୁ କହିଲା ବୁଝାଇ ॥
ଶୁଣିକର କୃଷ୍ଣଦାସ ବାହୁଡ଼ିଲା ସତ ।
ବେଗେ ଯାଇଁ ଜଣାଇଲା ନୃପତି ଅଗ୍ରତ ॥
ତୁମ୍ଭ ଆଜ୍ଞାରେ ମୁଁ ଯାଇଁ ବୋହୂକୁ ପୁଚ୍ଛିଲି ।
ସେ ବୋଇଲା ଅନ୍ନଦାନ ପାତ୍ରେ ଦେଇଥିଲି ॥
ରାଜନ ବୋଇଲେ ଦେଉ ମୋତେ ସେହି ଧର୍ମ ।
ତା ବଦଳେ ଦେବି ତୋତେ ଏକଖଣ୍ଡ ଗ୍ରାମ ॥
କୃଷ୍ଣଦାସ ବୋଇଲା ଯେ ପଚାର ବୋହୂକୁ ।
ତାହାର ଧର୍ମ କିପରି ଦେବି ମୁଁ ତୁମ୍ଭଙ୍କୁ ॥
ଶୁଣି ରାଜନ ହାଣ୍ଡୋଳା ବେଗେ ଦେଲେ ପେଷି
ସଙ୍ଗତରେ ବରଗିଲେ ଦଶଜଣ ଦାସୀ ॥
ଦାସୀଏ ବୋଧି ବୋହୂକୁ ହାଣ୍ଡୋଳେ ବସାଇ
ପରବେଶ ହେଲେ ରାଜ ନବରରେ ଯାଇଁ ॥
ବସ୍ତ୍ର ଅଳଂକାର ତାର ପାଶେ ଥୋଇଦେଇ ।
ଅନ୍ତରେ ରହି ରାଜନ କହିଲେ ବନୋଇ ॥
ଦୁଇସସ୍ର ଟଙ୍କାର ଯେ ଦୁଇଖଣ୍ଡି ଗ୍ରାମ ।
ନେଇକରି ଦିଅ ମାଗୋ ତୋର ସର୍ବ ଧର୍ମ ॥
ଶୁଣିକରି ସୁନ୍ଦରୀ ଯେ ଅସମ୍ମତ ହେଲା ।
ଏତେ ଧର୍ମ କେଉଁରୂପେ ଦେବି ବୋଇଲା ॥
ପାତ୍ରମିତ୍ର ଆଦିକରି କହନ୍ତେ ବୁଝାଇ ।
ସୁନ୍ଦରୀ କହିଲା ତେବେ ଅଧେ ଦେବି ମୁହିଁ ॥
ଶୁଣିଣ ବ୍ରହ୍ମରାକ୍ଷସେ କହିଲେ ନୃପତି ।
ଅଧେ ଧର୍ମ ଦେବ ବୋଲି ବୋଲଇ ଯୁବତୀ ॥
ବ୍ରହ୍ମରାକ୍ଷସ ବୋଇଲା ଆହେ ରାଜା ଶୁଣ ।
ସନ୍ତୋଷେ ଧନ ଦେଇଣ ସେ ଅଧିକ କିଣ ॥
ସମ୍ମତ କରାଇ ଲେଖ ଦେଇ ତାକୁ ପୁଣି ।
ମୋ ଆଗେ କହିଲେ ମୁହିଁ ଯିବି ଏହିକ୍ଷଣି ॥
ନରପତି ଜଣାଇଲା ଯୁବତି ଆଗର ।
ରାଣୀ କଷ୍ଟ ପାଉଛନ୍ତି ତାହାଙ୍କ ଉଦ୍ଧାର ॥
ତୁମ୍ଭେ ଏବେ ଦୁଇସସ୍ର ଟଙ୍କାରେ ଦ୍ୱିଗ୍ରାମ ।
ନେଇଣ ସନ୍ତୋଷେ ଦିଅ ତୁମ୍ଭ ଅଧେ ଧର୍ମ ॥
ଶୁଣିଣ ସୁନ୍ଦରୀ ତାହା ସନମତ କଲା ।
ତମ୍ବାପଟ୍ଟା ଲେଖି ରାଜା ଯୁବତିକି ଦେଲା ॥
ତମ୍ବାପଟ୍ଟା ହାତେ ଧରି ବୋଲଇ ଯୁବତୀ ।
ସନ୍ତୋଷରେ ଅଧେ ଧର୍ମ ଦେଲି ହେ ନୃପତି ॥
ଏତେ ବୋଲି ତମ୍ବାପଟ୍ଟା ହସ୍ତରେ ଧରିଲା ।
ଅଧେ ଧର୍ମ ଦେଇ ତହୁଁ ନିଜଘର ଗଲା ॥
ବ୍ରହ୍ମରାକ୍ଷସ ରାଣୀର ଦେହେଁ ଥିଲା ରହି ।
ରାଜା ବୋଲେ ନିଅ ଏବେ ଧର୍ମ କିଣିଲଇଁ ॥
ଧର୍ମ ପାଇଣ ରାକ୍ଷସ ହୋଇଲା ସନ୍ତୋଷ ।
ଏକ ରଡ଼ିରେ କମ୍ପାଇ ଦେଲା ସେହି ଦେଶ ॥
ମୋକ୍ଷ ହୋଇ ବ୍ରହ୍ମଦୂତ ସ୍ୱର୍ଗକୁ ଚଳିଲା ।
ଯେଣୁ ସେ ଅନ୍ନଦାନର ସୁକୃତ ପାଇଲା ॥
ତୁ ଯାହା ପୃଚ୍ଛିଲୁ ମନ ଶୁଣିଲୁ ସକଳ ।
ଅର୍ଦ୍ଧେକ ଧର୍ମରେ ଦୈତ୍ୟ ଗଲା ସ୍ୱର୍ଗଆଳ ॥
ଭୋକିଲୋକ ଦେଖିଲେ ତୁ ନାହିଁ ନ କରିବୁ ।
ଶକ୍ୟଅନୁକ୍ରମେ ଯାହା ଥିବ ତାହା ଦେବୁ ॥
ଶୁଣିଣ ସୁମନମନ ସନ୍ତୁଷ୍ଟ ହୋଇଲା ।
ଅନ୍ନଦାନେ ଏତେ ପୁଣ୍ୟ ଜାଣିଲି ବୋଇଲା ॥
ଗୋଟିଏ ଲୋକକୁ ଅନ୍ନ ଦେଇଥିଲା ସେହି ।
ତହିଁରୁ ଅର୍ଦ୍ଧେକ ଧର୍ମ ସେ ରାକ୍ଷସ ନେଇ ॥
ମୋକ୍ଷ ହୋଇ ଗଲା ବୋଲି କହିଲ ଆପଣ ।
ମୁହିଁ ଯେବେ ଦେବି ପାର୍ଥୀଜଣଙ୍କୁ ଭୋଜନ ॥
ତେବେତ ମୋହର ହେବ ବହୁତର ପୁଣ୍ୟ ।
ନିଶ୍ଚିନ୍ତ ହୋଇ ବସିବି ଯାଇଁ ସ୍ୱର୍ଗଧାମ ॥
ଚଇତନ ବୋଇଲେ ହୋ ଏମନ୍ତ ନୁହଇ ।
ମୁଁ ଯାହା କହୁଛି ଶୁଣ ସାବଧାନ ହୋଇ ॥

ବଣିଜାରି ଯେ ବାଣିଜ୍ୟ କରେ ସର୍ବକାଳେ ।
ସମସ୍ତେ ଲାଭ ନୋହିଲେ ମୂଳେ ମୂଳେ ମିଳେ ॥
ଯେହୁ ସର୍ବଦାକାଳରେ ବାଣିଜ୍ୟ କରଇ ।
ତାହାର ଯେ କେତେ ଧନ କଳନା ନୁହଇ ॥
ମହାଜନ ବୋଲି ତାକୁ ସଭିଏ ବୋଲନ୍ତି ।
ଯେଣୁ ତାହାଠାରୁ ଋଣ ସମସ୍ତେ କରନ୍ତି ॥
ତେମନ୍ତ ପରକାରରେ ଜୀବେ ଦୟା ବହି ।
ମାଗିଲେ ତୁ ଦେଉଥିବୁ ନ କରିବୁ ନାହିଁ ॥
ତେବେ ସିନା ଜଗତରେ ହୋଇବୁ ବିଖ୍ୟାତ ।
ତା ଶୁଣି ଆସିବେ ଦୂରଦେଶୁ ଅଭ୍ୟାଗତ ॥
କେ ଦିନେ ବା ଦୁଇଦିନ ଉପବାସେ ଥିବ ।
ସେ ଲୋକ ଯେବେଳ ତୋତେ ଭୋଜନ ମାଗିବ ।
ଶୁଣିବାମାତ୍ରେ ତାହାକୁ ଅନ୍ନ ଦେଲେ ତୁହି ।
ତହିଁର ଯେତେ ସୁକୃତ କେ ପାରିବ କହି ॥
ବିଧାତା ଜାଣନ୍ତି ତାହା ନ ଜାଣନ୍ତି ଆନ ।
ସବୁ ଧର୍ମରୁ ଅଧିକ ଜାଣ ଅନ୍ନଦାନ ॥
କ୍ଷୁଧାର୍ତ୍ତ ହୋଇଣ କେହି ଅଇଲେ ତୋ ପାଶ ।
ତାକୁ ଭୋଜନ ଦେବୁ ନ କରିବୁ ନିରାଶ ॥
ଅଢାଏ ଚାଉଳ ଦେଲେ ମାଣିକ ସୁକୃତ ।
ଅବଶ୍ୟ ପରଲୋକରେ ହୁଏ ପରାପତ ॥
ଏମନ୍ତ ପ୍ରକାରେ ଯେବେ କରୁ ସର୍ବକାଳ ।
ତେବେ ନିଶ୍ଚୟ ପାଇବୁ ଅନ୍ନଦାନ ଫଳ ॥
ଯେତେ ପ୍ରକାରେ ସୁକୃତ କରନ୍ତି ନନା ସେହି ।
ଅନ୍ନଦାନରେ ନିଶ୍ଚେ ସେ ବଇକୁଣ୍ଠ ପାଇ ॥
ତାହାଠାରେ ବିଷ୍ଣୁଙ୍କର ଥାଏ ଦୟାଚିତ୍ତ ।
ଅନୁଗ୍ରହ କରିଥାନ୍ତି ଅନ୍ନପୂର୍ଣ୍ଣା ମାତ ॥
ଜୀବନ୍ତେ ଅନ୍ନକଷ୍ଟ ନ ପାଏ କେତେବେଳେ ।
ଦେହାନ୍ତେ ବସଇ ଯାଇ ସେହି ବିଷ୍ଣୁ ଆଳେ ॥
ଅତିଥିଙ୍କୁ ଆରାଧନା କରେ ଯେଉଁ ନର ।
କହଇ ମାଧବ ମୁହିଁ ତାଙ୍କର କିଙ୍କର ॥



ବିରୂପାକ୍ଷ ଶବରର ମୁକ୍ତି ।

ଶୁଣିଣ ସୁମନବାର ବୋଲଇ ଯଥାର୍ଥ ।
ତୁମ୍ଭେ ଯାହା କହିଲ ଏ କଥା ଅଟଇ ସତ ॥
ଏହିପରି କହ ମୋତେ ଦୁଇ ଚାରି କଥା ।
ଶୁଣିଥିଲେ କହିବ ହୋ ନ କହିବ ମିଥ୍ୟା ॥
ଚନ୍ଦନ ବୋଇଲେ ନ କହୁଁ ଆମ୍ଭେ ମିଛ ।
ଦେଖିଲା କଥା କହିବୁଁ ଶୁଣାକଥା ମିଛ ॥
ମନୋଯୋଗ କରି ତୁହି ଶୁଣ ହୋ ସୁମନ ।
ଆମ୍ଭରି କହିବା ଅନ୍ନଦାନ ବିବରଣ ॥
ବିରୂପାକ୍ଷ ନାମେ ଥିଲା ଗୋଟିଏ ଶବର ।
ଅରଣ୍ୟଭିତରେ ସେହୁ କରିଥାଏ ଘର ॥
ତାର ଘରିଯାର ନାମ ଅଟଇ କେତକୀ ।
ଏ ଦୁହେଁ ପ୍ରତିପୋଷଣ ହୋନ୍ତି କାଠ ବିକି ॥
ଏମନ୍ତ ହୋଇଣ ତହିଁ ଗଲା କେତେଦିନ ।
ଗଙ୍ଗାସ୍ନାନେ ଯାଉଥିଲେ ବିପ୍ର ପାନ୍ଥିଜଣ ॥
ବାଟରେ ଯାଆନ୍ତେ ସେହୁ ବ୍ୟାଘ୍ର ଭୟ ପାଇ ।
ପଳାଇଗଲେ ସକଳେ ଛିନ୍ନଭିନ୍ନ ହୋଇ ॥
ତହିଁରୁ ଏକ ବ୍ରାହ୍ମଣ ବଣା ହୋଇ ଗଲା ।
ତିନିଦିବସେ ଶବରପଲ୍ଲିରେ ମିଳିଲା ॥
ଶବର ମୁଖ ଚାହିଁଣ ବୋଲେ ସେ ବ୍ରାହ୍ମଣ ।
ତିନିଦିନ ହେଲା ଉପବାସେ ଅଛି ଜାଣ ॥
ଯେବେ ତଣ୍ଡୁଳ ଅଢାଏ ମୋତେ ତୁହି ଦେବୁ ।
ତେବେ ଯେ ମୋହର ତୁହି ଜୀବନ ରଖିବୁ ॥
ସେ ଦିନ ସେ ଆଣିଥିଲେ ଅଢାଏ ଚାଉଳ ।
ଦେଲେ ଉପାସେ ରହିବା କଥା ତାଙ୍କ ମୂଳ ॥
ଶୁଣି ଭାର୍ଯ୍ୟାକୁ ଶବର ବୋଇଲାକ ଶୁଣ ।
ତିନିଦିନ ଉପବାସେ ଅଛଇ ବ୍ରାହ୍ମଣ ॥
ତଣ୍ଡୁଳ ଅଢାକ ଆମ୍ଭେ ବ୍ରାହ୍ମଣକୁ ଦେବା ।
ଆମ୍ଭେ ପଛକେ ଉପାସେ ଆଜକ ରହିବା ॥
ଆମ୍ଭେ କାଲି ଦୁଇବେଳ ଅନ୍ନ ଅଛୁ ଖାଇ ।
ତିନିଦିନ ଉପବାସେ ବ୍ରାହ୍ମଣ ଅଛି ॥
ଦିନେ ଉପାସେ ରହିଲେ ଲଭ ବଡ କଷ୍ଟ ।
ତିନିଦିନେ ହେଉଥିବ ସେହି ଛଟପଟ ॥
ଏହା ଶୁଣି ଶବରୁଣୀ ବୋଲେ ଦେବ ନାହିଁ ।
ମୁହିଁ ଭୋକରେ ରହିଣ ଦେବ କାହିଁପାଇଁ ॥
ଶୁଣିଣ ସେ ବ୍ରାହ୍ମଣର ବ୍ୟସ୍ତ ହେଲା ମନ ।
ନିଶ୍ଚୟ ମୋ ପ୍ରାଣଗଲା ନ ମିଳିଲା ଅନ୍ନ ॥
ପୁଣି ଶବର ତଣ୍ଡୁଳ ବେନିଭାଗ କଲା ।
ଆପଣା ଭାଗକ ନେଇ ବ୍ରାହ୍ମଣାକୁ ଦେଲା ॥
ତେତେକ ନେଇ ବ୍ରାହ୍ମଣ କଲାକ ରନ୍ଧନ ।
ଭୋଜନ କରନ୍ତେ ତାର ସୁସ୍ଥ ହେଲା ପ୍ରାଣ ॥

ଘରଣୀ ତାହାର ଯେଉଁ ଭାଗଟିକ ନେଲା ।
ଗେରସ୍ତଙ୍କୁ ନ ଦେଇଣ ଏକାକେ ଖାଇଲା ॥
ସେଦିନ ଉପବାସରେ ରହିଲା ଶବର ।
ଆତ୍ମାର ବୋଧ ନିମନ୍ତେ ଇଚ୍ଛିଲାକ ନୀର ॥
ବ୍ରାହ୍ମଣ ବୋଇଲେ ଶବର ମୁଖକୁ ଅନାଇଁ ।
କେଉଁବାଟେ ଯିବ ମୁହିଁ ଦିଅ ପଥ କହି ॥
ଶୁଣିଣ ଶବର ତାଙ୍କୁ ସଙ୍ଗେ ଘେନିଗଲା ।
ମାର୍ଗ ଦେଖାଇ ଦେଇଣ ବାହୁଡ଼ି ଆଇଲା ॥
କଲ୍ୟାଣ କରିଣ ତାଙ୍କୁ ଗଲେ ଦ୍ୱିଜବର ।
ଏ ଉତ୍ତାରୁ ଯାହା ହେଲା ଶୁଣ ମନବୀର ॥
ଏକଦିନେ ସେ ଶବର ଶବରୁଣୀ ଦୁଇ ।
ବନସ୍ତକୁ ଯାଇଥିଲେ କାଠ କାଷ୍ଠା ପାଇଁ ॥
ସେ ବନଭିତରେ ଦୁଷ୍ଟ ବ୍ୟାଘ୍ର ଏକ ଥିଲା ।
ଦୁହିଙ୍କି ଏକା ବେଳକେ ମାରି ପକାଇଲା ॥
ସେହିକ୍ଷଣେ ଯମଦୂତେ ତାଙ୍କୁ ଘେନିଗଲେ ।
ସଞ୍ଜୀବନୀ ପୁରେ ନେଇ ପ୍ରବେଶ କରିଲେ ॥
ତାଙ୍କୁ ଦେଖି ଜନ୍ତୁପତି ବୋଇଲେ ବଚନ ।
କହ ମନ୍ତ୍ରୀ ଏହାଙ୍କର କେତେ ପାପ ପୁଣ୍ୟ ॥
ଚିତ୍ରଗୁପ୍ତ ବୋଇଲା ଆହେ ରାଜା ଶୁଣ ।
ତନ୍ନଦିନ ଉପବାସେ ଏକଇ ବ୍ରାହ୍ମଣ ॥
ଏହାଙ୍କର ଗୃହରେ ସେ ପହୁଞ୍ଚିଲା ଯାଇଁ ।
କ୍ଷୁଧାର୍ତ୍ତ ଥିବାରୁ ଅନ୍ନ ମାଗିଲାକ ସେହି ॥
ସେଦିନ ଏ ଆଣିଥିଲେ ଅଢ଼ାଏ ଚାଉଳ ।
ଭାରିଯାକୁ ଚାହିଁକରି ବୋଇଲା ଶବର ॥
ଏ ଅଢ଼ାକ ଚାଉଳ ଗୋ ବ୍ରାହ୍ମଣଙ୍କୁ ଦେବା ।
ଆମ୍ଭେ ଦୁହେଁ ଉପବାସେ ଆଜକ ରହିବା ॥
ଶୁଣିଣ ଏ ଶବରୁଣୀ ନ ଦେବ ବୋଇଲା ।
ତର୍ଜ୍ଜିକରି ଶବର ତା ବେନିଭାଗ କଲା ॥
ଶବରୁଣୀ ଭାଗଟିକ ଶବରୁଣୀ ନେଇ ।
ଏ ଶବର ନିଜଭାଗ ବିପ୍ରେ ଅଛି ଦେଇ ॥
ଏ ଧର୍ମରୁ ଆନ ଧର୍ମ କିଛି କରି ନାହିଁ ।
ଏଥକୁ ବିଚାର ତୁମ୍ଭେ କର ଜନ୍ତୁସାଇଁ ॥
ଶୁଣିକରି ଜନ୍ତୁପତି ଆନନ୍ଦିତ ମନ ।
ବୋଇଲେ କେ ଅନ୍ତ କରିବ ଶବରର ପୁଣ୍ୟ ॥
ସିଦ୍ଧବୃକ୍ଷ ନାମେ ଅଛି ଏକଇ ନଗର ।
ରଘୁନାଥ ନାମେ ଅଛି ତହିଁ ଦଣ୍ଡଧର ॥

ପଦ୍ମାବତୀ ନାମ ଅଟେ ତାର ପାଟରାଣୀ ।
ଅତ୍ୟନ୍ତ ସୁନ୍ଦରୀ ସେହୁ ଗୁଣରୁ ସୁଲକ୍ଷଣୀ ॥
ତାର ଗର୍ଭେ ଶବରକୁ ନେଇ ଜାତକର ।
ବଡ଼ ଧାର୍ମିକ ଅଟଇ ସେହି ନୃପବର ॥
ପୁତ୍ର ନ ହେବାରୁ ସେହି ଭାଳେ ରାତ୍ରଦିନ ।
ଏହି ଶବର ହେଉ ଯେ ତାହାର ନନ୍ଦନ ॥
ବଳେ ବଳୀୟାର ହେବ ରୂପରେ ସୁନ୍ଦର ।
ସେ ଦେଶର ରାଜା ହେବ ସଂଗ୍ରାମରେ ଶୂର ॥
ନିଷ୍କଣ୍ଟକେ ଏ କରିବ ଭୋଗ ସେହି ରାଜ୍ୟ ।
ଅରିକୁଳ ସମୂଳେ କରିବ ଦହ୍ୱଯ୍ୟ ॥
କୁବେର ସମାନ ଏହୁ ହେବ ଧନେଶ୍ୱର ।
ବୁଦ୍ଧିରେ ଯେ ବୃହସ୍ପତି ଦାନେ ହେବ ଶୂର ॥
ସହିବାପଣେ ଧରଣୀ ଧଇର୍ଯ୍ୟେ ମେରୁ ।
ଏତେକ ଫଳ ପାଇବ ସେ ଅନ୍ନଦାନରୁ ॥
ସେହି ରାଜାଙ୍କର ବାଡ଼ଚାଟି ଯେ ଅଟଇ ।
କାନ୍ତିନାମେ ଶଙ୍କର ଯେ ତାହାର ଅଛଇ ॥
ଏହି ଶବରୁଣୀକି ତା ଗର୍ଭେ ଜାତକର ।
ଏହି ସେ ମହାପାତକୀ ଅଟେ ସ୍ତ୍ରୀ ଶରୀର ॥
ଏହା ଶୁଣି କରଯୋଡ଼ ବୋଲଇ ଶବର ।
ହେ ପ୍ରଭୁ କହିବ କିଛି ତାହା ଘେନାକର ॥
ଏ ଜନ୍ମର କଥା ଆରଜନ୍ମେ ମନେ ଥିବ ।
ସୁଦୟା ଚିତ୍ତରେ ମୋତେ ଏହି ଆଜ୍ଞା ହେବ ॥
ଶୁଣିକରି ନାଶକର ବୋଇଲେ ତା ହେଉ ।
ତୋର ଜନ୍ମକଥା ଆରଜନ୍ମେ ମନେ ରହୁ ॥
ଯେଉଁ ଅନୁରୂପେ ଆଜ୍ଞା ଦେଲେ ନାଶକର ।
ସେହି ଅନୁରୂପେ ଜନ୍ମ ଲଭିଲା ଶବର ॥
ଘରଣୀ ତାର ପାଇଲା ଘୁଷୁରି ଜନମ ।
ଅନ୍ନଦାନର ଏପରି ଅଛଇ ମହାତ୍ମ୍ୟ ॥
ସେ ପୁତ୍ରର ଯୁବାକାଳ ହୋଇଲା ପ୍ରବେଶ ।
ପିତାଅନ୍ତେ ସେ ରାଜ୍ୟରେ ହେଲା ସେ ନରେଶ ॥
ଯେଉଁ ପରକାରେ କହିଥିଲେ ଜନ୍ତୁପତି ।
ସେହି ଅନୁସାରେ ହେଲା ଗୁଣବନ୍ତ ଅତି ॥
ଗତଜନ୍ମ କଥା ତାର ଅଛଇ ମନରେ ।
ପ୍ରତିଦିନ ସେ ରାଜନ ସେକଥା ବିଚାରେ ॥
ଅଢ଼ାଏ ଚାଉଳ ମୁଁ ଯେ ବ୍ରାହ୍ମଣକୁ ଦେଲି ।
ସେହି ସୁକୃତରୁ ଏବେ ନୃପତି ହୋଇଲି ॥

ଏତେବଡ ଧନ ଭଣ୍ଡାରେ ଅଛଇ ବହୁତ ।
ସହସ୍ରେ ବ୍ରାହ୍ମଣ ମୁହିଁ ଭୁଞ୍ଜାଇବି ନିତ୍ୟ ॥
ତେଣୁ ବହୁତ ସୁକୃତ ହୋଇବ ମୋହର ।
ସେହିଫଳେ ପାଇବି ମୁଁ ସ୍ୱର୍ଗ ଅଧିକାର ॥
ଏତେଭଳି ସହସ୍ରେକ ବିପ୍ର ନିତି ଗଲେ ।
ଘୃତ ପକ୍ୱ ପିଠାକରି ଭୋଜନ ଦିଅଇ ॥
ଏହିପରି ଛଅମାସ ତାଙ୍କୁ ଭୋଜି ଦେଲା ।
ତହିଁ ଉତ୍ତାରୁ ଦିନେକ ଏହା ପଚାରିଲା ॥
ବୋଇଲା ଆହେ ଗୋସାଇଁ ତୁମ୍ଭେମାନେ ଶୁଣ ।
ତେତେକକୁ ଏତେ ଏତେକକୁ କେତେ ପୁଣ ॥
ଶୁଣିଣ ବ୍ରାହ୍ମଣମାନେ ନ ପାରନ୍ତି କହି ।
ପ୍ରତିଦିନ ସେ ରାଜନ ତାଙ୍କୁ ପଚାରଇ ॥
ତେତେକକୁ ଏତେ ଏତେକକୁ କେତେ କହି ।
ଶୁଣି ବିପ୍ର ମାନଙ୍କର କଷ୍ଟମାନ ଦେହି ॥
ନାନା ଦେଶୁ ଆଣିକରି ନାନା ଶାସ୍ତ୍ରମାନ ।
ପଢିଣ ଖୋଜନ୍ତି ରାଜା ପ୍ରଶ୍ନ ପ୍ରତିଦିନ ॥
ତେତେକକୁ ଏତେ ଏତେକକୁ କେତେ ବୋଲି ।
ନାନାବିଧ ଶାସ୍ତ୍ର ଖୋଜନ୍ତି ବିଚେଜ୍ୟ ବୁଲି ବୁଲି ॥
କାହିଁରେ ସେ ନ ପାଇଲେ କହିଲେ ଯା ରାଜା ।
ତେଣୁକରି ସର୍ବ ବିପ୍ରେ ପାଇଲେକ ଲଜ୍ଜା ॥
ପୁଣିହିଁ ଆଉଦିନେ ସେ ଦେଇଣ ଭୋଜନ ।
ବୋଇଲା କିପାଁ ନ କହ ପୁଚ୍ଛିଲି ଯେ ପ୍ରଶ୍ନ ॥
ତେତେକକୁ ଏତେ ଏତେକକୁ କେତେ କହ ।
ନ କହିଲେ ମୋ ରାଜ୍ୟରୁ ତୁମ୍ଭେମାନେ ଯାଅ ॥
ଆଜ ଯାଅ ବିପ୍ରମାନେ କହିବ ଯେ କାଲି ।
ସକଳ ବ୍ରାହ୍ମଣେ ଯାଇଁ ହୋଇଲେ ଏକମେଳି ॥
ବୋଇଲେ ଆମ୍ଭେ ଆଉ ନ ଯିବା ରାଜାଦ୍ୱାର ।
ଯେବେ ଆମ୍ଭ ବାଞ୍ଛା ପୂର୍ଣ୍ଣ କରିବେ ଶ୍ରୀଧର ॥
ତେବେ ଯାଇ ଏ ବିଷୟ ନୃପେ ବୁଝାଇବା ।
ନୋହିଲେ ଏ ରାଜ୍ୟ ସର୍ବେ ପଳାଇଣ ଯିବା ॥
ଏତେ ବୋଲିଣ ବିଷ୍ଣୁଙ୍କୁ ସର୍ବେ କଲେ ଧ୍ୟାନ ।
ଅନ୍ତର୍ଯ୍ୟାମୀ ଜାଣିଲେ ଯେ ବିପ୍ରଙ୍କର ମନ ॥
ବୃଦ୍ଧ ବିପ୍ର ସ୍ୱରୂପରେ ପ୍ରବେଶିଲେ ତହିଁ ।
ବିପ୍ରଙ୍କୁ ବୋଇଲେ କିସ ଭଲ ରୁଣ୍ଡହୋଇ ॥
ବ୍ରାହ୍ମଣେ ବୋଇଲେ ଶୁଣ ହେ ବୃଦ୍ଧ ଆପଣ ।
ଆମ୍ଭଙ୍କୁ ପ୍ରତ୍ୟହ ପୁଚ୍ଛେ ଏ ଦେଶରାଜନ ॥
ତେତେକକୁ ଏତେ ଏତେକକୁ କେତେ କହ ।
କହି ନ ପାରିଲେ ମୋର ରାଜ୍ୟ ସର୍ବେ ଯାଅ ॥
ପ୍ରତ୍ୟହ ସହସ୍ର ବ୍ରାହ୍ମଣ ଭୋଜନ ସେ ଦେଇ ।
ତା ନିତ୍ୟରୁ ଏହି କଥାଟିକ ପଚାରଇ ॥
ତେଣୁକରି ଆମ୍ଭଙ୍କ ସେ ପଡୁଛି ବିପତ୍ତି ।
ଦେଖେ ରହିବା ବୁଦ୍ଧି ର କଲେ ଦାଶରଥି ॥
ଆତଙ୍କ ନାଶନ ବାନା ବହିଛନ୍ତି ସେହି ।
ସେପ୍ରଭୁ ଆମ୍ଭଙ୍କ ଏଥୁ କରିବେକ ତ୍ରାହି ॥
ତାଙ୍କୁ ଆମ୍ଭେ ସୁମରଣା କରୁଅଛୁଁ ବସି ।
ଯାହା କରିବେ କରନ୍ତୁ ସେ ବୈକୁଣ୍ଠବାସୀ ॥
ଆରତନାଶନ ବାନା ଉଡଇ ତାଙ୍କର ।
ସେହି ସେ ଏହି ସଙ୍କଟୁ କରିବେ ଉଦ୍ଧାର ॥
ଆପଣ କାହୁଁ ଅଇଲେ କେଉଁଠାରେ ଘର ।
ଜାଣିଥିଲେ ଏ କଥାର ଦିଅନ୍ତୁ ଉତ୍ତର ॥
ମାୟାବୀ ବିପ୍ର ବୋଇଲେ ନ ଭଲ ହେ କେହି ।
ରାଜାର ଏହି ପ୍ରଶ୍ନଟି ଦେବୁଁ ଆମ୍ଭେ କହି ॥
ଶୁଣିଣ ବ୍ରାହ୍ମଣମାନେ ଆନନ୍ଦ ଅପାର ।
ସକଳ ବିପ୍ର ତାହାଙ୍କୁ କଲେ ନମସ୍କାର ॥
ଆଦର କରିଣ ତାଙ୍କୁ ମନ୍ଦିରେ ରଖିଲେ ।
ଆରଦିନ ସଙ୍ଗେ ନେଇ ରାଜାପାଶେ ଗଲେ ॥
ମାୟା ବିପ୍ରଙ୍କୁ ବସାଇ ସର୍ବ ପ୍ରଥମରେ ।
ସକଳ ବିପ୍ର ବସିଲେ ତାହାଙ୍କ ଉତ୍ତାରେ ॥
ଧାଡିକ ଧାଡି ବସନ୍ତେ ଭୋଜନ ନିମନ୍ତେ ।
ନାନା ପିଠା ପରଷିଲେ କରିଥିଲେ ଯେତେ ॥
ଭୋଜନ ଅନ୍ତେ ସକଳେ ଆଚମନ କଲେ ।
ଏକଠାବେ ବସି ପାନ ଚନ୍ଦନ ସେବିଲେ ॥
ଏମନ୍ତ ସମୟେ ଆସି ମିଳିଲା ରାଜନ ।
ବୋଇଲା ବ୍ରାହ୍ମଣମାନେ କଲତ ଭୋଜନ ॥
ମୋହର ବିଷୟ ଆଜ କହିଲେ ଛାଡିବି ।
ତେତେକୁ ଯାହେଲ ଏତେକକୁ କେତେ ହେବ
ମାୟାବିପ୍ର ବୋଇଲେକ ରାଜା ମୁଖ ଚାହିଁ ।
ତେତେକୁ ସ୍ୱ ହେଲୁ ଏତେକକୁ କହନାହିଁ ॥
ଶୁଣିକରି ନରପତି ତାଙ୍କ ପାଦେ ପଡି ।
ଉଠି ଉଭାହୋଇଲା ଶିରେ ବେନିକର ଯୋଡି ॥
ପ୍ରଭୁଙ୍କୁ ବିନୟେ ଡାକି ତହୁଁ ଘେନିଗଲା ।
ସୁବର୍ଣ୍ଣ ଆସନପରେ ନେଇ ବସାଇଲା ॥

ବେଣ୍ଣକର ଯୋଡ଼ି ତାଙ୍କ ପଗ୍ରରେ ନରେଶ ।
କପଟ ଜାଣିଲ ଏହା କହ ଦପ୍ରଶ୍ନ ॥
କେତେକଙ୍କୁ ସ୍ୱା ହେଲ ଏତେକଙ୍କୁ କିଛି ନାହିଁ ।
ଏଥିର ବାରତ ମୋତେ କହନ୍ତୁ ବୁଝାଇ ॥
ଗୋବିନ୍ଦ ବୋଇଲେ ତୁହି ଶୁଣ ନୃପବର ।
ପୂର୍ବଜନ୍ମ ଜାତରେ ତୁ ଥିଲୁ ହୋ ଶବର ॥
ଏକ ବ୍ରାହ୍ମଣକୁ ତୁହି ଅନ୍ନଦାନ ଦେଲୁ ।
ସେହି ପୁଣ୍ୟେ ଏବେ ତୁହି ନୃପତି ହୋଇଲୁ ॥
ବର୍ତ୍ତମାନ ଦ୍ରୋହକର୍ମ କରୁଛୁ ରାଜନ ।
ପରଜାଙ୍କଠାରୁ ସିନା ଆଣୁଅଛୁ ଧନ ॥
ସେହି ଧନେ ତୁହି ନାନା ଭୋଗ କରୁଅଛୁ ।
ନିତ୍ୟ ସହସ୍ର ବ୍ରାହ୍ମଣ ଭୋଜନ ଦେଉଛୁ ॥
କେଉଁକଥାରେ ତୋହର ହୋଇଅଛି ଊଣା ।
ଯେ ଧର୍ମକୁ ଏ ଧରମ କାହିଁ ହେବ ଜଣା ॥
ଅନେକ କଷ୍ଟରେ ତୁହି କାଠଭାର ନେଇ ।
ତାହାକୁ ବିକ୍ରୟ କଲୁ ଗ୍ରାମରେ ବୁଲଇ ॥
ତେବେ ମୁଖେ ପଡ଼ିଥିଲ ତୋ ମୁଣ୍ଡର ଝାଳ ।
ସେହି ଧନେ ଆଣିଥିଲୁ ଅଢ଼ାଏ ଚାଉଳ ॥
ଏ ସମୟେ ତଣ୍ଡୁଦନ ଉପବାସେ ପୁଣ ।
ତୋ ଘରେ ମିଳିଲ ଆସି ଏକଇ ବ୍ରାହ୍ମଣ ॥
ଭୋଜନ ମାଗନ୍ତେ ତାକୁ ତୁହି ନାସ୍ତି କଲୁ ।
ଭାରିଯା ଆଗେ ବ୍ରାହ୍ମଣ ବିଷୟ କହିଲୁ ॥
ଶୁଣି ଭାରିଯା ଦେବାକୁ ନାହିଁ ନାହିଁ କଲା ।
ବେଣ୍ଣଭାଗ କରି ନିଜଭାଗକୁ ରଖିଲା ॥
ତୋ ଭାଗ ତଣ୍ଡୁଳ ଦ୍ୱିଜେ ଦେଲୁ କୃପା ବହି ।
ସନ୍ତୁଷ୍ଟ ହୋଇଲ ବିପ୍ର ତାହା ରାନ୍ଧି ଖାଇ ॥
ତେଣୁକରି ଧର୍ମ ତୋର ହୋଇଲା ଅପାର ।
ସେହି ପୁଣ୍ୟରୁ ହୋଇଲୁ ତୁହି ନୃପବର ॥
ଭାରିଯା ତୋର ଘୁଷୁରି ଜନମ ଲଭିଲା ।
ତୋତେ ରାଜା ଏତେ ଶିରୀ ପ୍ରାପତ ହୋଇଲା ॥
ଶୁଣିକରି ନରବର ହୋଇଲ ସନ୍ତୋଷ ।
ବିପ୍ରମାନଙ୍କୁ ଅନେକ ଦେଲା ଧନ ବାସ ॥
ସନ୍ତୁଷ୍ଟ ହୋଇଣ ସର୍ବ ବିପ୍ର ଚଳିଗଲେ ।
ଅନ୍ତର୍ଯାମୀ ନାଥ ତହୁଁ ଅନ୍ତର ହୋଇଲେ ॥
ସେହି ଦିନଠାରୁ ରାଜା କାହାକୁ ନ ପୁଛି ।
ବିପ୍ରଙ୍କୁ ଭୋଜନ ସଦା ଦିଏ ଯାଚି ଯାଚି ॥

ଏହା ଶୁଣି ସୁମନ ଯେ ସନ୍ତୁଷ୍ଟ ମନରେ ।
ବୋଇଲେ ଅନ୍ନଦାନ ସାର ଅଟେ ଏ ସଂସାରେ ॥
ଚୈତନ୍ୟ ବୋଇଲେ ହେ ଜଳ ଅନ୍ନଦାନ ଦୁଇ ।
ଜଗତେ ଏଥିରୁ ବଳି ଧର୍ମ ଆଉ ନାହିଁ ॥
ଜ୍ଞାନେ ବା ଅଜ୍ଞାନେ ଯେହୁ ଭଜେ କୃଷ୍ଣନାମ ।
ଏ ତିନିକଥାଙ୍କୁ ମନ କେହି ନାହିଁ ସମ ॥
ଜାଣି ନ ଜାଣି ଯେ ଜନ ଏହିକଥା କରି ।
ଏଥିକୁ ଯଜ୍ଞଧର୍ମ ଯେ ନୋହେ ସମସରି ॥
ଗୃହସ୍ଥ ଧର୍ମରେ ଥାଇ ଯେ ଏହା କରଇ ।
କେତେବେଳେ ଅମଙ୍ଗଳ ତାହାର ନୁହଇ ॥
ଜୀଅନ୍ତେ ଐଶ୍ୱର୍ଯ୍ୟ ଭୋଗ ମଲେ ସ୍ୱର୍ଗବାସ ।
କିଅବା ବୈକୁଣ୍ଠପୁରେ କରଇ ଆବାସ ॥
ସେ ଲୋକଙ୍କୁ ଅନୁଗ୍ରହ କରନ୍ତି ଶ୍ରୀହରି ।
ତାହାର କଣ୍ଠରୁ କେଭେ ନ ଛୁଟଇ ଶିରୀ ॥
ଜନ୍ମେ ଜନ୍ମେ ତାହାକୁ ନ ଥାଏ ଆଉ ଦୁଃଖ ।
ଯେଣୁ ସୁଦୟା କରନ୍ତି ତାକୁ ପଦ୍ମମୁଖ ॥
ତେଣୁକରି ତାହାକୁ ଯେ ଧର୍ମ ନ ଛାଡ଼ଇ ।
ସବୁବେଳରେ ତାହାର ଧର୍ମେ ମତି ଥାଇ ॥
ଶ୍ରୀହରି ଚରଣ ତଳେ ରଖି ପଥି ମନ ।
ମାଧବ ମୋକ୍ଷପୁରାଣ କଲକ ବଖାଣ ॥



## କୃଷ୍ଣଦାସ ଓ ଚନ୍ଦ୍ରକଳାର

## ଉପାଖ୍ୟାନ ।

ମସ୍ତକେ କର ନିବେଶି ସୁମନ ବୋଲଇ ।
ହେ ଚୈତନ୍ୟ କଥାଏକ ପଚାରୁଛି ମୁହିଁ ॥
ଅଜ୍ଞାନେ ତରନ୍ତି କିଏ ଦେଇ ଜଳଦାନ ।
ତାହା ମୋତେ ସଂକ୍ଷେପରେ କୁହ ହେ ଚୈତନ୍ୟ
ତୁମ୍ଭର ମୁଖରୁ ଶୁଣିଲେ ଯିବଇଁ ପରତେ ।
ତୁମ୍ଭ ବିନୁ କହିବାକୁ ଅଛି କେ ଜଗତେ ॥
ତହୁଁ ଚୈତନ୍ୟ କହନ୍ତି ଶୁଣ ହୋ ସୁମନ
କୃଷ୍ଣଦାସ ନାମେ ଥିଲା ଏକଇ ବ୍ରାହ୍ମଣ ॥
ଚନ୍ଦ୍ରକଳା ନାମେ ଅଟେ ତାହାର ଘରଣୀ ।
ନିରନ୍ତରେ ଖଳକଥା ଖୋଜେ ସେ ବ୍ରାହ୍ମଣୀ ॥
ଖଳକଥା ବିନୁ ସେହି ନ ଜାଣଇ ଆନ ।
କର୍ଣ୍ଣରେ ନ ଶୁଣେ କେଭେ ଗୋରସ୍ତ ବଚନ ॥

ଗେରସ୍ତର କଥାଯାକ ସବୁ ତୁଲ୍ୟ ମଣେ ।
ପ୍ରସଅଁଗାଳି ସତକୁ ନିରନ୍ତର ଭଣେ ॥
ସ୍ୱାମିକୁ ଦେଖିଲେ ସଦା ମୁହଁ ମୋଡ଼ି ଥାଇ ।
ବୋଲଇ ନ ମର ବୁଢ଼ା ଜୀଇଛୁ କପାଇଁ ॥
ଏହିପରି ଏକଦିନେ କୌଣସି କଥାରେ ।
କଳହ ଲଗାଇଲା ସେ ଗେରସ୍ତ ସଙ୍ଗରେ ॥
ଅତିଶୟ ଖଳବୁଦ୍ଧି ଅଟଇ ସେ ମୋଢ଼ୀ ।
କୋପେ କୃଷ୍ଣଦାସ ତାକୁ ପିଟେ ଘରି ବାଡ଼ି ॥
ମାଡ଼କୁ ଭୟ କରିଣ ତହୁଁ ପଳାଇଲା ।
ବାଡବାଟେ ଯାଇଣ ସେ ବନସ୍ତେ ପଶିଲା ॥
ଲୁଷିକରି ଖଣ୍ଡଦୂରେ ବସିଲେକ ଯାଇଁ ।
ତାହାକୁ ଆଣିବାପାଇଁ ନ ଗଲେ ଯେ କେହି ॥
ମୁଣ୍ଡପୋଡ଼ଣୀ କାନ୍ଦଇ ଭୁଲି ପିତା ମାତ ।
କାଠିଖଣ୍ଡେ ଧରିଣ ସେ ଖୋଳେ ଏକ ଗାତ ॥
ଖୋଳୁଁ ଖୋଳୁଁ ହୋଇଲା ସେ ଅତ୍ୟନ୍ତ ବିସ୍ତାର ।
ମାଟିକାଢ଼ି ଗାତକୁ ସେ କଲା ଗମ୍ଭୀର ॥
ଏକାଳେ ଗେରସ୍ତ ତାର ଖୋଜି ଖୋଜି ଗଲା ।
ଦୈବଯୋଗେ ଘୋର ବନେ ଯାଇଁଣ ଭେଟିଲା
ବହୁତରୂପେ ପ୍ରବୋଧି କହିଲା ମନାଇ ।
କରଧରି ପୁରକୁ ସେ ଆଣିଲା ଫେରାଇ ॥
ନିଜଗୃହେ ଚଳିଲେକ ତହୁଁ ବେନିଜନ ।
ଏଥୁ ଅନ୍ତେ ଯାହା ହେଲା ଶୁଣ ହୋ ସୁମନ ॥
ଏକେ ମେଷମାସ ପୁଣି ଗ୍ରୀଷମ ବହୁତ ।
ଆକାଶ ମାର୍ଗରେ ମେଘ ଢାଙ୍କିଲା ତୁରିତ ॥
ମୁଷଳଧାର ପରାୟେ ବରଷିଲା ବାରି ।
ବ୍ରାହ୍ମଣୀ ଖୋଳିବା ଗର୍ତ୍ତେ ଜଳଗଲା ପୂରି ॥
ପୂର୍ବରୁ ଶୁଷ୍କ ହୋଇଣ ଥିଲା ଯେ ଧରଣୀ ।
କୌଣସିଠାବରେ ଆଉ ନ ରହିଲା ପାଣି ॥
ଏକାଳେ ବନେ ପଶିଲେ ଯାଇଁ ଗୋରୁପଲ ।
ଆନନ୍ଦେ ଖାଇଲେ ବୁଲି ବୁଲି ପତ୍ର ଡାଳ ॥
ଜଳ ପିଇବା ପାଇଁକି ଦୂରେ ଚଳିଗଲେ ।
କେଉଁଣସି ମତେ କାହିଁ ଜଳ ନ ପାଇଲେ ॥
ସବୁଦିନେ ପିଅନ୍ତି ସେ ଯେଉଁଠାରେ ଜଳ ।
ତହୁଁ ନିରାଶେ ଲେଉଟି ଅଇଲେ ସକଳ ॥
ତୃଷାର ଆରତେ ହେମ୍ବା ରବମାନ ଦେଇ ।
ବଳବନ୍ତ ଗୋରୁମାନେ ଯାନ୍ତି ଆଗ ହୋଇ ॥

ପ୍ରଚଣ୍ଡ ସୂର୍ଯ୍ୟ କିରଣେ ତପତ ଭୂତଳ ।
ଦଶଘଡ଼ି ଆସିଣ ଯେ ହୋଇଲାଣି ବେଳ ॥
ତା ମଧ୍ୟରେ ଏକଗୋଟି ଥିଲା ବୃଦ୍ଧଗାଈ ।
ବିକଳେ ଆସେ ତୃଷାରେ ଆରତ ସେ ହୋଇ ॥
ଚାଲି ନ ପାରଇ ପଥ ଆସେ ଢଳି ଢଳି ।
ବେନି ନୟନରୁ ନୀର ପଡ଼ୁ ଅଛି ଗଳି ॥
ଦୈବଯୋଗେ ବ୍ରାହ୍ମଣୀର ଗର୍ତ୍ତକୁ ଦେଖିଲା ।
ଅର୍ଦ୍ଧକୁମ୍ଭ ହେବ ଜଳ ତହିଁ ରହିଥିଲା ॥
ବେଗ ହୋଇ ଗର୍ତ୍ତମଧ୍ୟୁଁ କଲା ଜଳପାନ ।
ପିଇବା ମାତ୍ରକେ ତାର ସୁସ୍ଥ ହେଲା ପ୍ରାଣ ॥
ସନ୍ତୋଷ ହୋଇ ଶୋଇଲା ଯାଇଁ ଛାଇତଳେ ।
ଗ୍ରାମକୁ ଫେରି ଅଇଲା ପୁଣି କେତେବେଳେ ॥
ଏଣେ ବ୍ରାହ୍ମଣୀ ସମୟେ ଲଭିଲା ପଞ୍ଚତ୍ୱ ।
ତାକୁ ଧରି ଘେନିଗଲେ ଆସି ଯମଦୂତ ॥
ପତିଦ୍ରୋହୀ ବୋଲି ତାକୁ ବହୁତ ଦଣ୍ଡିଲେ ।
ଶିମୁଳି ବୃକ୍ଷରେ ନେଇ ତାହାକୁ ବାନ୍ଧିଲେ ॥
ବିକଳେ ଉଚ୍ଚେ ରୋଦନ କରଇ ବ୍ରାହ୍ମଣୀ ।
କର୍ଣ୍ଣରେ ଶୁଣିଲା ତାହା କାଳଦଣ୍ଡ ପାଣି ॥
ଦୂତଙ୍କୁ ବୋଇଲା ତାକୁ ବେଗେ ଘେନିଆସ ।
ଶୁଣି ଦୂତମାନେ ନେଇ କଲେ ରାଜା ପାଶ ॥
ଦେଖିଣ ନାରୀକର ଯେ ବିଗୁରଇ ମନ ।
ପୁଣ୍ୟ ଥିଲାର ପରାୟେ ଦିଶେ ଏହା ବର୍ଣ୍ଣ ॥
ଏତେ ବୋଲି ରାଜା ଚିତ୍ରଗୁପ୍ତଙ୍କୁ ଚାହିଁଲା ।
ଏହାର କି ପାପପୁଣ୍ୟ ଦେଖ ହୋ ବୋଇଲା ॥
ଶୁଣିକରି ବେନି ମନ୍ତ୍ରୀ ପାଞ୍ଜି ବିଡ଼ା ଫେଡ଼ି ।
ଦେଖି ବୋଲନ୍ତି ଏ ନାରୀ ଅଟେ ପତିଦ୍ରୋହୀ ॥
ଏହାର ପତି କହନ୍ତି ଯେଉଁ ଯେଉଁ କଥା ।
ବିଷ ତୁଲ୍ୟ ମଣି ତାହା ନ ଶୁଣେ ସର୍ବଥା ॥
ସନ୍ତୋଷ କରି ସ୍ୱାମିକୁ ନ ଦିଏ ଭୋଜନ ।
ଆବର ଦେଇଛି ତାକୁ ବହୁ ଗାଳିମାନ ॥
ରୋଷଭରେ ଏକଦିନେ ଏହାର ଗେରସ୍ତ ।
ଏକଗୋଟି ବାଡ଼ି ଘେନି ହୋଇ ରାଗ ଚିତ୍ତ ॥
ଘରିବାଡ଼ି ମାରନ୍ତେଣ ପଳାଇଲା ଏହି ।
ମହାଘୋର ଅରଣ୍ୟରେ ପଶିଲେକ ଯାଇଁ ॥
ତରୁତଳେ ବସିଣ ଏ ଖୋଳେ ଏକ ଗାତ ।
ଏକାଳେ ଗେରସ୍ତ ଯାଇଁ ଧଇଲା ସ୍ୱା ହାତ ॥

ବହୁତ ବଚନେ କହି ନେଲ ଲେଉଟାଇ ।
ଏହିରୂପେ କଷ୍ଟକାଳ ଗଲା ଗତ ହୋଇ ॥
ଦୈବଯୋଗେ ଏକଦିନେ ମହାବୃଷ୍ଟି ହେଲା ।
ଏ ଯେ ଗାଡ଼ ଖୋଳିଥିଲା ସେ-ଜଳେ ପୂରିଲା ॥
କୁଡ଼ାଘରେ ଏକଗୋଟି ହୋଇଣ ବିକଳ ।
ତହିଁ ପାଇଁ ସେ ଗର୍ତ୍ତରୁ ପିଇଲେକ ଜଳ ॥
ଏତିକ ଧର୍ମ କେବଳ ଏ ନାରୀ କରନ୍ତି ।
ଏହାଛଡ଼ା ପୁଣ୍ୟ ଆଉ କରିନାହିଁ କିଛି ॥
ଶୁଣିକରି ଜନ୍ତୁପତି ହେଲ ତୋଷ ମନ ।
ବୋଲେ ଅନ୍ତ କରି ନୁହେଁ ଏ ବ୍ରାହ୍ମଣୀ ପୁଣ୍ୟ ॥
ମେଷମାସେ ଗାଈକି ଏ ଦେଲା ଯେବେ ବାରି
ସୁନାଆ କୋଟିଏ ଦେଲେ ନୋହେ ଏହା ସରି ॥
ଏହାର ଯେତେକ ପୁଣ୍ୟ କେ କହି ପାରିବ ।
ମୁହିଁ ତାହା ନ ଜାଣଇଁ ଜାଣିବ ଦଇବ ॥
ଏହାର ଯୋଗରୁ ସିନା ପାଣି ଥିଲା ରହି ।
ତୃଷାର୍ତ୍ତି ଗୋରୁ ଗୋଟିଏ ଜୀଇଲା ତା ପିଇ ॥
ତେଣୁକରି ସ୍ୱାଅଙ୍ଗରେ କିଛି ପାପ ନାହିଁ ।
ଅମର ଭୁବନେ ନିଶ୍ଚେ ବସିବ ଏ ଯାଇଁ ॥
ଶକ୍ତ୍ୟ ଅନୁରୂପେ ଯେହୁ ଜଳଦାନ୍ତି କରେ ।
ତାହା ତୁଲ୍ୟ ଧର୍ମ ନାହିଁ ଜଗତ ମଧ୍ୟରେ ॥
ଜଳ ଅନ୍ନ ବସ୍ତ୍ରଦାନ ଏ ତିନି ପ୍ରକାର ।
ଶକ୍ତିଅନୁସାରେ ଦାନ ଦିଅନ୍ତି ଯେ ନର ॥
ସେହି ପ୍ରାଣୀ ଚତୁର୍ବର୍ଗ ଫଳକୁ ଲଭଇ ।
ଅନ୍ତକାଳେ ସ୍ୱର୍ଗପୁରେ ନିଶ୍ଚିନ୍ତେ ରହଇ ॥
ଆମ୍ଭର ଯେ ଏହାଠାରେ ନାହିଁ ଅଧିକାର ।
ଚରଗଣଙ୍କୁ ଶୁଣି ଯମ ବୋଇଲେ ଏ ଗିର ॥
ପୁଣି ଦୂତମାନଙ୍କର କର୍ମଫଳ ପିଣ୍ଡ ।
ଜାଳିଲେ ଏହାକୁ ଆମ୍ଭେ ଦେଲୁ ବହୁଦଣ୍ଡ ॥
ନ ମୁଣ ଆମ୍ଭ ଉପରେ କୋପ ଏ କରନ୍ତି ।
ସେହିକଥା ଜାଣିପାରି ବୋଲେ ଜନ୍ତୁସାଇଁ ॥
ସ୍ୱାମୀର ଦ୍ରୋହ କାରିଣୀ ଅଟଇ ଏ ଯୁବତୀ ।
ତେଣୁକରି ଏହି ନାରୀ ପାଇଲେକ ଶାସ୍ତି ॥
ଯେବଣ ସ୍ତ୍ରୀ ଗରବେ ନ ସେବେ ପତିକୁ ।
ନିଷ୍ଠୁର ବଚନ ମାନ କହୁଥାଇ ତାକୁ ॥
ଘୋରସ୍ତ କହଇ ତାକୁ ଯେତେକ କଥାମାନ ।
ନାସ୍ତିକରି ଅବଜ୍ଞେ ସେ କହେ କୁବଚନ ॥

ଘୋରସ୍ତ ଦ୍ରୋହ କାରିଣୀ ଅଟେ ଯେତିକି ନାରୀ
ଧିକ ତାହାର ଜୀବନ ବୋଲଏ ସ୍ମୃତି ॥
ଏରୂପେ ଜଗତେ ଥିଲେ ଯେତେକ ତରୁଣୀ ।
ତାହାଙ୍କୁ କୁମ୍ଭୀପାକରେ ପକାଇବ ଆଣି ॥
ଯେବଣ କୁଣ୍ଡରେ ସେହୁ ଦେଇଥାଏ ଗାଳି ।
ସେ କୁଣ୍ଡରେ ତୁମ୍ଭେମାନେ ଅଗ୍ନି ଦେବ ଜାଳି ॥
ଆଉର କାଟିବ ତାଙ୍କ ନାସିକା ଶ୍ରବଣ ।
ଖଣ୍ଡ ଖଣ୍ଡ କରିବଟି ଯେସନେ ତରଣ ॥
ତା ଦେଳନେତ୍ର ଖୋଳିବ ଘେନି ନହୁରୁଣୀ ।
ତଦନ୍ତେ ନରକକୁଣ୍ଡେ ପକାଇବ ଆଣି ॥
ତଳକୁ ବୁଡ଼ିଲେ ତାଙ୍କୁ କାଟୁଥିବେ ଜୋକ ।
ଉର୍ଦ୍ଧ୍ୱେ ଉଠିଲେ ମାରିବ ନେଇ କୁହାକାଙ୍କ ॥
କ୍ଷୁଧାବିକଳେ ଯଦ୍ୟପି ଖାଦ୍ୟ ସେ ମାଗିବ ।
ତାହାର ମୁଖେ ଅନଳ ଭରି ଦେଉଥିବ ॥
ବିବିଧ ପ୍ରକାରେ ତାକୁ ଦେଉଥିବ ଦଣ୍ଡ ।
ପୁଣି ପିଣ୍ଡକୁ କରିବ କାଟି ଖଣ୍ଡ ଖଣ୍ଡ ॥
ସ୍ୱାମିଦ୍ରୋହ ପାପ କଲେ ସହସ୍ରେ ବରଷ ।
କୁମ୍ଭିପାକ ନର୍କେ ନେଇ ଦେଉଥିବ ବାସ ॥
ତହିଁର ଉତ୍ତାରୁ ତାକୁ ନର୍କରୁ କାଢ଼ିବ ।
ମର୍ତ୍ତେ ଘୁଷୁରିଜନମ ପୁଣି କରାଇବ ॥
ଥୋକାଏକ ଦିନଯାଏ ନରକ ଭୋଗିବ ।
ତଦନ୍ତେ ନେଇଣ ତାକୁ ହୀନ ଜନ୍ମ ଦେବ ॥
ଖାଇବାକୁ ସୁଷ୍ଟରୂପେ ନ ମିଳିବ ଗ୍ରାସ ।
ନିତି ତା କୁଟୁମ୍ବେ ରହୁଥିବେ ଉପବାସ ॥
କୁସ୍ଥାନେ ବାସ କରି ସେ ବଞ୍ଚିଥିବ ଦିନ ।
ପିନ୍ଧିବାକୁ ତାହାକୁ ନ ମିଳିବ ବସନ ॥
ଦୁହିତା ସୁତ ତାହାର ହୋଇବେ ବହୁତ ।
ପିଲାମାନେ କାନ୍ଦୁଥିବେ ନ ପାଇଣ ଭାତ ॥
ଶରୀରରେ ନାନା ରୋଗ ଜନ୍ମିବ ତାହାର ।
ଏହିପରି କହିଲେକ ଯହୁଁ ନାଶକର ॥
ସକଳ ଶୁଣି ବ୍ରାହ୍ମଣୀ କମ୍ପେ ଥରହର ।
ମିଟେ ଦେଳକରି ଯୋଡ଼ି ବୋଲେ ଏ ପ୍ରକାର
ହେ ଦେବ ଶୁଣିମା ତୁମ୍ଭେ କାଳଦଣ୍ଡ ପାଣି ।
କେମନ୍ତରୂପେ ତରିବେ କୁହ ସ୍ତ୍ରୀସ ପ୍ରାଣୀ ॥
ମୁହିଁ ମୋଟି ମନ୍ଦଆତ୍ମା ଅଟଇ ଯୁକତେ ।
କେବଳ ପୁଛେ ସଂସାର ସ୍ତ୍ରୀସଙ୍କର ହିତେ ॥

ଏହା ଶୁଣି ନାଗଜର ବୋଇଲେ ତୁମ୍ଭେ ଶୁଣ ।
ଅଳପକେ ସ୍ତ୍ରୀମାନେ ପାଇବେ କାରଣ ॥
ଗୃହକର୍ମେ ରହିଥିବେ କେଣିକି ନ ଯିବେ ।
ଶାଶୁ ଶ୍ୱଶୁରଙ୍କ ବାକ୍ୟ ସଦା ପାଳୁଥିବେ ॥
ଗେରସ୍ତର ବଚନକୁ ଶିରେ ଥିବେ ଧରି ।
ଭକ୍ତି କରୁଥିବେ ଜାଣି ନାରାୟଣ ପରି ॥
ଗେରସ୍ତର ଚରଣରେ କରୁଥିବେ ସେବା ।
ତୀର୍ଥଯାତ୍ରା କରିଗଲେ କି କାରଣ ଅବା ॥
ସ୍ୱାମି ଯାହା ଆଜ୍ଞା ଦେବ ନ ବୋଲିବ ନାହିଁ ।
ତେବେ ତାର କାନ୍ତ ଜାନ୍ତା ତୁଲ୍ୟ ଧର୍ମ ପାଇ ॥
ପର ପୁରୁଷରେ କେବେ ନ ଦେବେଟି ଚିତ୍ତ ।
ତାଙ୍କ ସଙ୍ଗେ ସମ୍ଭାଷଣ ଅଟେ ଅନୁଚିତ ॥
ଦେଖିଲେ ତିରିଶ ହାତ ଦୂରରେ ରହିବେ ।
ମୁଖଟେକି ତାହାଙ୍କୁ କଥା ନ କହିବେ ॥
ଘରକୁ ଆସିବେ ଯେବେ ସ୍ୱାମି ବନ୍ଧୁଜନ ।
ତାହାଙ୍କୁ ଯେ ନ କହିବେ ନିଷ୍ଠୁର ବଚନ ॥
ଯେ ଯାହା ମାନ୍ୟ ଧର୍ମରେ କରିବେ ଗୌରବ ।
ଏମନ୍ତ ମର୍ଯ୍ୟାଦା ଅଟେ ସ୍ତ୍ରୀଙ୍କ ସ୍ୱଭାବ ॥
ଏରୂପେ କଲେ ସ୍ତ୍ରୀଏ ପାଇବେ ମୁକତି ।
ପୂର୍ବେ ଏହା କହିଛନ୍ତି ମୋତେ ବେଦପତି ॥
ସେହି ନାରୀ ଅଟନ୍ତି ଯେ ପତିବ୍ରତା ସମ ।
କେବେହେଁ ତାଠାରେ ତୁମ୍ଭେ ନ କରିବ ଭ୍ରମ ॥
ଏହିପରି ଧାତା ମୋତେ ପୂର୍ବେ ଛନ୍ତି କହି ।
ବ୍ରାହ୍ମଣୀର ଆଗେ ଏହା କହେ ଜନ୍ତୁସାଇଁ ॥
ଶୁଣିଣ ବ୍ରାହ୍ମଣୀ ହେଲା ହରଷିତ ଚିତ୍ତ ।
ତତ୍କ୍ଷଣେ ବୈକୁଣ୍ଠୁ ଆସେ ସ୍ୱର୍ଣ୍ଣମୟ ରଥ ॥
ଅମର ଦୂତମାନେ ଯେ ବସିଛନ୍ତି ତହିଁ ।
ରଥେ ବସ ବୋଲନ୍ତି ସେ ବ୍ରାହ୍ମଣୀକି ଚାହିଁ ॥
ଶୁଣିଣ ବ୍ରାହ୍ମଣୀ ରଥେ ବସିଲା ତୁରିତ ।
ବୈକୁଣ୍ଠକୁ ଚଳିଗଲା ହୋଇ ଆନନ୍ଦିତ ॥
ଅଜ୍ଞାନେ ସଲିଳଦାନେ ତରିଲା ସେ ନାରୀ ।
କହିଲେ ମାଧବ ସର୍ବେ ବୋଲ ହରି ହରି ॥
ସକଳ ଭୁବନ ସ୍ୱାମି ଯେଉଁ ନାରାୟଣ ।
ତାଙ୍କ ପଦ୍ମପାଦରେ ମୁଁ ପଶିଲି ଶରଣ ॥

ବୀରଭଦ୍ର ଉପାଖ୍ୟାନ ।

ଏଥୁ ଅନନ୍ତରେ ପୁଣି ସୁମନ ସଜ୍ଜନ ।
ଚଇତନ ପାଦେ ପଡ଼ି ବୋଲଇ ଏସନ ॥
ଆଉ କିଏ ଅଜ୍ଞାନରେ ଜଳଦାନ ଦେଇ ।
ସଂସାରୁ ତରି ଅଛନ୍ତି କହିବା ଗୋସାଇଁ ॥
ଚଇତନ ବୋଇଲେ ହେ ମନସଜା ଶୁଣ ।
ପୁଚ୍ଛିଲ ଯେବେ କହିବା ସାଧୁଙ୍କ ଲକ୍ଷଣ ॥
ମୂର୍ଖଲୋକ ଆଗରେ ନ କରିବ ପ୍ରକାଶ ।
କହିଲେ ସକଳ ଧର୍ମ ହୋଇବ ବିନାଶ ॥
ସୁଜନଙ୍କୁ ଶୁଣାଇବ ସତ୍ୟରେ କହି ।
ତୁ ଯେ ସତ୍ୟରକୁ ମନ ଶୁଦ୍ଧଚିତ୍ତ ହୋଇ ॥
ତେଣୁକରି ତୋ ଆଗରେ କହୁଅଛୁ ଶୁଣ ।
ନନ୍ଦଦାସ ନାମେ ଥିଲା ଏକଇ ବ୍ରାହ୍ମଣ ॥
ଏକଦିନେ ଗଙ୍ଗାକ୍ଷେତ୍ରେ ବାରୁଣୀ ପଡ଼ିଲା ।
ଶୁଣିକରି ବ୍ରାହ୍ମଣ ଯେ ହୃଦରେ ଭାଳିଲା ॥
ତୀର୍ଥ କରିବାକୁ ମୁହିଁ ଯିବଇଁ ନାକର ।
ଏହା ଭାବି ଧନ ଘେନି ହୋଇଲା ବାହାର ॥
ସଙ୍ଗରେ ଦୋସର ଜଣେ ମାତ୍ର କେହି ନାହିଁ
ଏକାକୀ ହୋଇ ବିପ୍ରବର ଗମନ କରଇ ॥
ଏକେତ ବୃକ୍ଷ ଅଟଇ ସଙ୍କୁଶି ଜରଷ ।
ବିପ୍ର ଯାଉଛି ଗଙ୍ଗାକୁ ଦେଖିକ ତ୍ରାସ ॥
ଏକାଳେ ବାଟରେ ଆସି ଓଗାଳିଲା ଖଣ୍ଡେ ।
କଲେ ମହାବଳଆର ଚଣ୍ଡାଳ ମୁରୁଣ୍ଡ ॥
ବୀରଭଦ୍ର ବୋଲି ନାମ ଅଟଇ ତାହାର ।
ଜାଣିଲେ ଶୂନ୍ୟ ଜୀବିକା କରେ ଏ ପ୍ରକାର ॥
ଶାସ୍ତ୍ର ନ ଜାଣଇ ସାଧୁ ସଙ୍ଗତେ ନ ବସେ ।
ପରର ଦ୍ରବ୍ୟ ଆଣିଣ କୁଟୁମ୍ବଙ୍କୁ ପୋଷେ ॥
ଦୟା ଧର୍ମ ହୃଦରେ ତାର ଲେଶ ମାତ୍ର ନାହିଁ ।
କାହାକୁ ପିଟେ କାହାରୁ ନିଅଇ ଛଡ଼ାଇ ॥
ଏମନ୍ତେ ମନୁଷ୍ୟ ମାରି ଅଛି କେତେ କେତେ ।
ପରର ଦ୍ରବ୍ୟ ଛଡ଼ାଇ ଆଣେ ନିତ୍ୟେ ନିତ୍ୟେ ॥
ବ୍ରାହ୍ମଣଙ୍କୁ ଓଗାଳେ ସେ ରହ ରହ କହି ।
ସକଳ ପଦାର୍ଥ ତାର ରଖିଲା ଛଡ଼ାଇ ॥
ଭୟପାଇ ଦ୍ୱିଜବର ଧନ ତାକୁ ଦେଲା ।
ଶୁଣ ତୁ କଥାଏ ତୋତେ ପୁଚ୍ଛିବା ବୋଇଲା ॥

ବୀରଭଦ୍ର ବୋଲେ କିସ କହିବୁ ତୁ କହ ।
ବାଟ ଚାହିଁ ରହିଅଛେ ମୋର ଝିଅ ପୁଅ ॥
କାଲିଠାରୁ ମୋ କୁଟୁମ୍ବ ଅଛନ୍ତି ଭୋକରେ ।
ଯେତେକ କହିଲେ ଏ ଧନ ନ ଦେଅଇ ତୋରେ ॥
ବ୍ରାହ୍ମଣ ବୋଇଲା ତୁହି ପରଦ୍ରବ୍ୟ ନେଉ ।
କାହାକୁ ଜୀବନେ ମାରୁ କା ଠାରୁ ଛଡାଉ ॥
କହ ଏ ପାତକ ଯାକ ହେଉଛି କାହାର ।
ଖଣ୍ଡୁ ବୋଇଲା ପାତକ କୁଟୁମ୍ବ ଯାକର ॥
ବ୍ରାହ୍ମଣ ବୋଇଲା ତୁରେ ଘରେ ପୁଛି ଆସ ।
ପଛେ ଏ ଧନ ନେଇଣ କୁଟୁମ୍ବଙ୍କୁ ପୋଷ ॥
ଖଣ୍ଡୁ ବୋଲେ ପଚାରିବା ପାଇଁ ଯିବ ଯେବେ ।
ଏ ଧନ ଘେନି ତୁହି ତ ପଳାଇବୁ ତେବେ ॥
ବ୍ରାହ୍ମଣ ବୋଇଲା ବୃଦ୍ଧତନୁ ଅଟେ ମୋର ।
ପଳାଇ ଯିବ ତୋ ଆଗୁ କେତେଦୂର ॥
ଖଣ୍ଡୁ ବୋଇଲାକ ଘରେ ପୁଚ୍ଛିଆସେ ଯାଇଁ ।
ଏହିଠାରେ ବସିଥିବୁ ନ ଯିବୁ ପଳାଇ ॥
ଯେବେ ଠକିକରି ମୋତେ ଯିବୁ ତୁ ପଳାଇ ।
ଜୀବନେ ମାରିବି ଏଥେ ସଂଶୟ ଯେ ନାହିଁ ॥
ଶୁଣିଣ ବ୍ରାହ୍ମଣ ତାହା ସନମତ କଲା ।
ତତକ୍ଷଣେ ଗୃହକୁ ଖଣ୍ଡୁ ପୁଚ୍ଛିବାକୁ ଗଲା ॥
ପିତା ମାତାଙ୍କୁ ସେ ଖଣ୍ଡୁ ବୋଇଲାକ ଚାହିଁ ।
କଥାଏ ପଚାରିବାକୁ ଅଇଲଇଁ ମୁହିଁ ॥
ପର ଦ୍ରବ୍ୟମାନ ମୁହିଁ ଆଣେ ପ୍ରତିଦିନ ।
ତାହା ଖାଇ ତୁମ୍ଭେମାନେ ରଖିଛ ଜୀବନ ॥
ସେହି ପାପମାନ ସବୁ ହେଉଛି କାହାର ।
ଏ ବିଷୟ ତୁମ୍ଭେମାନେ କହ ତତପର ॥
ଏହିକ୍ଷଣି ବାଟ ମଧ୍ୟେ ଏକଇ ବ୍ରାହ୍ମଣ ।
ଯାଉଥିଲା ତା ଜାଉଁଳି ଆଣିନେଣ ପୁଣ ॥
ସେ ବୋଇଲେ ପାପପୁଣ୍ୟ ବୁଝିଆସ ଘରେ ।
ତୁମ୍ଭର ଆସିବା ଯାଏ ବସିଛି ଏଠାରେ ॥
ତେଣୁକରି ତୁମ୍ଭଙ୍କୁ ମୁଁ ପଚାରି ଅଇଲି ।
ଏହିଠାରୁ ଗଲେ ଧରି ଆସିବ ଯାଉଁଳି ॥
ଯଦ୍ୟପି ଭୁଲାଇ ମୋତେ ଯିବଟି ପଳାଇ ।
ନିଶ୍ଚେ ଖେଦି ଜୀବ ତାର ନେଇବଟି ଯାଇ ॥
କହ ଏ ପାପ ସକଳ କାହାକୁ ଲାଗିବ ।
ନୋହିଲେ ଯିବ କାଳେ ଦ୍ୱିଜ ପଳାଇଣ ଯିବ ॥
ପିଅର ଜନନୀ ତାର ବୋଇଲେକ ଶୁଣି ।
ସେ ପାପ ପୁଣ୍ୟରେ ବାବୁ ତୁହିଟି କାରଣୀ ॥
ଜନ୍ମ କରି ବାଲ୍ୟକାଳୁ ଥିଲୁ ଆମ୍ଭେ ପୋଷି ।
ଏବେ ତୋ ଯୁବା ବୟସ ହୋଇଲାତ ଆସି ॥
ବାଳକାଳେ ପାପପୁଣ୍ୟ ଯେତେ ଥିଲୁ କରି ।
ତହିଁରେ ପିତା ଆମ୍ଭେତ ଥିଲୁଁ ଅଧିକାରୀ ॥
ଏବେତ ଚଳି ନ ପାରି ଅଛୁଁ ଘରେ ବସି ।
କରୁଛ ଆମ୍ଭଙ୍କୁ ପୋଷୁ ନ ଜାଣୁରେ ଶିଷି ॥
ଏଥିର ଯେ ପାପ ପୁଣ୍ୟ ତୋତେ ସେ ଲାଗଇ ।
ନିଶ୍ଚୟ ଏ କଥା ଜାଣ ସଂଶୟ ଯେ ନାହିଁ ॥
ଭାର୍ଯ୍ୟା କରଣ ବନ୍ଧା ହୋଇଅଛୁ ଯାକୁ ।
କେଉଁରୂପେ ପୋଷିବା ତ ଅନ୍ନ ଦେଇ ତାକୁ ॥
ମାତା ପିତା ଭାର୍ଯ୍ୟାଠାରୁ ଏହିକଥା ଶୁଣି ।
ବୀରଭଦ୍ର ମନମଧ୍ୟେ କରଇ ଭାଳେଣି ॥
ଏମାନେ ଯାହା କହିଲେ ଅଟଇ ସ୍ୱରୂପ ।
ଏବେ ସେ ଜାଣିଲି ଆଉ ନ କରିବି ପାପ ॥
ଏତେ ବୋଲି ବ୍ରାହ୍ମଣରେ ପାଶେ ହେଲା ଯାଇଁ ।
କିସ ବୁଝିଲୁ ତା କହ ବ୍ରାହ୍ମଣ ପୁଚ୍ଛଇ ॥
ବୀରଭଦ୍ର ବୋଇଲା ମୁଁ ପଚାରିଲି ଯେତେ ।
ସେ ପାପ ମୋହର ବୋଲି କହିଲେ ସମସ୍ତେ ॥
ଆଜଠାରୁ ଏହି ବୃତ୍ତି ଛାଡ଼ିଲଇଁ ମୁହିଁ ।
ତୁ ଯହିଁକୁ ଯିବୁ ବିପ୍ର ମୁଁ ଯିବଇଁ ତହିଁ ॥
ବ୍ରାହ୍ମଣ ବୋଇଲା ତାକୁ ତୋହର ଯେ ମନ ।
ଏତେବୋଲି ଦୁହେଁ ତହୁଁ କରିଲେ ଗମନ ॥
ବ୍ରାହ୍ମଣର ଜାଉଁଳିକି ଧରେ ଶୂଦ୍ର ଯାଇଁ ।
ବୋଇଲା ହେ ବୁଢ଼ାବିପ୍ର ଚାଲ ବେଗ ହୋଇ ॥
ଏତେ ବୋଲି ବାରକୋଶ ପଥ ବାହିଗଲେ ।
କେତେଦୂରେ ଏକବନେ ପ୍ରବେଶ ହୋଇଲେ
ବ୍ରାହ୍ମଣ ବୋଲେ ଶୂଦ୍ରର ବଦନକୁ ଚାହିଁ ।
ଏ ବନୁ ତେଣିକି ଜଳ ମିଳିବ ଯେ ନାହିଁ ॥
ଯେବେ ଏହିଠାରୁ ଆମ୍ଭେ ପାଣି ଧରିଥିବା ।
ତେବେ ନିଶ୍ଚିନ୍ତରେ ପିନା ପଥ ବାହିଯିବା ॥
ଶୁଣି ବୀରଭଦ୍ର ଏକତୁମ୍ବି ପାଣି ଧରେ ।
ବ୍ରାହ୍ମଣ ଧଇଲା ମଧ କାଛୁ ତା ଡାଳରେ ॥
ଏହିପରି ଘେନି ଜଳ ତହୁଁ ଚଳିଗଲେ ।
କେତେଦୂର ଯାଇଁ ତହିଁ ଜଳପାନ କଲେ ॥

ପୁଣି କେତେଦୂରେ ତାଙ୍କୁ ତୃଷା ଲଗନ୍ତେଣ ।
ଆଉବେଳେ ପୁଣି ଦୁହେଁ କଲେ ଜଳପାନ ॥
ବ୍ରାହ୍ମଣ ତାଳରେ ଯେତେ ନୀର ଧରିଥିଲା ।
ଦୁଇଥର ପିଅନ୍ତେଣ ସବୁ ସରିଗଲା ॥
ଶୂଦ୍ରଠାରେ ଏକତୁମ୍ବି ଜଳମାତ୍ର ଅଛି ।
ଆଉ ତିନକୋଶ ପଥ ବାକି ଯେ ରହିଛି ॥
ତୃଷାର ଆବର୍ତ୍ତେ ବ୍ରାହ୍ମଣ ହୋଇଲା ଆଉଟି ।
ବସିବାଠାବରୁ ଆଉ ନ ପାରିଲା ଉଠି ॥
ଶୂଦ୍ରର ବଦନ ଚାହିଁ ବୋଲଇ ବ୍ରାହ୍ମଣ ।
ନିଶ୍ଚୟେ ମରିବି ମୁଁ ନ କଲେ ଜଳପାନ ॥
ତୋହଠାରେ ଅଛି ବାବୁ ଆଉ କେତେ ନୀର ।
ମନାଏ ଦେଲେ ରହିବ ଜୀବନ ମୋହର ॥
ଶୁଣି ବୀରଭଦ୍ର ନୀର ବ୍ରାହ୍ମଣକୁ ଦେଲା ।
ପିଅନ୍ତେ ବୁଢ଼ା ବିପ୍ରର ଜୀବନ ରହିଲା ॥
ତତକ୍ଷଣେ ବେନିଜନ ଗଲେ ତହୁଁ ଉଠି ।
କେତେଦୂରେ ବୀରଭଦ୍ର ତୃଷାରେ ଆଉଟି ॥
ତୃଷାହେତୁ ତାର କଣ୍ଠ ଗଲା ଶୁଷ୍କ ହୋଇ ।
ଦେଖିଲେକ ତୁମ୍ବାମଧ୍ୟେ କିଛି ଜଳ ନାହିଁ ॥
ତତକ୍ଷଣେ ହୁଡ଼ି ତାର ଉଡ଼ିଲା ସାହସ ।
ଥକା ହୋଇ ବସେ ମୁଖୁଁ ନ ସ୍ଫୁରଇ ଭାଷ ॥
ଦେଖିଣ ବ୍ରାହ୍ମଣ ବଡ଼ ହୋଇଲା ବିକଳ ।
ବେନି ନୟନରୁ ବହିପଡ଼େ ଅଶ୍ରୁଜଳ ॥
ଧର୍ମକୁ ସୁମରି ତହୁଁ ବିପ୍ର ଚଳିଗଲା ।
କେତେଦୂର ଯାନ୍ତେ ବିପ୍ର ଗ୍ରାମେକ ଦେଖିଲା ॥
ସେଠାରେ ସଲିଳ ପିଇ ଗଲା ସୁସ୍ଥ ହୋଇ ।
କେତେଦିନେ ଗଙ୍ଗାକ୍ଷେତ୍ରେ ପ୍ରବେଶିଲା ଯାଇଁ ॥
ଯଥା ବିଧିମତେ ଦାନ ପୁଣ୍ୟ ସେ କରିଲା ।
ବିଷ୍ଣୁଙ୍କୁ ସୁମରି ଗଙ୍ଗାଜଳେ ଝାସ ଦେଲା ॥
ତତକ୍ଷଣେ ବିଷ୍ଣୁଲୋକେ ବସିଲା ବ୍ରାହ୍ମଣ ।
ଏଥୁ ଅନନ୍ତରେ କଥା ସୁମନ ହୋ ଶୁଣ ॥
ବୀରଭଦ୍ର ସବୁ ନୀର ବ୍ରାହ୍ମଣକୁ ଦେଲା ।
ତୃଷାର୍ତ୍ତି ହୋଇ ସେଠାରେ ଜୀବନ ତେଜିଲା ॥
ଜାଣିପାରି ଯମଦୂତେ ବେଢ଼ିଲେକ ଆସି ।
ଗଳାରେ ଲଗାଇ ତାର ଦୃଢେ କାଳଫାଶି ॥
ଯମପୁରେ ନେଇଗଲେ ଦଣ୍ଡମାନ ଦେଇ ।
ଅନେକ ମାଡ଼ ମାଇଲେ କେ ପାରିବ କହି ॥

ପ୍ରେତ ପିଣ୍ଡରେ ଜୀବନ ନେଇଣ ଭରିଲେ ।
ପୁଣି ତପତ ବାଲିରେ ତାକୁ ଘୋଷାଡିଲେ ॥
ବିକଳ ହୋଇଣ ସେହୁ ବୋଲେ ମଲି ମଲି ।
ତୁଣ୍ଡରେ ପୂରାଇଦିଅନ୍ତି ନେଇ ତପ୍ତ ବାଲି ॥
ଏମନ୍ତେ ଅନେକମତେ ଦଣ୍ଡମାନ ଦେଇ ।
ଯମପାଶେ ପରବେଶ କଲେ ତାକୁ ନେଇ ॥
ଦେଖି ତାକୁ ଜନ୍ତୁପତି ବିଚାରଇ ମନ ।
ଏହାର ଦେହରେ କିଛି ଦିଶୁନାହିଁ ପୁଣ୍ୟ ॥
ଚିତ୍ରଗୁପ୍ତଙ୍କୁ ଚାହିଁ ବୋଲେ ଧର୍ମରାଜ ।
ଏହାର ଯେ ପାପପୁଣ୍ୟ ଭଲକରି ବୁଝ ॥
ପାଞ୍ଜି ଦେଖି ଚିତ୍ରଗୁପ୍ତ ବୋଇଲେକ ତହୁଁ ।
ଅନେକ ହତ୍ୟାଦୋଷ ଯେ କରିଅଛି ଏହୁ ॥
ନିତି ବାଟେ ଲୋକ ମାରି ତାଙ୍କ ଦ୍ରବ୍ୟ ଆଣି ।
ନିଶ୍ଚିନ୍ତେ ପେଟ କୁଟୁମ୍ବ ପୋଷେ ଖଣ୍ଡପଣେ ॥
ଦିନେ ମୁଖେ ବୋଲି ନାହିଁ କୃଷ୍ଣ ନାରାୟଣ ।
ତୀର୍ଥକରି ଯାଉଥିଲା ଏକଇ ବ୍ରାହ୍ମଣ ॥
ତାହାକୁ ଧରି ତା ଧନ ଛଡ଼ାଇବା ବେଳେ ।
ଏହାକୁ କହିଲା ବିପ୍ର ପ୍ରାଣରି ବିକଳେ ॥
ଯେତେ ଲୋକ ବାଟେ ପିଟି ନେଇଅଛୁ ଧନ ।
କାହାର ହୁଅଇ ବାବୁ ଏ ପାତକ ମାନ ॥
ଶୁଣି ଏ ବୋଇଲା ପାପ କୁଟୁମ୍ବ ଯାକର ।
ଗୃହେ ପୁଛିଆସ ବୋଲି କହେ ଦ୍ୱିଜବର ॥
ତହୁଁ ଯାଇଁ ମାତା ପିତା ଭାର୍ଯ୍ୟାକୁ ପୁଛିଲା ।
ସେ ବୋଇଲେ ପାପ ପୁଣ୍ୟ ତୋତେତ ଲଗିଲା ॥
ସେଠାରୁ ଏ ବଇରାଗ ପାଇ ବାହୁଡ଼ିଲା ।
କାହିଁ ଯାଉଅଛ ବୋଲି ବିପ୍ରକୁ ପୁଛିଲା ॥
ବ୍ରାହ୍ମଣ ବୋଇଲା ମୁହିଁ ଗଙ୍ଗାସ୍ନାନେ ଯିବି ।
ଏ ମଧ ବୋଇଲା ତୁମ୍ଭ ସଙ୍ଗତେ ଗମିବି ॥
ଦୁହେଁ ଯାକ ଏକତ୍ରରେ ଗଲେ କିଛିଦୂର ।
ତୃଷା ହେବ ବୋଲି ଭାବି ଧଇଲେକ ନୀର ॥
କେତେଦୂର ପଥ ଯାନ୍ତେ ତୃଷାର ଆରତେ ।
ଜଳପାନ କରିଣ ସେ ଚଳିଲେ ତୁରିତେ ॥
ଆଗକରି ବ୍ରାହ୍ମଣର ଜଳ ଗଲା ସରି ।
ଏହାର ତୁମ୍ବରେ ଥିଲା ଓକାଏକ ବାରି ॥
କେତେଦୂର ଯାନ୍ତେ ଦ୍ୱିଜ ତୃଷାରେ ଆକୁଳ ।
ବସିଲେ ଉଠିବାକୁ ସେ ନ ହୋଇଲା ବଳ ॥

ଏହି ଶୂଦ୍ରଠାରେ ଯେତେ ବାକି କର ଥିଲା ।
ବ୍ରାହ୍ମଣ ମାଗନ୍ତେ ତାହା ତତକ୍ଷଣେ ଦେଲା ॥
ପୁଣି କେତେଦୂର ଯାନ୍ତେ ତୃଷାତୁର ହୋଇ ।
ପଥ ଚାଲି ନ ପାରିଲା ମରିଲକ ତହିଁ ॥
ଏହା ବିନା ଶୂଦ୍ର ଆଉ କିଛି କରି ନାହିଁ ।
ଯେ ତୁମ୍ଭ ମନକୁ ଆସେ କର ତା ଗୋସାଇଁ ॥
ଶୁଣିକରି ଜନ୍ତୁପତି ବିଚାରଇ ମନ ।
ପ୍ରଥମେ ଏ ଯାଇଥିଲା କରି ଗଙ୍ଗାସ୍ନାନ ॥
ତହିଁର ଉତ୍ତାରୁ ପୁଣି ଜଳଦାନ ଦେଲା ।
ଏଥିପାଇଁ ଜୀବନ ଗଲା ବିପ୍ର ରକ୍ଷା ହେଲା ॥
ଯେତେ ପାତକ ଏ ଶୂଦ୍ର ପୂର୍ବେ ଥିଲା କରି ।
ଗଙ୍ଗାସ୍ନାନକୁ ଗମନ୍ତେ ସର୍ବ ପାପ ହରି ॥
ଗଙ୍ଗାସ୍ନାନ ନିମନ୍ତେ ଯେ କରନ୍ତି ଗମନ ।
ସକଳ ପାପ ତାଙ୍କର ହୁଅଇ ଦହନ ॥
କୋଟିଏ ଆଗମେ ଯେତେ ହୁଏ ମହା ନିଶି ।
ରବି ଉଦୟ ହୋଇଲେ ଯେତେ ଦଣ୍ଡ ନାଶି ॥
ସେହିପରି ପଦଟିଏ ଅଙ୍ଗେ ପାପ ନ ରହଇ ।
ପତିତପାବନୀ ଗଙ୍ଗା ପାଶେ ଯେ ଗମଇ ॥
ଆବର ବିପ୍ରର ପ୍ରାଣ ରଖିଅଛି ଏହି ।
ଏହାର ଜୀବନ ଗଲା ଜଳଦାନ ଦେଇ ॥
ଏତେ ବୋଲି ଦୂତଙ୍କୁ ଯେ କହେ ଧର୍ମରାଜ ।
ଫେଡ଼ ଫେଡ଼ ବେଗକରି ଏହାର ବନ୍ଧନ ॥
ଏହି ପ୍ରାଣୀ ମହାତ୍ମା ଅଟେ ପୁଣ୍ୟଦେହୀ ।
ଏହା ତୁଲ୍ୟ ଧର୍ମୀ ଆଉ ବ୍ରହ୍ମାଣ୍ଡେ କେ ନାହିଁ ॥
ଯଜ୍ଞ ଧର୍ମ ଫଳ ଜାଣ ହୋଇଲା ଏହାର ।
ତେଣୁକରି ଏହି ଶୂଦ୍ର ହେବ ନୃପବର ॥
ବୀରବିକ୍ରମ ସିଂହ ଯେ ଏହା ନାମ ହେଉ ।
ନବଶତ ବର୍ଷରେ ଏ ବହୁ ସୁଖ ପାଉ ॥
କାନ୍ୟକୁବ୍ଜ ଦେଶେ ଏହି ହେଉ ମହାରାଜା ।
ପୁତ୍ର ସମ କରି ତହିଁ ପାଳିବ ପରଜା ॥
କ୍ଷତ୍ରିୟବଂଶରେ ପୁଣି ହୋଇବ ସିଂହାଣ ।
ଶଚୀପତିଙ୍କ ଜିଣିବ କରି ଘୋରରଣ ॥
ଗଙ୍ଗାସ୍ନାନ ଜଳଦାନ କରଇ ଯେ ପ୍ରାଣୀ ।
ଏ ଲୋକେ ଧର୍ମବଳରୁ ହୁଅନ୍ତି ନୃପମଣି ॥
ଏହିରୂପେ ଆଜ୍ଞା ଯହୁଁ ଦେଲେ ଜନ୍ତୁପତି ।
ତେଣୁକରି ସେହି ଶୂଦ୍ର ହୋଇଲା ନୃପତି ॥

କ୍ଷତ୍ରିୟବଂଶେ ଯେତେ ତାଙ୍କୁ ନାହିଁ ରିବେ ତିଳେ ।
ଏତେବଡ଼ ଯଶ ହେଲା ଜଳଦାନ ଫଳେ ॥
ଶୁଣି ସୁମନ ରାଜନ ବିଚାରଇ ଚିତ୍ତେ ।
ଅବଶ୍ୟ ଏଣିକି ଜଳଦାନ ଦେବି ନିତ୍ୟେ ॥
ବହୁତ ସୁକୃତ ମୋର ସେଥିରେ ହୋଇବ ।
ଅବଶେଷେ ଇନ୍ଦ୍ରପଦ ମୋତେ ତ ମିଳିବ ॥
କହଇ ମାଧବ ନରେ ଜଳଦାନ ଦିଅ ।
ଅବହେଳେ ବଇକୁଣ୍ଠ ଭୁବନକୁ ଯାଅ ॥



## ସୁକର୍ମ ଓ କୁକର୍ମର ଫଳ ।

ସୁମନ ବୋଲନ୍ତି ପୁଣି ଶିରେ କର ଦେଇ ।
ହେ ଚୈତନ୍ୟ କଥାଏକ ପଚାରିବି ମୁହିଁ ॥
ସଂସାରେ ଦେଖିଲି ସିନା ଅପାରୁ ଅପାର ।
ପିତା ଆଉ ପୁତ୍ରଙ୍କର ଯେମନ୍ତ ବେଭାର ॥
ଅତି ସ୍ନେହ କରି ପିତା ପୁତ୍ରକୁ ପାଳଇ ।
ପଛନ୍ତେ ମାତା ପିତାଙ୍କୁ ପୁତ୍ର ନ ପୋଷଇ ॥
ସକଳ ଧନ ଦ୍ରବ୍ୟକୁ ରଖଇ ଆବୋରି ।
ପୁତ୍ରୁ ତଡ଼ିଦିଏ ତାଙ୍କୁ ଭର୍ତ୍ସନା କରି ॥
ମାତା ପିତା ବୁଢ଼େହେଁ ବୁଲୁଥାନ୍ତି ଦାଣ୍ଡେ ଦାଣ୍ଡେ ।
ତାହାଙ୍କୁ ଆଶ୍ୱାସନା ନ କରେ ପୁତ୍ର ତୁଣ୍ଡେ ॥
ବ୍ୟାଧିମନ୍ତ ହୋଇଣ ସେ ପଡ଼ିଥିବେ ଯେବେ ।
ତାହାଙ୍କୁ ନୟନେ ପୁତ୍ର ନ ଚାହାଁଇ କେବେ ॥
ଅନ୍ନବସ୍ତ୍ର ତାହାଙ୍କୁ ନ ଦିଏ ସୁସ୍ଥକରି ।
ଆବର ବୋଲେ ଖାଇଛି କିସ! ଏ ନ ମରି ॥
ବୋହୂ ଶାଶୂ ଶଶୁରଙ୍କୁ କେତେ ଗଞ୍ଜୁଥାଇ ।
ଶୁଣୁଥାଏ ପୁତ୍ର ତାହା ମନା ନ କରଇ ॥
ଦାଣ୍ଡଲୋକ ହେଲେ ମଧ୍ୟ ଶୁଣି ମନା କରେ ।
କୁମର ହୋଇଣ ଦୟା ନାହିଁ ଡକାର୍ଥରେ ॥
ଏହାର ଚରିତ ମୋତେ କହିବ ଚୈତନ୍ୟ ।
ତୁମ୍ଭବିନା କେ କରିବ ସଂଶୟ ମୋଚନ ॥
ଚୈତନ୍ୟ ବୋଲେ ଏ ସିନା ପୂର୍ବ ଜନ୍ମ କଥା ।
ସେ ପୁତ୍ର ଅଟଇ ସାହୁ ଖାତକ ତା ପିତା ॥
ପୂର୍ବେ ସେହିଧନ ଆଣି ସାହୁକୁ ନ ଦେଲା ।
ମାଗିଲା ବେଳକୁ ପୁଣି ବହୁ ଗାଳିଦେଲା ॥
ବଳେ ପିତା ଖାଇଥିଲା ସେ ପୁତ୍ରର ବଳୁ ।
ତେଣୁକରି ଧାତା କଲା ଏହି ଘଟମନ୍ତ୍ର ॥

କେତେବେଳେ ସେ ପୁତ୍ରକୁ ନ ଲାଗିବ ଦୋଷ ।
ଯେତେକେହେଁ ଶାପ ବନ୍ଧିଲେ ହେବ ତାର କ୍ଷୟ ॥
ନ ଜାଣିଣ ପ୍ରାଣୀମାନେ ଅଧର୍ମ କରନ୍ତି ।
ନିର୍ବଳ ମନୁଷ୍ୟଠାରୁ ଧନ ବଳେ ନ୍ୟନ୍ତି ॥
ତେଣୁକରି ବିହି ତାଙ୍କୁ ଦିଏ ପରାଭବ ।
ପୂର୍ବ ଜନ୍ମାର୍ଜିତ ଫଳ ଭୋଗ ସିନା ହେବ ॥
ଖାତକ ଜନ୍ମଇ ଯେବେ ଯାଇ ସାହୁଘରେ ।
ତେବେ ସେ ପିତା ମାତାଙ୍କୁ ବହୁ ସେବା କରେ ॥
ଜୀବଥିବା ଯାଏ ଆଜ୍ଞା କରଇ ପାଳନ ।
ମଲେ ଶ୍ରାଦ୍ଧ ଦିବସରେ ଦିଏ ପିଣ୍ଡଦାନ ॥
ଜାହ୍ନବୀ ନୀରେ ତା ଅସ୍ଥି ପକାଏ ସେ ନେଇ ।
ତେବେ ସେ ଖାତକ ପିତା ଋଣକୁ ସୁଝଇ ॥
ନୋହିଲେ କଦାପି ତାକୁ ନାହିଁ ପ୍ରତିକାର ।
କହୁଛନ୍ତି ଚଇତନ ଶୁଣ ମନବର ॥
ବିଶ୍ୱାସେ ଯେ ଯାହା ଘରେ ଧନ ଥାଏ ଥୋଇ ।
ମାଗିଲେ ତାହାକୁ ସେହି କେବେ ନ ଦିଅଇ ॥
ତହୁଁ ସେ ଲୋକ ଲେଉଟେ ହୋଇଣ ନିରାଶ ।
ବୋଲେ ଧାତା ଏକଥା ତୁ ବୁଝିବୁ ଅବଶ୍ୟ ॥
ଯେବେ ପୂର୍ବ ଜନ୍ମେ ମୁହିଁ ଖାଇଛି ଯା ବିତ୍ତ ।
ତେବେ ଏହି କର୍ମ ମୋତେ କରିବା ଉଚିତ ॥
ହେ ବିଧାତା ମୋତେ ଏବେ ପ୍ରତିକାର କର ।
ନିର୍ବଳ କାଳଟି ଆସି ହୋଇଲା ମୋହର ॥
ଉଠିବସି ନ ପାରଇ ବୃଦ୍ଧ ଆସି ହେଲି ।
ନଦେଲା ସେ ଧନ ମୋର ପୁଣି ଦେଲା ଗାଳି ॥
ଏତେ ବୋଲି ଶଯ୍ୟାରେ ଛାଡ଼େ ପ୍ରାଣ ତାର ।
ବିଧାତାଙ୍କୁ ସେ କଥା କି ଅଟେ ଅଗୋଚର ॥
ବେଳ କାଳ ଜାଣି ଧାତା ଘଟାଏ ତା ନେଇ ।
ପୂର୍ବ କଲକର୍ମ ଏହା ନ ଜାଣନ୍ତି କେହି ॥
ଯେହୁ ଯାହା ଅର୍ଜିଥାଇ କରେ ତାହା ଭୋଗ ।
ଅଧିକ ଭଣାନାହିଁ ଯେ ବେକାକଥା ଯୋଗ ॥
କିଏ କାହାର ଉପରେ କରେ ଅଧିକାର ।
କେହୁ କାହାର ପିତା ବା କେ କାହା କୁମର ॥
ଦଇବର ଘଟଣା କେ ପାରେ ଆନ କରି ।
ଯାହାର ଯେମନ୍ତ ଧର୍ମ ସେ ଧର୍ମେ ବିହରି ॥
ସୁକର୍ମ କେବଳ ଏହି ସଂସାରରେ ସାର ।
ଅକର୍ମ କରିଲେ ପ୍ରାଣୀ ହୁଅନ୍ତି ନାରଣାଉ ॥

କଳିଯୁଗେ ଯେଉଁ ଜନ କରଇ ଅକର୍ମ ।
ଧନ ଜନ ବୃଦ୍ଧି ହୋଇ ଶେଷେ ହୁଏ ଲୀନ ॥
ଅଧର୍ମରେ ବହୁତର ହୁଅଇ ବର୍ଦ୍ଧିତ ।
ଅଳପକେ ସେହି ପୁଣ ହୋଇଯାଏ ହତ ॥
ଏକାବେଳକେ ତା ଧନ ପ୍ରାଣନାଶ ଯାଇ ।
ଏକଥାଟି ଧ୍ରୁବ କେବେ ଅନ୍ୟଥା ନୁହଇ ॥
ତାହା ଶୁଣି ସୁମନ ଯେ କହେ କରଯୋଡ଼ି ।
କାହିଁ ଦେଖିଅଛ ତାହା କହ ମୋତେ ଫେଡ଼ି ॥
ଚଇତନ ବୋଇଲେ ହୋ ଶୁଣ ମନସ୍ୱଣ ।
ଦ୍ୱାପର ଯୁଗ ଅନ୍ତରେ କଳି ଆଗମନ ॥
ସେ ଯୁଗର କଥା ତୁମ୍ଭ ଆଗରେ କହିବା ।
ଯାହା ତୁମ୍ଭେ ପୁଚ୍ଛାକଲ ସଧୀରେ ଶୁଣିବା ॥
ଯାଜପୁର ନାମେ ଅଛି ଏକଇ ନଗର ।
ତହିଁରେ ବାସ କରନ୍ତି ବହୁ ଦ୍ୱିଜବର ॥
ସମସ୍ତ ବିପ୍ରେ ପାରନ୍ତି ଋଗ୍‌ବେଦ ପଢ଼ି ।
ବିଷ୍ଣୁ ପୂଜା କରନ୍ତି ସେ ସବୁ ଦ୍ରବ୍ୟ ଲୋଡ଼ି ॥
ଷୋଡ଼ଶୋପଚାରରେ ନିତ୍ୟ କରନ୍ତି ସେ ପୂଜା ।
ଯେତେଣେ ସନ୍ତୋଷ ହୁଅନ୍ତି ପ୍ରଭୁ ଦେବରାଜା ॥
ସର୍ବ ମନ୍ଦିରେ ଖଟୁଳି ମଧେ ଶାଳଗ୍ରାମ ।
ଯଥାବିଧି ମତରେ ସେ କରୁଥାନ୍ତି କର୍ମ ॥
ତ୍ରିସନ୍ଧ୍ୟା କରନ୍ତି ସର୍ବେ ଯେବଣ ପ୍ରକାର ।
ଶିବ ପଞ୍ଚାକ୍ଷର ମନ୍ତ୍ରେ ପୂଜନ୍ତି ଶଙ୍କର ॥
ପ୍ରତିଘରେ ହୋମକରି ପୂଜନ୍ତି ଅନଳ ।
ଘୃତଆହୁତ ସମିଧ ଯେ ବିବିଧ ପ୍ରକାର ॥
ମନ୍ତ୍ର ସୁମରଣ କୁଣ୍ଡେ ଆହୁତି ଦିଅନ୍ତି ।
ଅଗ୍ନି ହୋମ ପୂଜା ଆଦି ପ୍ରତ୍ୟହ କରନ୍ତି ॥
ବ୍ରାହ୍ମଣଙ୍କ ଯେତେ କର୍ମ ଲେଖିଛନ୍ତି ବିଧି ।
ସକଳ କରନ୍ତି ତିଳେ ନ ଛାଡ଼ନ୍ତି କେହି ॥
ତେଣୁକରି ତେଜୋବନ୍ତ ଦିଶନ୍ତି ବ୍ରାହ୍ମଣ ।
ବିପ୍ରହୋତ୍ରୀ ସର୍ବେଙ୍କ ଦିଶେ ଦେହବର୍ଣ୍ଣ ॥
ସେ ଗ୍ରାମରେ ପାପଚିହ୍ନ ନ ମାରଇ ପଶି ।
ଅଗ୍ନି ଯୋଗେ ତୁଳା ଯେହ୍ନେ ହୁଏ ଭସ୍ମରାଶି ॥
ତାହା ଦେଖି କଳିଯୁଗ କରଇ ବିଚାର ।
ସମସ୍ତେ କରୁଅଛନ୍ତି ଦ୍ୱାପର ଆଚାର ॥
ମୋହର ଆସିବା କଥା ଗୋଚରନ୍ତ ନାହିଁ ।
ତେଣୁକରି ମୋର ମାର୍ଗେ ନ ଚଳନ୍ତି କେହି ॥

କେତେ ଧର୍ମ ଜାଣିମା ନା ଅଟଇ ଏହାଙ୍କର ।
ମୋହଠାରୁ ବଳ କେହ୍ନେ ହେବେ ବିପ୍ରବର ॥
ଏମନ୍ତ ବିଚାର କଲା କରେ ମନେ ମନ ।
ଏଥୁଅନ୍ତେ ଯାହା ହେଲା ଶୁଣ ହୋ ସୁମନ ॥
ଜନ୍ମଦିନେ ଏକ ବିପ୍ର ଗୃହେ ଅକସ୍ମାତେ ।
କୁଣିଆ ସାଇଁଜଣ ଯେ ମିଳିଲେ ତୁରିତେ ॥
ଦେଖିକରି ବିପ୍ରବର ମନେ ସ୍ନେହଧରି ।
କୁଳଧର୍ମ ପ୍ରକାରେ ସେ ସମ୍ଭାଷଣା କରି ॥
ବସିଣ କୁଶଳ ବାର୍ତ୍ତା ହେଲେ କୁହାକୁହି ।
ତାହାର କୁଳବଧୂ ଯେ ଗୃହେ ଥିଲା ରହି ॥
ହୋମଘରେ ରହିଲା ସେ ଦେଇଣ କବାଟ ।
ବାହାରକୁ ଆସିବାକୁ ନ ପାଇଲା ବାଟ ॥
ଏକାଳେ ଝାଡ଼ା ଚଳପ ଆସିଲା ତାକୁ ଦେଲା ।
ହୋମକୁଣ୍ଡ ମଧ୍ୟେ ମଳ ଉତ୍ସର୍ଗ କରିଲା ॥
ବିଚାରଇ ପ୍ରଭାତରୁ କାଢ଼ିଦେବି ମୁହିଁ ।
କେ ଏହା ତ ନ ଜାଣିବେ ଆସିବି ଗାଧୋଇ ॥
ଶାଶୁ ଶ୍ୱଶୁର ଶୁଣିଲେ ହେବ ବଡ଼ ଲଜ ।
ଜବା ମାତ୍ର ଗାଳିଦେବେ ତାହାଙ୍କ ତନୁଜ ॥
ଏସନେକ ଭୁଞ୍ଜି ଭୁକ୍ତ କୁଣିଆ ଯେ ଗଲେ ।
ବେଗେ ହୋମଘରୁ ବୋହୂ ବାହାର ହୋଇଲେ ॥
ନଦୀକୂଳରେ ଯାଇଣ ଶଉଚ ହୋଇଲା ।
ଗୃହକୁ ଆସି ରନ୍ଧନ ବିଧିମାନ କଲା ॥
ତହୁଁ ଭୋଜନ ଶୟନ କଲେ ସର୍ବେ ଯାଇ ।
କେତେକ୍ଷଣେକ ବେଳେ ପୁଣି ରାତ୍ରିଗଲା ପାହି ॥
ନିଦେ ପ୍ରଭାତରୁ ଉଠି ନ ପାରିଲା ବୋହୂ ।
ଦୁଇଘଡ଼ି ବେଳ ଆସି ହେଲା କହୁଁ କହୁଁ ॥
ଶାଶୁ ଉଠିଣ ମନ୍ଦିର କରି ପରିଷ୍କାର ।
ଯାଇଣ ପ୍ରବେଶ ହେଲା ଆଗ ହୋମଘର ॥
ଭସ୍ମ କାଢ଼ନ୍ତେ କୁଣ୍ଡରେ ହାତକୁ ପୂରିଲା ।
ସୁବର୍ଣ୍ଣ କାକର ଅଟି ଗୋଟିଏକ ତହିଁ ॥
ଦେଖିଣ ବ୍ରାହ୍ମଣୀ ବୁଢ଼ୀ ହେଲା ଚମତ୍କାର ।
ନେଇ ସ୍ୱାମୀ ପାଶେ ଧାଇଁଲା ହୋଇ ତତପର ॥
ସତମୁଖ ଗୃହୀ ବୁଢ଼ୀ କହଇ ଏସନ ।
ଅତି ଆଚମ୍ବିତ କଥା ସାବଧାନେ ଶୁଣ ॥
ହୋମକୁଣ୍ଡୁ ବାହାରିଲା ସୁବର୍ଣ୍ଣ କାକର ।
ଭଲ କରି ଲୁଚାଅ ତୁମ୍ଭେ କେମନ୍ତ ଏ ସର ॥

ଏହା ଶୁଣି ବ୍ରାହ୍ମଣ ଯେ ମନରେ ଭାଳଇ ।
କେବଣ ଚରିତ ଏହା ଦେଖିଲିତ ନାହିଁ ॥
କିଅବା ଆମ୍ଭର ଭାଗ୍ୟ ତପସ୍ୟାର ବଳେ ।
ବିଧାତା ଆଣି ଏ ଧନ ଦେଲା ପୁଣ୍ୟଫଳେ ॥
ଯାହାହେତୁ ସୁବର୍ଣ୍ଣତ ମିଳିଲା ଗୋ ସହି ।
କାହାରି ଆଗେ ଏକଥା ନ କହିବୁ ତୁହି ॥
ଶାଶୁ ଶ୍ୱଶୁର ଏରୂପେ କରନ୍ତି ବିଚାର ।
ଉହାଡ଼ରେ ଥାଇ ବୋହୂ ଶୁଣିଲା ସେ ଗିର ॥
ମୁଡ଼ି କହସା ଦେଇଣ ବୋଲଇ ଏମନ୍ତ ।
ଶାଶୁ ଯାହାକୁ କହିଲେ ଶୁଣ ତା ଚରିତ ॥
ନବୁଝି ବୋଲୁଛ ଯାହା ପୁଣ୍ୟଫଳ ବୋଲି ।
ହୋମକୁଣ୍ଡ ମଧ୍ୟେ ମୁହିଁ ବାଡ଼ ବସିଥିଲି ॥
ମୋହର ଦେହରୁ ତୁମ୍ଭେ ସ୍ୱର୍ଣ୍ଣ ଲୋଡ଼ିଥର ।
ସତ କହିଲଇଁ ଏଥେ ଆନ ନ ବିଚାର ॥
ଏକଥା ଶୁଣି ବ୍ରାହ୍ମଣ ହୋଇ ବଡ଼ ତୋଷ ।
ବୋଲଇ ବୋହୂକୁ କେତେ ଜାତ ବାଡବସ ॥
ଶୁଣ ହୋ ସୁମନ ତୁମ୍ଭେ କହନ୍ତି ଚୈତନ୍ୟ ।
କଳିଯୋଗୁଁ ତାହାଙ୍କର ଭ୍ରମହେଲା ମନ ॥
ତାହାର ଦେହରୁ ସିନା ବିଷ୍ଠା ସୁନାହେଲା ।
ଦିନକୁ ଦିନ ବୋହୂ ସେ କର୍ମ ପ୍ରବର୍ତ୍ତିଲା ॥
ବିଶେଷ ଶ୍ୱଶୁରଠାରୁ ପାଇଲା ସେ ବଳ ।
ହୋମକୁଣ୍ଡେ ପ୍ରତିଦିନ ଉତ୍ସର୍ଗିଲା ମଳ ॥
ଦିନକରେ ଶହେ ତୋଳା ସ୍ୱର୍ଣ୍ଣହେଲା ଜାତ ।
ଦେଖୁ ଦେଖୁ ତାର ଧନ ହୋଇଲା ବହୁତ ॥
ବରଷାକାଳରେ ନଦୀ ବଢ଼ଇ ଯେସନ ।
ସେହିରୂପେ ପୁରେ ତାର ପୂରିଗଲା ଧନ ॥
ଏହା ଦେଖି ପଡ଼ିଶାଏ କରନ୍ତି ବିଚାର ।
କେଉଁକର୍ମ କରି ଏହି ହେଲା ଧନେଶ୍ୱର ॥
ଏମନ୍ତ ଭାଳି ତାହାକୁ ପୁଚ୍ଛିଲେ ସକଳେ ।
କେଉଁକର୍ମ ଏତେଧନ ପୂରିଛି ତୋ ଆଳେ ॥
ବ୍ରାହ୍ମଣ ବୋଲେ ମୁ କିଛି ଫନ୍ଦା କରିନାହିଁ ।
ମୋର ବୋହୂ ହେତୁ ଲକ୍ଷ୍ମୀ ଗୃହେ ଅଛି ରହି ॥
କେଉଁ କର୍ମ କରିଅଛି ସେ ସିନା ଜାଣିବ ।
ଆମ୍ଭମାନଙ୍କୁ ଏ କଥା କାହୁଁ ଜଣାଯିବ ॥
ଏମନ୍ତ ରୂପରେ ତହିଁ କେତେଦିନ ଗଲା ।
ପଡ଼ିଶା ଘରରୁ ଜଣେ ବୋହୂକୁ ପୁଚ୍ଛିଲା ॥

ବୋଇଲା ଗୋ କୁଳବଧୂ ଶୁଣ ମୋ ବଚନ ।
ଆମ୍ଭର ଗୃହରେ କିମ୍ପା ନ ହୋଇଲା ଧନ ॥
ତାହାର ବୋହୂ କରିଲା କେଉଣ କରମ ।
ଗୁପତରେ ବୁଝିଆସ ଏଥିର ମରମ ॥
ଦଇବେତ ଦୁଇବୋହୂ ଅଟନ୍ତି ସଙ୍ଗାତ ।
ଦିନେ ପାଣିପାଇଁ ଗଲେ ହୋଇ ଏକତ୍ରିତ ॥
ଗୁପତେ ସେ ପଚାରଇ କହ ଗୋ ମିତଣି ।
ଏତେଧନ ପାଇଲୁ କି କର୍ମକରି ପୁଣି ॥
ଏହିକଥା ମୋର ଆଗେ ସତକହ ସହି ।
ସତ ନ କହିଲେ ଜାଣେ ହେବ ମିତ୍ରଦ୍ରୋହୀ ॥
ସଙ୍ଗାତୁଣୀ ମୁଖୁ ଶୁଣି କହେ ସେ ତରୁଣୀ ।
ହୋମକୁଣ୍ଡେ ବାଡ ବସେ ଶୁଣ ଗୋ ମିତଣି ॥
ସକାଳୁ ଦେଖନ୍ତେ ମଳ ହୋଇଥାଇ ସୁନା ।
ଏହିକର୍ମ କେବଳ ମୁଁ କରିଅଛି ସିନା ॥
ତହୁଁ ଜଳ ଘେନି ଦୁହେଁ ଅଇଲେ ଘରକୁ ।
ସବୁ କହିଲା ସେ ଯାଇଁ ଶାଶୁ ଶ୍ୱଶୁରଙ୍କୁ ॥
ଶ୍ୱଶୁର କହିଲା ବାଡବସ ବେଗ କରି ।
ହୋମକୁଣ୍ଡେ ବସି ବୋହୂ ପେଟକୁ ଓଟାରି ॥
ପ୍ରତିଦିନ ମଳ ସେହି ଉତ୍ସର୍ଗ କରିଲା ।
ସେହିପରି ହୋଇ ତାର ଗୃହେ ଧନହେଲା ॥
କ୍ରମରେ ସେ କଥା ଗୋଷ୍ଠି ପାଇଲା ପ୍ରକାଶ ।
ସକଳେ ସେରୂପେ କଲେ ହୋଇଣ ହରଷ ॥
ତାହା ନ କରି ରହିଲେ ଏକା ଦୁଇଘର ।
ବିଚାରିଲେ ଅଧର୍ମତ କେବେ ନାହିଁ ପାର ॥
ବାକି ସର୍ବେ ଧନୀହେଲେ କୁବେରର ପରି ।
ପ୍ରତିଦିନ ସୁବର୍ଣ୍ଣ ସେ ବିକାଣିଶା କରି ॥
ଟାପର କରନ୍ତି ସର୍ବେ ସେ ଦ୍ୱିଜ ଦୁହିଙ୍କୁ ।
ଦୁଃଖ ନ କରି ସେ ଥାନ୍ତି ସୁମରି ଧର୍ମକୁ ॥
ଯଥାବିଧି ହୋମ ନିତି କରୁଥାନ୍ତି ମନ୍ତ୍ରେ ।
ଏହିରୂପେ କିଛିକାଳ ଅତୀତ ହୁଅନ୍ତେ ॥
ଏକଦିନେ ସେ ବିପ୍ରଙ୍କୁ ତାହାଙ୍କର ନାରୀ ।
କହନ୍ତି ଦେଖ ଏ ଧନୀ ହୋଇଲେ କିପରି ॥
ତାହାଙ୍କର ଧର୍ମ ଆମ୍ଭେ କରିବା ଗୋସାଇଁ ।
ଧନ ହେଲେ ଅମ୍ଭଗୃହେ କଷ୍ଟ ତେବେ ଯାଇ ॥
ବ୍ରାହ୍ମଣେ ବୋଇଲେ ତୁମ୍ଭେ ନ କହ ଏମାନ ।
ଅଧର୍ମରେ ପ୍ରାପତାବା ହେବ କାହିଁ ଧନ ॥

ଅଧର୍ମରେ ଧନ ଯେବେ ହୋଇଥାଇ ଠୁଳ ।
ଗଲାବେଳେ ସେ ଧନର ନ ରହଇ ମୂଳ ॥
ଆମ୍ଭର ନିମନ୍ତେ ଏହି ଗ୍ରାମ ଅଛି ରହି ।
ଆମ୍ଭେ ଅକର୍ମ କରିବା ଯେବେ ଆଗୋ ସହି ॥
ତତକ୍ଷଣେ ଏହୁ ଗ୍ରାମ ପଡିବ ଲେଉଟି ।
ଆନକରି ନ ପାରଇ ହେଲେ ପରମେଷ୍ଠୀ ॥
ଘରକରେ ଜଣେ ଯେବେ ଥାଏ ଧର୍ମବନ୍ତ ।
ତାହାଯୋଗୁ ସୁଖେ ଥାନ୍ତି ଅନ୍ୟାନ୍ୟ ସମସ୍ତ ॥
ଗ୍ରାମକରେ ଧର୍ମବନ୍ତ ଜଣେ ଥିବ ଯେବେ ।
ସେ ଗ୍ରାମକୁ ପ୍ରମାଦ ଗୋ ନ ଘଟିବ କେବେ ॥
ଯେବେ ସେ ଜନ ଅନ୍ୟାୟ ପଥରେ ଚଳିବ ।
ତେବେ ସେହି ଘରଗ୍ରାମ ଜାଣେ ନାଶହେବ ॥
ତୁମ୍ଭେ ସ୍ତିରୀ ଜାତି ଗୋ ନ ଜାଣ ସେହି କର୍ମ ।
ଜାଣି ଜାଣି କେମନ୍ତେ ଗୋ କରିବା ଅଧର୍ମ ॥
ଆମ୍ଭେ ଏଥୁ ଗଲେ ଏହୁ ଗ୍ରାମ ଯିବ ନାଶ ।
ହେଉବୋଲି ବ୍ରାହ୍ମଣୀଏ ହେଲେ ହସ ହସ ॥
ଆମ୍ଭଙ୍କୁ ଏ ସ୍ତ୍ରୀମାନେ ବୋଲୁଛନ୍ତି ଯାହା ।
ତୁମ୍ଭେମାନେ ଶୁଣିଲେ ହୋ ନ ସହିବ ତାହା ॥
ଜଳଘାଟରୁ ସଲିଳ ଆଣିବାର ବେଳେ ।
ଟାହିଶୁଣି କଳଶ ଯେ ଖସିପଡେ ତଳେ ॥
ଏହାଙ୍କ ଉପହାସ ନ ସାରୁ ଆମ୍ଭେ ସହି ।
ଚାଲ ଏ ଗ୍ରାମରୁ ବେଗେ ଯିବାଟି ପଳାଇ ॥
ଆମ୍ଭେ ଗଲେ ଯେବେ ଏହୁ ଗ୍ରାମ ଯିବ ନାଶ ।
ତେବେ ତାହା ନ କରିଣ କିମ୍ପା ଏଥେ ବସ ॥
ନ ଗଲେ କରିବୁ ଆମ୍ଭେ ତାହା ନିତି ନିତି ।
କିଏ ସହି ପାରିବ ଯେ ଅଲବସ୍ତ୍ର ଶାସ୍ତି ॥
ଶୁଣିଣ ବେନି ବ୍ରାହ୍ମଣ ବିସ୍ମୟ ଚିତ୍ତରେ ।
ବୋଇଲେ ଚାଲ ଗୋ ଯିବା କାଲି ପ୍ରଭାତରେ ॥
ଏତେବୋଲି ଦୁହେଁ ଗ୍ରାମ ଭିତରକୁ ଗଲେ ।
ସମସ୍ତ ବିପ୍ରମାନଙ୍କୁ ଡକାଇ କହିଲେ ॥
ତୁମ୍ଭେମାନେ ଅକର୍ମରେ ମାତିଲ ସତତ ।
ବହୁତ ସମ୍ପଦ ପାଇ ହୋଇଲ ଯେ ମତ୍ତ ॥
ନିର୍ଦ୍ଧନ ଦେଖି ଆମ୍ଭଙ୍କୁ କରି ଉପହାସ ।
ଆମ୍ଭେ ଏ ଗ୍ରାମରୁ ଗଲେ ଯିବ ତୁମ୍ଭେ ନାଶ ॥
ଏଥିରେ ଆମ୍ଭର ତିଳେମାତ୍ର ଦୋଷନାହିଁ ।
ଏତେବୋଲି ଦୁହେଁ ଗଲେ ମନେ ତାପ ବହି ॥

କନ୍ତ ନିର୍ଦ୍ଧନ ଅଛନ୍ତି ଦୁଇଟି ବ୍ରାହ୍ମଣ ।
ଛତା ସିଡ଼ା ଶଙ୍ଖୁଳି ଯେ ଶାଳଗ୍ରାମମାନ ॥
ବେଦଶାସ୍ତ୍ର ପୁରାଣାଦି ପୋଥିମାନ ଧରି ।
ଗଡ଼ୁ କୁଶବନ୍ଧ ତମ୍ବାପାତ୍ର ଆଦି କରି ॥
ଏ ସକଳ ସଙ୍ଗେ ନେଇ ହୋଇଲେ ବାହାର ।
ଗ୍ରାମରୁ କିଛିଦୂର ସେ ହୁଅନ୍ତେ ଅନ୍ତର ॥
ଚତୁଷ୍ପଦେ ସେହି ଗ୍ରାମ କର୍ମମାନ ହୋଇ ।
ଲୁହୁଡ଼ ଆଚ୍ଛାଦିଲା ସେ ଶୂନ୍ୟ ନ ଦିଶଇ ॥
ମଡ଼ ମଡ଼ ହୋଇଣ ସେ ଶବ୍ଦେକ ଦେଲା ।
ତତକ୍ଷଣେ ଭୂମିଖଣ୍ଡ ଲେଉଟି ପଡ଼ିଲା ॥
ଧର୍ମରେ ଥିବାରୁ ବର୍ତ୍ତିଗଲେ ଦୁଇ ଘର ।
ଧର୍ମବଳ ଥିବାରୁ ସେ ଦ୍ରୋହୁଁ ହେଲେ ପାର ॥
ଅଧର୍ମ ନ କର ଯେଣୁ ଧର୍ମେ କଲେ ଆଶ ।
ସଂସାରେ ରହିଲେ ତେଣୁ ତାହାଙ୍କର ବଂଶ ॥
ଯାହା କହିଲଇଁ ତାହା ଶୁଣିଲୁ ସୁମନ ।
ସୁକର୍ମ କୁକର୍ମର ଯେ ଏମନ୍ତ ବିଧାନ ॥
କହଇ ମାଧବ ନରେ ସୁକର୍ମରେ ଚଳ ।
ଅକର୍ମରେ ଗଲେ ନିଶ୍ଚେ ହେବ ଅମଙ୍ଗଳ ॥



ବାର ଓ ଅନୁକୂଳାଦି କଥନ ଏବଂ ସ୍ତ୍ରୀ ଓ
ନୃପତିର ଲକ୍ଷଣ ।

ଶୁଣି ସୁମନ ପରମ ସନ୍ତୋଷ ଚିତ୍ତରେ ।
ବେଳାଙ୍କର ଯୋଡ଼ି ପୁଣି ଚୈତନ୍ୟ ପଦରେ ॥
କଥାଏ ପୁଛିବି ସ୍ୱାମୀ ସଂସାରର ହିତେ ।
ସଂଶୟ ଛିଣ୍ଡଇ ତାହା କହି ଦେବା ମୋତେ ॥
ସାତବାରରେ ହେଉଛି ପୃଥ୍ୱୀ ଆତ ଯାତ ।
ସତାଇଶ ନକ୍ଷତ୍ର ଯେ ତହିଁରୁ ସମ୍ଭୂତ ॥
କେଉଁ ବାରେ କି ନକ୍ଷତ୍ର ଯୋଗ ଯେ କରଇ ।
ଅମୃତ ଯୋଗ ସଂସାରେ କାହାକୁ ବୋଲଇ ॥
କେଉଁବାରେ କେଉଁଦିଗେ କରଇ ଗମନ ।
ଅନୁକୂଳବେଳେ କେହୁ ମଙ୍ଗଳ ଶକୁନ ॥
କେବଣ ଶକୁନରେ ଯେ କାର୍ଯ୍ୟ ହୁଏ ସିଦ୍ଧି ।
କେବଣ ଶକୁନମାନେ ଅଛନ୍ତି ବିରୋଧି ॥
କେବଣ ଲକ୍ଷଣ ଥିଲେ ପୁଂସ ହତଶିରି ।
କେବଣ ଅବଗୁଣରେ ଅଲକ୍ଷଣୀ ନାରୀ ॥
କେବଣ ପୁଣ୍ୟ କରିଲେ ହୋଇବ ବ୍ରାହ୍ମଣ ।
କେବଣ ଗୁଣ ଥିଲେ ହୋ ବୈଷ୍ଣବ ଲକ୍ଷଣ ॥
କେବଣ ଗୁଣ ଥିଲେ ସେ ରାଜା ବୋଲି କହି ।
କେଉଁ ଅବଗୁଣ ଥିଲେ ଯୋଗ ନୁହେ ମନ୍ତ୍ରୀ ॥
ସଂସାରଭିତରେ ଛନ୍ତି ବାଆସ୍ତୁରି ଜାତି ।
କେମନ୍ତ କର୍ମ କଲେ ସେ ଉତ୍ତମ ବୋଲନ୍ତି ॥
ଗୋଟି ଗୋଟି କରି ମୋତେ କହି ଦେବା ପୁଣ
କେବଣ କର୍ମେ ଉତ୍ତମ ହୁଏ ନିଜ ଗୁଣ ॥
ଭିନ୍ନ ଭିନ୍ନ କରି ମୋତେ ବିସ୍ତାରି କହ ।
ମୋହର ମନରୁ ତୁମ୍ଭେ ସଂଶୟ ଛିଣ୍ଡାଅ ॥
ଚୈତନ୍ୟ ବୋଲୁଛନ୍ତି ଶୁଣ ହେ ସୁମନ ।
ତୁ ଯାହା ପୁଚ୍ଛିଲୁ ଏହୁ ଅତ୍ୟନ୍ତ ଗହନ ॥
ଲକ୍ଷେ ଗ୍ରନ୍ଥ ପାଠ ହୁଏ ଭିନ୍ନ ଭିନ୍ନ ଗତି ।
ବହୁ ପ୍ରକାରେ କବିଏ ବଖାଣି ଅଛନ୍ତି ॥
ଏକବ୍ରହ୍ମ ବୋଲି କରି ସର୍ବେ ଜାଣୁଆଇଁ ।
ତଥାପି ପୁରାଣେ ଭିନ୍ନେ ଭିନ୍ନେ ଛନ୍ତି କହି ॥
ତୁ ଯାହା ପୁଛାକଲୁ ଏ ଜଉତିଷ ମତ ।
ସଂକ୍ଷେପେ କହିବା ଏହା ତୋହର ଅଗ୍ରତ ॥
ଏତେ ବୋଲି ଚୈତନ୍ୟ ବିଷ୍ଣୁଙ୍କୁ ସୁମରି ।
ବୋଇଲେ ସାବଧାନେ ଶୁଣ ହେତୁ ଦେଇକରି
ରବିବାରେ ହସ୍ତା ଋକ୍ଷ ଯଦ୍ୟପି ହୋଇବ ।
ତେବେ ସେ ଅମୃତଯୋଗ ବୋଲିଣ ଜାଣିବ ॥
ଶ୍ରବଣାନକ୍ଷତ୍ର ହେବ ସୋମବାରେ ଯେବେ ।
ସେ ମଧ୍ୟ ଅମୃତଯୋଗ ଜାଣିବୁଟି ତେବେ ॥
ମଙ୍ଗଳବାରରେ ଯେବେ ରେବତୀ ପଡ଼ିବ ।
ଅମୃତଯୋଗ ବୋଲିଣ ତାହାକୁ ଜାଣିବ ॥
ଅନୁରାଧାନକ୍ଷତ୍ର ଯେ ବୁଧବାରେ ହେଲେ ।
ତେବେ ଅମୃତଯୋଗକୁ ପାଇବଟି ଭଲେ ॥
ଗୁରୁରେ ପୁଷ୍ୟାନକ୍ଷତ୍ର ଯେବେ ଜାଣ ହୋଇ ।
ତେବେ ସେ ମନ ଅମୃତଯୋଗ ବୋଲି କହି ॥
ଅଶ୍ୱିନୀନକ୍ଷତ୍ର ଯେବେ ହେବ ଶୁକ୍ରବାରେ ।
ଅମୃତଯୋଗ କହନ୍ତି ତାକୁ ବିଜ୍ଞନରେ ॥
ଶନିବାରରେ ରୋହିଣୀ ତାରା ଯେବେ ହୋଇ
ତେବେ ସେ ମନ ଅମୃତଯୋଗ ବୋଲି କହି ॥
ଏହି ସାତନକ୍ଷତ୍ର ଯେ ସାତବାରେ ହେଲେ ।
ଅମୃତଯୋଗ ଏହାକୁ ବୋଲି ଜାଣ ଭଲେ ॥

ବାରର ଦୋଷାଦୋଷ ଯେ ଏଥିରେ ନ ଘେନ
ଅମୃତ ସିଦ୍ଧି ଯୋଗକୁ ଶୁଣ ହୋ ସୁମନ ॥
ସୋମ ଶନିବାରେ ପୂର୍ବଦିଗେ ଯାତ୍ରା ନାହିଁ ।
ପଶ୍ଚିମକୁ ସେହିଦିନ ଉତ୍ତମ ଅଟଇ ॥
ବୁଧ ଗୁରୁବାରର ଯାତ୍ରା ଉତ୍ତରକୁ ଶୁଭ ।
ଦକ୍ଷିଣ ଦିଗକୁ ଜାଣ କଦାପି ନ ଯିବ ॥
ରବି ଶୁକ୍ରବାରେ ପୂର୍ବଦିଗେ ଯାତ୍ରା ହୋଇ ।
ଦକ୍ଷିଣଦିଗକୁ ଗଲେ ମଙ୍ଗଳ ନହୁଇ ।
ଶନି ମଙ୍ଗଳବାର ଯେ ଶୁଭ ଦକ୍ଷିଣକୁ ।
ଅନୁକୂଳ ନ କରିବ ଉତ୍ତରଦିଗକୁ ॥
ଏ ଚାରିଦିଗକୁ ପୁଣି ଏହି ସାତବାର ।
ବିଚାରି ଅନୁକୂଳ ହୋ କରି ମନ ସ୍ଥିର ॥
ଯେଉଁଦିନ ଯେ ଦିଗକୁ ନୁହେଁ ଅନୁକୂଳ ।
ବଳାତ୍କାରେ ଗଲେ ମନ ନୁହଇ ସୁଫଳ ॥
ପୂର୍ବରେ ଗୋଧୂଳିଯାତ୍ରା ପଶ୍ଚିମରେ ଉଷା ।
ଉତ୍ତରେ ଦ୍ୱିପ୍ରହର ଦକ୍ଷିଣରେ ନିଶା ॥
ଶୁଣିକରି ସନ୍ତୋଷ ଯେ ହୋଇଲ ସୁମନ ।
ବୋଇଲକ କୁହ ଏବେ ଶୁଭର ଲକ୍ଷଣ ॥
ଚଇତନ୍ୟ ବୋଲୁଛନ୍ତି ଶୁଣ ହେ ସୁମନ ।
ଏବେ କହି ଦେବା ତୋତେ ଶୁଭର ଲକ୍ଷଣ ॥
ଯେତେବେଳେ ମନ ଅନୁକୂଳ କରି ଯିବ ।
ଉଠିହୋଇ ନାସିକାରେ କର ଆଗ ଦେବ ॥
ଯେଉଁ ନାସିକା ପୁଡ଼ାରୁ ବାୟୁ ବୋହୁଥିବ ।
ସେହି ପାଦ ଗୋଇଠିକି ଯେ ଆଗ ବଢ଼ାଇବ ॥
ଗୃହ ମଧ୍ୟୁ ବାହାରନ୍ତେ ଚାହିଁବ ଯେ ଦିଗେ ।
ଧେନୁ ବତ୍ସା ଯୁକ୍ତ ହୋଇଥିବ ସେହି ଭାଗେ ॥
କି ଅବା ନେଉଳ ମୃଗ ଗଜ ଯେ ତୁରଙ୍ଗ ।
ଅନ୍ୟନାରୀ ପୂର୍ଣ୍ଣକୁମ୍ଭ ଏକ ଆଣୁଥିବ ॥
କିବା ଦକ୍ଷିଣ ଦିଗରେ ଅଗ୍ନି ଥିବ ରହି ।
କି ଅବା ନେତ୍ରେ ଦେଖିବ ପୁଣି ବିପ୍ର ଦୁଇ ॥
ଆବର ଗର୍ଭିଣୀନାରୀ ରଜାଙ୍କୁ ଦେଖିବ ।
କି ଅବା କାଞ୍ଚନ ପୁଷ୍ପମାନ ଦୃଶ୍ୟ ହେବ ॥
ଦଧି ମାଛ ମଧୁ ଘୃତଠାରୁ ଆଦି କରି ।
ବାମ ପାର୍ଶ୍ୱରେ ଶବ ଶୃଗାଳ ବିହାରି ॥
ରାଜହଂସ ଦେଖିବ ବା ପୁଣି ଶ୍ୱେତ ପାରି ।
ଅକସ୍ମାତେ ଦେଖାଯିବ ଯେବେ ମତ୍ସ ଘରି ॥

ଏହିସବୁ ଶୁଭଯୋଗ ଅନୁକୂଳ ବେଳେ ।
ଗୋଟିଏହେଲେଦେଖିବଯେବେକେଳେକୋଳେ
ଯେଉଁ କାର୍ଯ୍ୟରେ ଗମିବ ହୁଅଇ ସେ ଭଲ ।
ଆଗ ପଛେ ଉଡୁଥିବ କିବା ଖଞ୍ଜଣଲ ॥
ମଙ୍ଗଳ କାରକ ଏହି ସବୁ ସୁଲକ୍ଷଣ ।
ଅଶୁଭ ଲକ୍ଷଣ ଏବେ ସାବଧାନେ ଶୁଣ ॥
ନିଜ ନାରୀ ରଜୋବତୀ ଯଦ୍ୟପି ହୋଇବ ।
ତେତେବେଳେ କେବେ ଅନୁକୂଳ ନ କରିବ ॥
କିବା ପରସ୍ପରେ କଳି କରିବେ ଶିଗଣ୍ଡ ।
ପାଦ ବଢ଼ାଇବା ବେଳେ କିବା ଛିଙ୍କ ପଡ଼ ॥
ମୁକଳିତ କେଶ ଅବା ନୟନେ ଦେଖିବ ।
କି ଅବା ଜନନୀ ତାର ନାସ୍ତି କରୁଥିବ ॥
ଏସବୁ ନ ମାନି ଯେବେ ବିଦେଶେ ଗମଇ ।
ଅବଶ୍ୟ ମରିବ ଏଥେଁ ସଂଶୟ ତ ନାହିଁ ॥
କିବା ବିଷଧର ଆସି ଓଗାଳିବ ଆଗେ ।
ଉତ୍ତମ ଲୋକେ ନାସ୍ତିବା କରିବେ ସଙ୍ଗେ ॥
ଏମନ୍ତ ପ୍ରକାରେ ଯେବେ ଯାତ୍ରା କରି ଯାଇ ।
ଅବଶ୍ୟ ସେହି ଲୋକ ଯେ ମୃତ୍ୟୁକୁ ଲଭଇ ॥
ବୁଝାଇ କହିଲି ଶୁଭାଶୁଭ ଦୁଇମତ ।
ଶୁଭେ ଗଲେ ଜୟ ହୁଏ ଅଶୁଭରେ ହତ ॥
ରାତ୍ରଦିବସ ବତିଶ ଘଡ଼ି ଅଟେ ପୁଣି ।
ଶୁଭ ଅଶୁଭ ଏଥିରେ କରୁଛି ଭ୍ରମଣି ॥
ମାହେନ୍ଦ୍ର ବାରୁଣୀ ଦୁଇ ଅଟେ ଶୁଭବେଳ ।
ଅନଳ ବାୟବ୍ୟ ଦୁଇ ଅଟେ ଅମଙ୍ଗଳ ॥
ମାହେନ୍ଦ୍ର ବାରୁଣୀ ବାରି ଯାତ୍ରା କଲେ ଭଲ ।
ଅନଳ ବାୟବ୍ୟ ଗଲେ ଜାଣୁ ଜାଣୁ ମଲ ॥
ଏକଥାକୁ ବୁଝି ହେଳୁ କରି କାର୍ଯ୍ୟକର ।
କହୁଛନ୍ତି ଚଇତନ୍ୟ ଶୁଣ ମନ ସ୍ଥିର ॥
ପୁରୁଷର ଅଲକ୍ଷଣ କହିବା ଯେ ଶୁଣ ।
ଛେଦନ କରଇ ଯେହୁ ନିତ ନଖେ ତୃଣ ॥
କି ଅବା ନଖରେ ଭୂମି ପରେ କାଟେ ଗାର ।
ଅଳପ ଧଉତ ଯେହୁ କରଇ ପୟର ॥
ଅଳପ ଦାନ୍ତ ଘସେ ଯେ ନିର୍ମଳ ନ କରି ।
କେଶ ଯାର ଉଡୁଥାଏ ହୋଇ କେଁରି କେରି ॥
ଶୁଚିମନ୍ତ ନୁହଁର ଯେ ସ୍ନାନ ନ କରଇ ।
ସର୍ବଦା ମଳିନ ବସ୍ତ୍ର ପିନ୍ଧି ବୁଲୁଥାଇ ॥

ଅଳସୁଆ ପଣରେ ଯେ ନ କରଇ କୃଷି ।
ଆବର ଅନ୍ନ ଭୁଞ୍ଜଇ ବହୁକାଳ ବସି ॥
ସନ୍ଧ୍ୟାବେଳେ ଶୟନ ଯେ କରେ ପ୍ରତିଦିନ ।
କିବା ନିଦ୍ରା ସମୟରେ ହୁଏ ବିବସନ ॥
ଆପଣାର ଅଙ୍ଗରେ ଯେ ମାରେ କରତାଳ ।
ରବି ଅସ୍ତକାଳେ ଯେହୁ ବାନ୍ଧେ ମୁଣ୍ଡବାଳ ॥
ନିତ୍ୟ ଜୀବ ମାରିଣ ଯେ କରଇ ଭୋଜନ ।
ପରଦାରା ଧନରେ ଯେ ସଦା ଦିଏ ମନ ॥
ପରକୁ ପ୍ରମାଦ ଯେହୁ ଚିନ୍ତେ ଅନୁକ୍ଷଣ ।
ଏମାନ କଲେ ପୁରୁଷ ଅଟେ ଅଲକ୍ଷଣ ॥
କୁବେର ସମ୍ପଦ ଥିଲେ ନାରଖାର ହେବ ।
ଆନକର ଏକଥାକୁ ନ ପାରେ ଦଇବ ॥
ଏବେ କହିବା ତୁମ୍ଭଙ୍କୁ ସୁପୁରୁଷ ଚିହ୍ନ ।
ଆମ୍ଭର କାରଣେ ଯେହୁ ଭଜେ ନାରାୟଣ ॥
ସୁଚିତ୍ତ ଚିତ୍ତରେ ଦୟାବନ୍ତ ହୋଇଥିବ ।
ପରଦୁଃଖେ ଦୁଃଖୀହୋଇ ବଚନ କହିବ ॥
ଆପଣା କୁଶଳମାନ ନ ବାଞ୍ଛିବ ଚିତ୍ତେ ।
ସଂସାର କୁଶଳ ବାଞ୍ଛୁଥିବ ଅନୁବ୍ରତେ ॥
ଧର୍ମ କୀର୍ତ୍ତିମାନ କରି ଅଧର୍ମକୁ ଡରି ।
ତାହାଠାରେ ଦୟାରଖି ଥାନ୍ତି ଚକ୍ରଧାରୀ ॥
ତାହାର କଣ୍ଠରୁ ଶିରୀ ନ ଛାଡ଼ଇ ପୁଣ ।
ସେହିଲୋକ ବୋଲାଏ ଯେ ସୁପୁରୁଷ ଜାଣ ॥
ଶୁଣି ସୁମନ ବୀର ଯେ ପ୍ରମୋଦିତ ମନ ।
ହୃଦପଦ୍ମ ମଧ୍ୟରେ ସେ ଚିନ୍ତେ ଭଗବାନ ॥
ଗୋବିନ୍ଦ ଶ୍ରୀ ବାସୁଦେବ କୃଷ୍ଣ ନରହରି ।
ମୁକୁନ୍ଦ ମାଧବ ବିଷ୍ଣୁ ଅଚ୍ୟୁତ ଦୈତ୍ୟାରି ॥
ହେ ଦୀନ ବାନ୍ଧବ ଦୟାସିନ୍ଧୁ କୃପାନିଧି ।
ସୁଜନ ମାନଙ୍କୁ ରଖୁ ଦୁର୍ଜନଙ୍କୁ ବଧି ॥
ଏଥୁଅନ୍ତେ ପୁନରପି କହେ ଚଇତନ୍ୟ ।
ସ୍ତ୍ରୀରିଙ୍କର ଅଲକ୍ଷଣ ଶୁଣ ହୋ ସୁମନ ॥
କେଶ ତାମ୍ରବର୍ଣ୍ଣ ଯାର ଯୁଡ଼ାକୁ ନ ପାଇ ।
ଦକ୍ଷିଣ ଦିଗରେ ଫର ଫର ଉଡୁଥାଇ ॥
କୃଷାଳ ବକ୍ଷସ୍ଥଳ ଯେ ମଝା ଗୋଟି କ୍ଷୀଣ ।
ବିସ୍ତୃତ ନୟନ ବେନି ପିଙ୍ଗଳ ବରନ ॥
ଅତି ଅସୁନ୍ଦର ମୁଖ କପାଳ ଯେ ଉଚ୍ଚ ।
ଦନ୍ତପଟିରୁ ଦନ୍ତ ଉଠି ଦିଶେ ପରପଞ୍ଚ ॥
ଚାଲନ୍ତେଣ ଆଣ୍ଠୁକୁ ଯେ ଆଣ୍ଠୁ ବାଜୁଥାଇ ।
ଭୂମିରେ ପାଦ ଅଙ୍ଗୁଷ୍ଠି ମାନ ନ ବାଜଇ ॥
ରୋମାଞ୍ଚିତ ଶରୀର ଯେ ଦିଶଇ ପାଣ୍ଡୁର ।
କାତର ପରାୟେ ବାକ୍ୟ କହାଣି ଯାହାର ॥
ବଚନ ଶୁଭଇ କିବା ପୁରୁଷଙ୍କ ବାଣୀ ।
ଏମନ୍ତ ସ୍ତ୍ରୀରିଙ୍କି ଅଲକ୍ଷଣ ମଧ୍ୟେ ଗଣି ॥
ଅବଶ୍ୟ ବିଧବା ଜାଣ ହୁଏ ସେହୁ ନାରୀ ।
ଆନକର ନ ପାରଇ ତାହା କୁଶଧାରୀ ॥
କହନ୍ତି ଯେ ଚଇତନ୍ୟ ମନରାୟେ ଶୁଣ ।
ଏବେ କହିଦେବା ଯେଉଁ ରାଜାଙ୍କ ଲକ୍ଷଣ ॥
ପରଜା ପାଳିବ ରାଜା ପୁତ୍ରପ୍ରାୟେ କରି ।
ନିରସ ଲୋକମାନଙ୍କ ଶୁଣିବ ଗୁହାରି ॥
ଦେବତା ବ୍ରାହ୍ମଣଠାରେ ହୋଇବ ଭକତି ।
ପୁରାଣ ସେ ଦୁଇବେଳା ଶୁଣୁଥିବ ନିତି ॥
ପ୍ରଜାମାନଙ୍କ କରିବ ସଦା ସମ୍ଭାଷଣ ।
ସଂଗ୍ରାମରେ ଶୂରବନ୍ତ ନୋହିବ କୃପଣ ॥
ଗ୍ରହଶାନ୍ତି ନିମନ୍ତେ ସେ ହୋମ ଯଜ୍ଞକରି ।
ଭୋଜନ କରାଉଥିବ ବ୍ରାହ୍ମଣଙ୍କ ବରି ॥
ଏକଥ ରେ ଯେଉଁ ରାଜା ନୋହିବ ବିମୁଖ ।
ତାର ପ୍ରଜାମାନେ କେବେ ନ ପାଇବେ ଦୁଃଖ ॥
ଧର୍ମ କୀର୍ତ୍ତିମାନ ସଦା ବହୁତ କରିବ ।
ଖରାକାଳେ ପାଣି ପଣା ଅନ୍ନଦାନ ଦେବ ॥
ଅଧର୍ମ କଥାକୁ ମନେ ଥିବ ବଡ଼ଡର ।
ଧର୍ମକଥା ମାନଙ୍କୁ ସେ କରିବ ବିଚାର ॥
କରୁଥିବ ବିଷ୍ଣୁ ପ୍ରୀତିଅର୍ଥେ ସର୍ବ କର୍ମ ।
ଏମନ୍ତ ରାଜାକୁ କେବେ ନ ଛାଡ଼ିବ ଧର୍ମ ॥
ଆହୁରି ଅନେକ ଧର୍ମ କଥାମାନ ଅଛି ।
ଠିକ ଠିକ କରି ତୋତେ କହିଦେଲି ବାଛି ॥
ଅଧର୍ମ କରଇ ଜାଣ ଯେଉଁ ଦଣ୍ଡଧାରୀ ।
ତାହାକୁ ଭୋଗ କାହୁଁବା ହେବ ବସୁନ୍ଧରୀ ॥
ଅନେକ ଅନେକ ଶତ୍ରୁ ତାହାକୁ ହୁଅନ୍ତି ।
କେବେହେଁ ହୃଦରୁ ତାର ନ ଛାଡ଼ଇ ଭ୍ରାନ୍ତି ॥
ପଡ଼ିବ ଅଳପ କଥା ଯେବେ ତା ଉପର ।
ବହୁତ ବହୁତ ସେହୁ ହୁଅଇ ବିସ୍ତାର ॥
ଧର୍ମର କାରଣ ଅଟେ ସୂର୍ଯ୍ୟତେଜ ପ୍ରାୟେ ।
ଉଇଁବା ମାତ୍ରକରେ ସେ ସୃଷ୍ଟି ଘୋଟି ରହେ ॥

ଏମନ୍ତ ଅସ୍ତ୍ର ସେ ଯେବେ ଜାଣି ଜାଣି ଛାଡ଼ ।
ଶତ୍ରୁକୁ ସାଧିବ ଜିବା ଧରଣୀ ଜଉଡ଼ ॥
ସୁକର୍ମ ମାନ ଆପଣା ସ୍ୱଇଚ୍ଛାରେ କର ।
ଜଗତ୍ର ଲୋକମାନଙ୍କ କୁଶଳ ବିଗ୍ରହ ॥
ଶ୍ରୀକୃଷ୍ଣ ଚରିତ ଯେହ୍ନ ସୁଧାମୟ ରସ ।
ଶ୍ରବଣ ପଥରେ ତାହା କରୁଥିବ ଗ୍ରାସ ॥
କୃଷ୍ଣ ଦାମୋଦର ହରି ବିଷ୍ଣୁ ହୃଷୀକେଶ ।
ଭଗବାନ ଆନନ୍ଦ ଅନାଦି ପୁରୁଷ ॥
ନାରାୟଣ ଜନାର୍ଦ୍ଦନ ଗୋବିନ୍ଦ ଈଶ୍ୱର ।
ଗଦାପାଣି ଲକ୍ଷ୍ମୀପତି ପ୍ରଭୁ ଚକ୍ରଧର ॥
ଏମନ୍ତ ପ୍ରଭୁଙ୍କ ନାମ ଥିବ ଆଶ୍ରେକରି ।
ଜାଣେ ଭୋଗ କରିବ ସେ ତେବେ ବସୁନ୍ଧରୀ ॥
ଏମନ୍ତ ନ କରି ଯେବେ ଅଧର୍ମକୁ କରେ ।
ପରଧନ ପର କନ୍ୟା ବଳାତ୍କାରେ ହରେ ॥
ପରଜାକୁ ଯେଉଁ ରାଜା କରଇ ନିରାଶ ।
କୁମନ୍ତ୍ରୀ ବୁଦ୍ଧିରେ ପୃଥ୍ୱୀ କରଇ ଯେ ନାଶ ॥
କର୍ଣ୍ଣେ ପୁରାଣ ନ ଶୁଣି ନ କରଇ ଧର୍ମ ।
ସେ କାହୁଁ ଜାଣିବ ମନ କର୍ମ କେ ଅକର୍ମ ॥
ଦେବତା ବ୍ରାହ୍ମଣେ କେବେ ନୋହିବ ଭକତି ।
ନ କରଇ ଦାନ ଧର୍ମ କରଇ ଅନୀତି ॥
ଧର୍ମକାଳରେ ସେହ୍ନ ନ କରେ ଦାନ ପୁଣ୍ୟ ।
ତାହାକୁ ଅଜ୍ଞାନୀ ବୋଲି ଜାଣ ହୋ ସୁମନ ॥
ସୁସ୍ଥାନମାନଙ୍କେ ବାସ ନ କରଇ ସେହି ।
ସଂଗ୍ରାମ ପଡ଼ିଲେ ବେଗେ ଆସଇ ପଳାଇ ॥
ତେଣେ ମାନ ହାନି ତାକୁ ହୁଅଇ ବହୁତ ।
ତହିଁକି ଶୋଚନା ଯେ ନ ଥାଇ ତାର ଚିତ୍ତ ॥
ଅଦାତା କୃପଣ ହୀନ ଲୋଭ ମନେ ଧରି ।
ତାହାକୁ ଭୋଗ କାହୁଁ ବା ହେବ ବସୁନ୍ଧରୀ ॥
ପୂର୍ବ ତପ ଫଳେ ଭୋଗ ଥୋକାଏକ କରେ ।
ତିନିବର୍ଷ ମଧ୍ୟେ ତାର ରାଜାପଣ ସରେ ।
ଅଧର୍ମର ଧନ ସବୁ ହୁଅଇ ବିନାଶ ।
ଆନ ରାଜା ବଳେ ମାଡ଼ି ବସଇ ସେ ଦେଶ ॥
ଅଧର୍ମି ଲୋକକୁ ଯେ ନ ସହେ ବସୁନ୍ଧରୀ ।
ଅଧର୍ମି ଗ୍ରାମ ଖଣ୍ଡେ ନ ପାରେ ଭୋଗକରି ॥
ତାହାକୁ ଅପରଲୋକ ବୈରୀପକ୍ଷ ହୋଇ ।
ସେ ଗ୍ରାମକୁ ଘେନିଯାଏ ରାଜା ତଡଦେଇ ॥

ସୁକର୍ମ ଧର୍ମରେ ଥିଲେ ସବୁ ହୁଏ ସିଦ୍ଧି ।
ଇହାପରେ ତାହାକୁ କେ ନ ଥାଇ ବିରୋଧି ॥
ଜୀବନ୍ତେଣ ଅଇଶ୍ୱର୍ଯ୍ୟ ମଲେ ସ୍ୱର୍ଗେ ଯାଇ ।
କେତେକାଳ ଅନ୍ତରେ ସେ ପୁଣି ଜନ୍ମ ପାଇ ॥
ତାହାକୁ ଅନ୍ନ ଆଉ ନ ଛାଡ଼ନ୍ତି କେବେହେଁ ।
ସୁକର୍ମ ମାନ ଉଦେ ତା କର୍ମଯୋଗେ ହୁଏ ॥
କୌଣସି ଜନ୍ମେ ତାକୁ ନ ଥାଇ ଆଉ ଦୁଃଖ ।
ତାହାଙ୍କଠାରେ ସୁଦୟା କରନ୍ତି ଶ୍ରୀମୁଖ ॥
ସକଳ ଧର୍ମ ଶାସ୍ତ୍ରରେ ଦେବା ଦୟାପଦ ।
ବିଷୟ ବିଷକୁ ମନ ଅଟଇ ଏ ଗଦ ॥
ଗୋବିନ୍ଦ ପଦାରବିନ୍ଦେ ଥିବ ଯାର ଚିତ୍ତ ।
ତେବେ ଜାଣ ଆତ୍ମା ତାର ହୁଅଇ ମୁକତ ॥
ଶୁଦ୍ଧ ସୁବର୍ଣ୍ଣକୁ ଯେବେ ଅନଳରେ ଦହି ।
ସେ ଯେତେହେଁ ଅଧିକ ତାର ଜ୍ୟୋତି ପ୍ରକାଶଇ ।
ତେମନ୍ତ ପରିଏ ହୋଇବ ଧାର୍ମିକ ପୁରୁଷ ।
ନିର୍ମଳ ହୋଇବ କାୟ ଶୁଣ ମନଈଶ ॥
ଶୁଣିକରି ସୁମନ ଯେ ସନ୍ତୋଷିତ ଚିତ୍ତ
କହଇ ମାଧବ ପାରିକରି ଜଗନ୍ନାଥ ॥



ଦାମୋଦର ଦାସ ଚରିତ ।

ଏଥୁ ଅନନ୍ତରେ ପୁଣି କହନ୍ତି ଚୈତନ୍ୟ ।
ସାବଧାନ ହୋଇଣ ତୁ ଶୁଣ ହୋ ସୁମନ ॥
ଅଧର୍ମରେ ଯେଉଁଜନ ଧନ ଅର୍ଜିଥାଇ ।
ନିବିଡ଼ରେ ରଖିଥାଏ କାହାକୁ ନ ଦେଇ ॥
ତିନିଜଣ ଅଟନ୍ତି ଯେ ଅଧର୍ମର ଭାଇ ।
ଭାଇ ଭାଗନିଏ ଶାସ୍ତ୍ରେ ପ୍ରମାଣ ଅଟଇ ॥
ରାଜା ଅଗ୍ନି ଚୋର ତିନି ଅଧର୍ମର ଭାଇ ।
ଏ ଯେବେ ନିଅନ୍ତି ତାଙ୍କୁ ରଖନ୍ତା କେ ନାହିଁ ॥
ପୁତ୍ରେ ମନରେ ଯେବେ ନ ଦିଅଇ ଧନ ।
ବିବିଧ ଦଣ୍ଡ ଦେଇଣ ନିଅଇ ରାଜନ ॥
ବଳବନ୍ତ ପଣେ ରାଜା ନିଅଇ ସେ ବିତ୍ତ
ଦାନଧର୍ମ ନ କରିଣ ଗଲା ସେ ବିଅର୍ଥ ॥
ଅଧର୍ମ ମଞ୍ଜିଆ ଭାଇ ଅଟେ ହୁତାଶନ ।
ଦହନ କରି ସେ ଧନ କରଇ ଭୋଜନ ॥
ରାଜା ଅଗ୍ନି ବଳେ ଘେନି ଯାଆନ୍ତି ସେ କେତେ
ତାଙ୍କଠାରୁ ବାକି ପୁଣି ବଳିଥାଇ ଯେତେ ॥

ତାହାଙ୍କୁ ଯତନ କରି ସେହି ରଖିଥାଇ ।
ତସ୍କର ଯାନଙ୍କୁ ଯେ ଦେଖି ବଗୁରଇ ॥
ତାଙ୍କ ଭାଗ ଭାଇମାନେ ବଳାତ୍କାରେ ନେଲେ ।
ସ ନଭଇ ବୋଲି ମୋତେ କିଛିହିଁ ନ ଦେଲେ ॥
ଏବେ ବସି ବୁଦ୍ଧି ମୁହିଁ କରିବ କେମନ୍ତ ।
ବଳବନ୍ତ ନାହିଁ ମୁହିଁ ହେଲି ଅସମର୍ଥ ॥
ମୋହର ଭାଗେକ ମୁହିଁ ନେବ ଚୋରି କରି ।
ନୁହଇ ମୁଁ ବଳବନ୍ତ ସାମରଥ ସରି ॥
ଏତେଭଲ ଧନୀ ଗୃହେ ଚୋର ଯେ ପଶଇ ।
ଯାହା ଥାଏ ବାଳଧନ ନିଏ ସେ ଚୋରାଇ ॥
ଅଧର୍ମର ଧନ ପୁଣି ବଢେ ବେଗହୋଇ ।
ବରଷା କାଳରେ ଯେହ୍ନେ ବଢିଆସେ ନଈ ॥
ଦଶବରଷ ମଧ୍ୟରେ ବଢ଼ି ହୁଏ ମୂଳ ।
ଗଲେବେଳକୁ ସେ ଧନ ନ ରହଇ ମୂଳ ॥
ଅଧର୍ମର ଧନ ଯେତେ ଧନୀ ରଖିଥାଇ ।
ଜାତ୍ରତେ ରଖିଥାଇ ସେ ନ ଖାଇ ନ ଦେଇ ॥
ଦଇବର ଯୋଗେ ଏହିରୂପେ ଯାଇ ନାଶ ।
ଏଥିକୁ ସାବଧାନେ ହୋ ଶୁଣ ମନଈଶ ॥
ଶୁଣିଣ ସାନନ୍ଦ ହେଲି ମନୁ ନୃପରାଣ ।
ବୋଇଲେକ କହ ଏବେ ଧର୍ମ ଧନ ଗୁଣ ॥
ଅଧର୍ମର ଭାଇ ହେଲେ ରାଜା ଅଗ୍ନି ଚୋର ।
ଧର୍ମର ଅଟନ୍ତି କେକେମାନେ ସହୋଦର ॥
ଧର୍ମର ଧନ ଯେଣେ ସେ ମୂଳ ହୋଇଥାଇ ।
କାହିଁକି ତା ନ ନିଅନ୍ତି ଅଧର୍ମର ଭାଇ ॥
ଧର୍ମର ଭାଇ କିଏ ସେ କହ ଶୁଦ୍ଧ ଚିତ୍ତେ ।
ଯେମନ୍ତେ ମନକୁ ମୋର ଆସଇ ପରତେ ॥
ବୋଲେ ଚଇତନ୍ୟ ଏବେ ମନ ରାଜା ଶୁଣ ।
ଧର୍ମର ତିନିଭ୍ରାତା ଯେ ଅଟନ୍ତି ପ୍ରମାଣ ॥
ଦେବତା ଆବର ଦ୍ୱିଜ ପୁଣି ଅଭ୍ୟାଗତ ।
ଶାସ୍ତ୍ରରେ ପୂର୍ବରୁ ଏହା ହୋଇଛି ଉକତ ॥
ଶୁଦ୍ଧମନେ ଏଥିରେ ଯେ ଧନ ଲାଗୁଥାଇ ।
ନେଇ ନ ପାରନ୍ତି ତାହା ଅଧର୍ମର ଭାଇ ॥
ଅଧର୍ମର ନନ୍ଦନ ଯେ ଅଟଇ ଅକୀର୍ତ୍ତି ।
ଅକୀର୍ତ୍ତିର ନନ୍ଦନ ଯେ ଅଟଇ ଅନୀତି ॥
ଅନୀତିର ନନ୍ଦନ ଯେ ଅଟେ ଦୁରାଚାର ।
ଏତେ ଗୁଣ ରହିଥାଇ ଯେଉଁ ଲୋକଠାର ॥
ଧିକ ତାର ଜୀବନରେ ପ୍ରୟୋଜନ କିସ ।
ଦେହ ଅନ୍ତେ କରଇ ଯେ କୁମ୍ଭୀପାକେ ବାସ ॥
ଧର୍ମର ନନ୍ଦନ ଜାଣ ସୁଧର୍ମ ଅଟଇ ।
ସୁଧର୍ମର ନନ୍ଦନ ଯେ ସୁକର୍ମ ବୋଲାଇ ॥
ସୁକର୍ମର ନନ୍ଦନ ଯେ ଅଟଇ ସୁକୀର୍ତ୍ତି ।
ସୁକୀର୍ତ୍ତିର ନନ୍ଦନ ଯେ ଅଟଇ ସୁନୀତି ॥
ଏତେଗୁଣ ଘେନିଛନ୍ତି ସଂସାରେ ଯେ ନର ।
ସାଧୁ ସାଧୁ ଜୀବନ ହୋ ଧନ୍ୟ ତାହାଙ୍କର ॥
ଜୀବନ୍ତେଣ ଅଇଶ୍ୱର୍ଯ୍ୟ ମଲେ ସ୍ୱର୍ଗବାସ ।
ଇହ ପରେ ତାହାଙ୍କର ମହିମା ପ୍ରକାଶ ॥
ସୁଧର୍ମ ସୁକର୍ମ ଜାଣ ବିଷ୍ଣୁ ପ୍ରୀତିଅର୍ଥେ ।
ଅନ୍ନ ପାଣି ଦେଉଥାନ୍ତି ଭୋକ ଅଭ୍ୟାଗତେ ॥
ଦେଉଳ ମଣ୍ଡପ କୂପ ବାପୀ ପୁଷ୍କରିଣୀ ।
ବିଷ୍ଣୁ ପ୍ରୀତ୍ୟାର୍ଥେ କରେ ଯେତେ ଯେତେ ପ୍ରାଣୀ
ସେ ଲୋକ ଦେହାନ୍ତେ ଦିବ୍ୟଗତିକି ଲଭଇ ।
ଗୁଣେକ ଦେଇଥିଲେ ସେ ଶତଗୁଣେ ପାଇ ॥
ନାରାୟଣ ସ୍ୱାମୀ ମୂଳ କରିଣ ପାଞ୍ଜିରେ ।
ଲେଖି ରଖିଥାନ୍ତି ତାହା ସେହି ପରକାରେ ॥
ଚିତ୍ରଗୁପ୍ତ ମଧ୍ୟ ପାଞ୍ଜି ମଧ୍ୟେ ସେହିପରି ।
ଲେଖି ରଖିଥାନ୍ତି ତାହା ଅତି ଯତ୍ନକରି ॥
ଇହଲୋକ ଛାଡ଼ି ସେହି ପରଲୋକେ ଗଲେ ।
ଅଳପେ ରହନ୍ତି ଦୂତେ ତାହାକୁ ଦେଖିଲେ ॥
ଯମ ଦେଖିଲେ ତାହାକୁ ଗଉରବ କରି ।
ବସା କରିବାକୁ ଦିଅନ୍ତି ଉତ୍ତମ ଯେ ପୁରୀ ॥
ସକଳ ପଦାର୍ଥମାନ ପୂରି ଥାଏ ତହିଁ ।
ରଖୁଆଳମାନେ ତାଙ୍କୁ ଦିଅନ୍ତି ଯୋଗାଇ ॥
ବୋଲନ୍ତି ସେ ମର୍ତ୍ତ୍ୟପୁରେ ଏହା ଥିଲୁ ଦେଇ ।
ତାହାକୁ ଯତ୍ନ କରିଣ ଅଛୁ ଆମ୍ଭେ ଥୋଇ ॥
ସୁଖରେ ବସିଣ ବାରୁ କର ତୁମ୍ଭେ ଭୋଗ ।
ସୁକର୍ମ କରୁଥିଲେଟି ଏହ୍ନେ ହୁଏ ଯୋଗ ॥
ଏହି ଯମପୁର କାହାପକ୍ଷ ଯେ ନୁହଇ ।
ଯାହା ଯାହା ଦେଇଥିବ ଏତଥ ତାହା ପାଇ ॥
ନୋହିଲେଟି ପରିତ୍ରାଣ ଆନେ ନାହିଁ କିଛି ।
ପାପୀଲୋକମାନଙ୍କୁ ଯେ ବହୁଦଣ୍ଡ ଅଛି ॥
ଏମନ୍ତ ବୋଲି କହନ୍ତି ତାଙ୍କୁ ରକ୍ଷାଜନ ।
କହନ୍ତି ଚୈତନ୍ୟ ଏବେ ଶୁଣ ହୋ ସୁଜନ ॥

ଦାମୋଦର ଦାସ ବୋଲି ଏକଗୋଟି ଦ୍ୱିଜ ।
ବଡ଼ ଧନବନ୍ତ ତାର ଏକଇ ତନୁଜ ॥
ନାନା ପ୍ରକାରେ ସେ ବିପ୍ର ସଞ୍ଚିଥାଇ ଧନ ।
ମୁଠାଏ ଦେବା ପାଇଁକି ନ ବଳେ ତା ମନ ॥
ଅତ୍ୟନ୍ତ ସ୍ନେହିଁ କରିଣ ପୁତ୍ର ପାଳୁଥାଇ ।
ପିତା ଅଜ୍ଞାତେ ସେ ପୁତ୍ର ଦାନ ଦେଉଥାଇ ॥
ଅତିଥି ଅଭ୍ୟାଗତ ଯେ ଦେଖିଲେ ନୟନ ।
ସେପୁତ୍ର ସନ୍ତୋଷ ରୂପେ ଦିଅଇ ଭୋଜନ ॥
ଏହିପରି କରୁ କରୁ କେତେ ଦିନ ଗଲା ।
ବ୍ରାହ୍ମଣର ସେହି ପୁତ୍ର ମୃତ୍ୟୁକୁ ଲଭିଲା ॥
ତାହାର ଘରଣୀ ସତୀ ସ୍ୱାମୀ ସଙ୍ଗେ ଗଲା ।
ସେହି ଚିତା ଅନଳରେ ଝାସଦେଇ ମଲା ॥
ଯମଦୂତେ ସେ ଦୁହିଙ୍କୁ ରଥରେ ବସାଇ ।
ଭେଟି କରାଇଲେ ନେଇ ସଞ୍ଜୀବନୀ ପାଇଁ ॥
ଦେଖି ଜନ୍ତୁପତି ତାଙ୍କୁ ସନ୍ତୋଷିତ ମନ ।
ଚିତ୍ରଗୁପ୍ତଙ୍କୁ ଚାହିଁ ପୁଚ୍ଛେ ପାପ ପୁଣ୍ୟ ॥
ଚିତ୍ରଗୁପ୍ତେ ବୋଇଲେ ଏ ବଡ଼ ପୁଣ୍ୟବନ୍ତ ।
ଭାର୍ଯ୍ୟା ସତୀ ଆସିଅଛି ସ୍ୱାମୀର ସଙ୍ଗତ ॥
ଦେଖିକରି ଜନ୍ତୁପତି ଆନନ୍ଦିତ ହେଲେ ।
ଉତ୍ତମ ମନ୍ଦିରେ ନେଇ ତାହାକୁ ରଖିଲେ ॥
ସେ ଘରେ ଯେତେ ପଦାର୍ଥ କେହୁ କହିପାରେ ।
ତାହାଙ୍କ ଭୋଜନ ହେତୁ ସବୁ ଅଛି ପୂରି ॥
ଇହଲୋକେ ବିପ୍ରସୁତ ଯାହା ଦେଇଥିଲା ।
ଶତେଗୁଣେ ସେଠାବରେ ତାହାକୁ ମିଳିଲା ॥
କୁଟିଳ ଚିତ୍ତରେ ଯେବେ ଦେଇଥାନ୍ତା ଦାନ ।
ଏତେ ଦ୍ରବ୍ୟ ନ ମିଳନ୍ତା ମିଳନ୍ତା ସାମାନ୍ୟ ॥
ଅବଶ୍ୟ ପରଲୋକରେ ହୁଅନ୍ତା ପ୍ରାପତ ।
ଏଥୁ ଅନନ୍ତରେ ଶୁଣ ମନ ନରନାଥ ॥
ପୁତ୍ର ବଧୂ ଯିବାରୁ ସେ ଦାମୋଦର ଦାସ ।
ବହୁତ ଦୁଃଖିଲା ବିପ୍ର ରଜନୀ ଦିବସ ॥
ଗୁଣମାନ ସୁମରି ସେ ବହୁ ଶୋକ କଲା ।
ଏଗାର ଦିନରେ ପ୍ରେତ କାର୍ଯ୍ୟକୁ ସାରିଲା ॥
ପୁତ୍ର ଦୁହିତା ତାହାର ଘରେ ଆଉ ନାହିଁ ।
ବେନି ପ୍ରାଣୀ ରହନ୍ତି ଯେ ଶୂନ୍ୟଗୃହ ବହି ॥
ପୁତ୍ର ବଧୂ ଦୁହିଙ୍କର ଗୁଣକୁ ସୁମରି ।
ରହିଲେ ଅଛି କେବଳ ତାଙ୍କୁ ଝୁରି ଝୁରି ॥

ନଗରର ଜଣେ ବିପ୍ର ଆଗୁଁ ରହିଥିଲା ।
ପୁତ୍ର ମଲାଠାରୁ ତାକୁ ବଡ ସ୍ନେହ କଲା ॥
ବ୍ରାହ୍ମଣ ବୋଇଲା ବାବୁ ଶୁଣ ନାଗର ।
ଆଜଠାରୁ ପୋଷ୍ୟପୁତ୍ର ହୋଇଲୁ ତୁ ମୋର ॥
ଅବଧି ବୋଲିଣ ନାମ ତାହାର ଅଟଇ ।
ବୁଢା ବିପ୍ରକୁ ପିଅରସମ ମଣୁଥାଇ ॥
ବ୍ରାହ୍ମଣୀକି ମାତାସମ କରି ପ୍ରତିପାଳି ।
ଯାବତ ଧନ ଦ୍ରବ୍ୟ ସେ ସମସ୍ତ ସମ୍ଭାଳି ॥
ଏମନ୍ତ ହୋଇଣ ତହିଁ କେତେଦିନ ଗଲା ।
ପୁରାଣର ବାକ୍ୟ ଦିନେ ବ୍ରାହ୍ମଣ ଶୁଣିଲା ॥
ଅପୁତ୍ରିକ ଜନେ ଅଛି ଏକଥା ପରମାଣ ।
ବଟ ଅଶ୍ୱତ୍ଥ ଯେବେ ସେ କରିବ ରୋପଣ ॥
ସାତବରଷ ମଧ୍ୟରେ ବିଭା ତାଙ୍କୁ କରି ।
ପ୍ରତିଷ୍ଠା କରାଇବ ସେ ବ୍ରାହ୍ମଣଙ୍କୁ ବରି ॥
ଯଥା ବିଧିରେ ପାଳିବ ଯେବେ ସେହି ବୃକ୍ଷ ।
ଅପୁତ୍ରିକ ଦୋଷ ଯାଇଁ ଲଭିବ ସେ ମୋକ୍ଷ ॥
ଶୁଣି ବ୍ରାହ୍ମଣ ଅଶ୍ୱତ୍ଥ ବଟବୃକ୍ଷ ରୁଇ ।
ଅତିଯତ୍ନେ ରୋପି ତାଙ୍କୁ ପ୍ରତି ପାଳୁଥାଇ ॥
ଏହାବିନା ଆନ ଧର୍ମ କିଛିନାହିଁ କରି ।
ଭିକମାଗି ଗଲେ ଦ୍ୱାରୁ ଫେରନ୍ତି ଭିକାରି ॥
ଏକ ଦିବସେ କ୍ଷୁଧାର୍ତ୍ତ ହୋଇ ଏକନର ।
ଭୋଜନ ମାଗିଲା ଆସି ସେହି ବିପ୍ରଘର ॥
ଦେବାକଥା ଗୋଟି ବିପ୍ର ନ ଜାଣଇ ଦିନେ ।
କାହିଁ ସେ ସନ୍ତୋଷ ପୁଣି ହେବ ତାର ମନେ ॥
ବିପ୍ର ବୁଢାକୁ ଭିଖାରି କଲା ନମସ୍କାର ।
ବିନୟ ହୋଇଣ କେତେ କହିଲା ଅପାର ॥
କାହାକୁ କହିଲା ପରି ବୁଢା ନ ଶୁଣଇ ।
ମାଟଖ ଦେଖୁଥାଇ ବିପ୍ର ମୁହଁକୁ ଫୁଲାଇ ॥
ସେଠାରୁ ଉଠି ଆଇଲା ଗୃହ ଭିତରକୁ ।
କର୍ଣ୍ଣରେ କହିଲା ଯାଇଁ ଆପଣା ଭାର୍ଯ୍ୟାକୁ ॥
ମୋହର ଉଚ୍ଛିଷ୍ଟ ଅନ୍ନ ଯେତେକ ଅଛଇ ।
ତାହା ଦିଅ ଅଣ୍ଟିଥିବୁ ଦେବ ମୁହିଁ ନେଇ ॥
ତତକ୍ଷଣେ ଘରଣୀ ତା ଭିତରକୁ ଗଲା ।
ଗେରସ୍ତ ଉଚ୍ଛିଷ୍ଟ ଅନ୍ନ ଯେତେ ତାର ଥିଲା ॥
ତହିଁରେ ଆଉ ମୁଠାଏ ମିଶାଇ ତରୁଣୀ ।
ଗେରସ୍ତ ଆଗରେ ତାହା ଥୋଇଦେଲା ଆଣି ॥

ଉଚ୍ଛିଷ୍ଟ ଅନ୍ନରେ କେତେ ସ୍ପର୍ଶୁଅଛି ଶାଗ ।
ବ୍ରାହ୍ମଣ ନେଇଣ ଦେଲ ଅତିଥିର ଆଗ ॥
କ୍ଷୁଧାର୍ଥୀ ଲୋକ ସେ ଅନ୍ନ କଲକ ଭୋଜନ ।
ଏହାବିନା ବ୍ରାହ୍ମଣ ଯେ କରିନାହିଁ ଆନ ॥
ଏମନ୍ତ ହୋଇଣ ତହିଁ କେତେଦିନ ଗଲା ।
ବ୍ରାହ୍ମଣର ପୋଷା ପୁଅ ମୃତ୍ୟୁକୁ ଲଭିଲ ॥
ଦେଖିଣ ବଡ଼ ବିକଳ ହୋଇଲ ବ୍ରାହ୍ମଣ ।
ପୋଷା ପୁଅକୁ ଘେନିଣ ଗଲେ ଯମଗଣ ॥
ଦେଖି ତାକୁ ଜନ୍ତୁପତି ସନ୍ତୋଷିତ ହୋଇ ।
ନାମକ ସର୍ବ ବୋଲିଣ କଲେ ଦୂତ ତହିଁ ॥
ତୋର ସାହୁଘରେ ରହିଥିଲୁ ଲଭ କରି ।
ଦୂତପଣେ ଏହି ଦେହେ ଭୁଞ୍ଜ ଆମ୍ଭପୁରୀ ॥
ଏମନ୍ତ ହୋଇଣ ତହିଁ କେତେଦିନ ଗଲ ।
ସେ ଗ୍ରାମକୁ ପୋଷ୍ୟପୁଅ ଦିନେକ ଅଇଲ ॥
ବୋଇଲ ମୋର ସାହୁକୁ ଦେଖିବ ନା ମୁହିଁ ।
ବହୁତ ସ୍ନେହ କରିଣ ମୋତେ ପାଳିଥାଇ ॥
କୁଅଁର ସୁର୍ଣ୍ଣମୀ ପୁଣି ଅଟେ ଆଜଦିନ ।
ଦିବସ ପର୍ଯ୍ୟ ରାତ୍ରେ ପଡ଼ିଅଛି ଜନ୍ମ ॥
ବ୍ରାହ୍ମଣର ଦୁଆରରେ ପ୍ରବେଶିଲ ଯାଇଁ ।
ସ୍ୱପ୍ନରେ ସେ ଦ୍ୱିଜବର ତାକୁ ପଚାରଇ ॥
ତୁହି ମରିଥିଲୁ କେମନ୍ତେ ପାଇଲୁ ରେ ଦେହ ।
ଏକଥା ମୋର ଆଗରେ ସଂକ୍ଷେପିଣ କହ ॥
ଶୁଣିକରି ଅବଧା ଯେ କହିଲ ଭରତ ।
ଦେଖିଣ ସେ ଜନ୍ତୁପତି କଲ ମୋତେ ଦୂତ ॥
ଯେମନ୍ତ ଦେହ ମୋହର ପୂର୍ବେ ଥିଲ ହୋଇ ।
ସେ ଦେହ ପାଅ ବୋଇଲ ଜନ୍ତୁଙ୍କର ସାଇଁ ॥
ତତକ୍ଷଣେ ମାୟା ତନୁ ହୋଇଲ ପ୍ରାପତ ।
ସେହିଠାରେ ସ୍ଥାନ ମୋତେ ଦେଲ ଜନ୍ତୁନାଥ ॥
ଯେ ମୃତ୍ୟୁ ଲଭଇ ସେହୁ ଦେଖଇ ଆମ୍ଭଙ୍କୁ ।
ତତକ୍ଷଣେ ତା ପିଣ୍ଡରୁ ନେଇ ଯେ ପ୍ରାଣକୁ ॥
ଶୁଣିକରି ପୁଛିଲେକ ତାକୁ ଦ୍ୱିଜବର ।
ମୁଁ ତୋ ଧର୍ମ ପିତା ତୁ ମୋ ଧର୍ମର କୁମର ॥
କେମନ୍ତ ପ୍ରକାରେ ପିଣ୍ଡୁ ପ୍ରାଣ କାଢି ନିଅ ।
କେଉଁ ପରକାରେ ଯମ ଦଣ୍ଡଦିଏ କହ ॥
ପିଣ୍ଡରୁ ଛାଡ଼ିଗଲେ ଏ ପରାଣ ପବନ ।
କେମନ୍ତ ସ୍ୱରୂପ କେବେ ଦେଖି ନାହିଁ ଜନ ॥
ଏହା ସଂକ୍ଷେପିଣ ବାବୁ କହିଦେବୁ ମୋତେ ।
ଯେମନ୍ତ ମନକୁ ମୋର ଆସଇ ପରତେ ॥
ଦୂତ ବୋଲୁଅଛି ତୁମ୍ଭେ ଶୁଣ ହେ ବ୍ରାହ୍ମଣ ।
ପିଣ୍ଡରୁ ଯେମନ୍ତ ହୋଇ ଛାଡ଼ଇ ପରାଣ ॥
ସ୍ତ୍ରୀଜନ ପୁରୁଷ ଦେହିଁ ପୁରୁଷକୁ ସ୍ତ୍ରୀ ।
ଜନ୍ତୁପତି ଆଗେ ନେଇ ଦେଉଁ ଉଭାକରି ॥
ଅତି ମନୋହର ଅଟେ ତାର ରୂପ ରାଶି ।
ତାହାରଠାରେ ଲାଳସା କରେ ସେହୁ ଆସି ॥
ସେ ମାୟାତନୁ ତାହାକୁ କରେ ଅଙ୍ଗୀକାର ।
ଏ ଘରେ ଆସିଣ ସେହୁ ହୁଏ ଉଜାଗର ॥
ଦେଖ ଦେଖ ଏ ମନ୍ଦିର କେତେଡ଼ ମନୋହର ।
ଛାଡ଼ ଏହି ବୃଦ୍ଧ ଅଙ୍ଗ ନ କର ଆଦର ॥
ଦେଖ ସେହି ମୃତ ବ୍ୟକ୍ତି ଆଚ୍ଛନ୍ନ କରଇ
ଏ ସମୟେ ଅଶ୍ଳେଷ ପବନ ବହଇ ॥
ଭିତରରୁ ପ୍ରାଣ ବାୟୁ ନ୍ୟନ୍ତ୍ର ବେଗେ କାଢି ।
ଚତୁର୍ଥ ଚକ୍ରକୁ ଭେଦି ପଥିଁ ଦ୍ୱାରପାଢ଼ି ॥
କପାଳ ଚକ୍ରରୁ ଆସି ଇନ୍ଦ୍ର ଚକ୍ର ଭେଦ ।
ଖସଇ ଯେ ବ୍ରହ୍ମବିନ୍ଦୁ ଶୁଚିମୁନ ରୁନ୍ଧ ॥
ନାଭିଚକ୍ରକୁ ଭେଦିଣ ହୁଅଇ ସେ ସ୍ଥିତି ।
ଏକାଳେ ମାୟା ଯୁବତୀ ସଙ୍ଗତରେ ରତି ॥
ଇନ୍ଦ୍ରଦ୍ୱାରେ ବିନ୍ଦୁ ଯେବେ କରଇ ପ୍ରୟାଣ ।
ତେବେ ସେ ପିଣ୍ଡରୁ ବେଗେ ଛାଡ଼ଇ ପରାଣ ॥
ସେ ମାୟା ତନୁରେ ତାକୁ ସମ୍ଭାଳ ଯେ ନେଇ ।
ତେବେ ସେ ନେଇ ତାହାକୁ ନାନା ଦଶା ଦେଇ
ଅର୍ଜିତ କର୍ମମାନଙ୍କୁ କରନ୍ତି ସେ ଭୋଗ ।
କେହୁ ଆନ କରିବ ସେ କାଳକର୍ମ ଯୋଗ ॥
ସଂସାର ଜନଙ୍କ ଏହିରୂପେ ଆତଯାତ ।
ଧାରଣା ଯୋଗିଙ୍କର ଯେ ନୁହଇ ଏମନ୍ତ ॥
ପଞ୍ଚମ ଚକ୍ରକୁ ଭେଦ ଛଡ଼ଚକ୍ରେ ସ୍ଥିତ ।
ଊର୍ଦ୍ଧ୍ୱକୁ ଉଜାଣି ପୁଣି ଟେକଇ ମରୁତ ॥
ମୂଳ କମଳ ମଧ୍ୟରୁ ମନ ସ୍ଥିର କରି ।
ଚେତା ଦ୍ୱାରରେ ରଖିବ ମନ ଯତ୍ନ କରି ॥
ନବଦ୍ୱାରେ କବାଟ ଯେ ପାଢ଼ିବ କଳଣି ।
ତେବେ ଆକାଶେ ଉଜାଣି ବହଇ ଯେ ପାଣି ॥
ତହିଁ ଯାଇଁ ସରୋବରେ ପୂର୍ଣ୍ଣ ହୁଏ ଜଳ ।
ପରମ ହଂସ ତହିଁରେ କରଇ ଯେ ଖେଳ ॥

ପରମଜ୍ୟୋତି ରୂପକୁ କରଇ ସେ ଧ୍ୟାନ ।
ଗୁପ୍ତରେ ରହନ୍ତି ସେ ଯେ ନ ଦେଖି ଏମାନ ॥
ତାହୁଛନ୍ତି ଦ୍ୱାରେ ବେଗେ ପଡ଼ଇ ସେକାଳେ ।
ଯୋଗୀଏ ଦେଖନ୍ତି ଧ୍ୟାନମାର୍ଗ ବିଷ୍ଣୁ ଆଳେ ॥
ଅମୃତ ତାଙ୍କଠାରେ ଯେ ଅଧିକାର ନାହିଁ ।
ତାଙ୍କଠାରେ ଦୟା କରିଥାନ୍ତି ଶ୍ରୀବତ୍ସାଙ୍ଗ ॥
ଧର୍ମବନ୍ତ ଲୋକଙ୍କ ଯେ ଦ୍ରବ୍ୟ ମୃତ୍ୟୁ ପାଏ ।
ତିଥି ବାର ନକ୍ଷତ୍ର ଯେ ଦ୍ରବ୍ୟ ମାସ ହୁଏ ॥
ଆମ୍ଭର ଦଣ୍ଡରେ ସେହୁ ନୁହଇ କାତରଣୀ ।
ଉତ୍ତମ ଭୋଗ ତାହାଙ୍କୁ ଦିଅନ୍ତି ଚକ୍ରପାଣି ॥
ଶୁଣିଣ ବ୍ରାହ୍ମଣ ବୁଢ଼ା ଦୂତଙ୍କୁ ପୁଛଇ ।
ମୋହର ପୁତ୍ର ବଧୂଙ୍କୁ ଦେଖିଲୁ କି ତୁହି ॥
ଦୂତ ବୋଲେ ସେ ଅଛନ୍ତି ବେନି ପତି ପତ୍ନୀ ।
ତାହାଙ୍କୁ ମହାଗୌରବ କରି ଜନ୍ତୁପତି ॥
ଉତ୍ତମ ମନ୍ଦିରେ ତାଙ୍କୁ ଦ୍ରବ୍ୟ ଭୋଗ ଦେଇ ।
ଯତ୍ନରେ ରଖିଛନ୍ତି ନେଇ ଜନ୍ତୁଙ୍କର ପାଇଁ ॥
ବ୍ରାହ୍ମଣ ବୋଇଲା ମୁହିଁ ତାଙ୍କୁ ଝୁରି ଝୁରି ।
ବେନି ନୟନରୁ ମୋର ବହୁଅଛି ବାରି ॥
ତାହାଙ୍କୁ ଯଦ୍ୟପି ମୋତେ ପାରିବୁ ଦେଖାଇ ।
ତେବେ ସେ ଆତ୍ମା ମୋହର ସୁସ୍ଥ କରିବଇଁ ॥
ପୁତ୍ର ବଧୂ ଠାରୁ ଆଉ ଅଧିକା କେ ନାହିଁ ।
ତାହାଙ୍କର ଗୁଣ ଗୁଣି ମରୁଅଛି ମୁହିଁ ॥
ଦୂତ ବୋଇଲା ମୁଁ ତୋତେ ବେଗେ ଘେନି ଯିବ
ପୁତ୍ର ବଧୂଙ୍କୁ ତୋହର ନେଇ ଦେଖାଇବ ॥
ପଣକ କଉଡ଼ି ତୁହି ଧରିଥିବୁ ଯେବେ ।
ସେଠାରେ ବହୁତ ଶାସ୍ତି ପାଇବୁଟି ତେବେ ॥
ଦୂତର କହିବା କଥା ସମସ୍ତ ଶୁଣିଲା ।
ଅଣହେଲା ପାଇଁ ତାର ହେତୁ ବୁଡ଼ିଗଲା ॥
ନିଶ୍ୱାସ ମାତ୍ର ବହୁଛି ଦେହେ ଜ୍ଞାନ ନାହିଁ ।
ଯିବାକୁ ଘେନିଲେ ଦୂତ ଯମପୁର ଯାଇଁ ॥
ସଞ୍ଜୀବନୀ ପୁରେ ବେଗେ ହେଲେ ପରବେଶ ।
ସେହିକ୍ଷଣି କ୍ଷୁଧା ତୃଷା ଲାଗିଲାକ ପାଶ ॥
ହେମ ବାଜନ୍ତେଣ ଜାଡ଼ ଲାଗିଲା ତା ଦେହ ।
ଦୂତଙ୍କୁ ବୋଇଲା ବାବୁ କି କରିବି କହ ॥
ଅବଧା ବୋଇଲା ଭଲ ଭଲ ଦ୍ରବ୍ୟ ମାନ ।
ଦେଖ ପଡ଼ିଅଛି ସ୍ୱର୍ଗୁ ଉତ୍ତମ ବସନ ॥

ଦ୍ରବ୍ୟ ମୁଗ ଶାଲି ଅନ୍ନ ଖଜା ପିଠା ପଣା ।
ପଡ଼ିଅଛି ଦ୍ରବ୍ୟମାନ ଏକୁ ଏକ ଜଣା ॥
ଯାହା ଇଛା ତାହା ତୁହି କର ଏବେ ଗ୍ରାସ ।
ଏଥିକୁ ତୋହର ମନେ ନ ପାଅ ହରସ ॥
ଶୀତକୁ କିଛି ଭୀତ ନ କର ତୋର ମନେ ।
ଘୋଡ଼ ହେବୁ ବାଛି ବାଛି ଉତ୍ତମ ବସନେ ॥
ଶୁଣିଣ ବ୍ରାହ୍ମଣ ବୁଢ଼ା ହେଲା ଚିତ୍ତ ତୋଷ ।
ଦେଖିଲା ପଡ଼ିଛି ତହିଁ ନାନାବିଧ ବାସ ॥
ଶୀତ ଆରତେ ଧଇଲା କରେ ବାସ ଖଣ୍ଡେ ।
ଦେଖିଣ ରକ୍ଷାଲୋକେ ଯେ ପିଟି ଲୌହଦଣ୍ଡେ ॥
ବୋଇଲେ ପାମର ବୁଢ଼ା ଲଜ୍ଜ ତୋତେ ନାହିଁ ।
ଦେଇନାହୁଁ ପୂର୍ବେ ଏବେ ପାଇବୁ ତୁ କାହିଁ ॥
ଉତ୍ତମ ବସ୍ତ୍ର କେବେତ କାରେ ଦେଇନାହୁଁ ।
ଏଠାରେ ଖୋଜିଲେ ଆସି ପାଇବୁ ତୁ କାହୁଁ ॥
ଯେବେ କାହାକୁ ତୁ ଦେଇଥାନ୍ତୁ ଶୁଦ୍ଧଚିତ୍ତେ ।
ଏଠାବରେ ଦିଅନ୍ତେ ଯେ ତୋତେ ସେହିମତେ ॥
ଏକଖଣ୍ଡ ଦେଇଥିଲେ ଦିଅନ୍ତେ ଦଶଖଣ୍ଡ ।
ଲୋଭ କଲେ ପ୍ରହାରିବୁଁ କାଣ୍ଡେ ଲୁହାଦଣ୍ଡ ॥
ଏମନ୍ତ ବୋଲନ୍ତେ ତହୁଁ ଭୟେ ଗଲା ଘୁଞ୍ଚି
ଭୋକ ଶୋଷ ଆରତେ ତା ଅନ୍ତ ଜଳୁଅଛି ॥ ।
ଦେଖିଲା ବିପ୍ର ଅନେକ ହାଣ୍ଡି ହାଣ୍ଡି ପଣା ।
ଏକ ପଦାର୍ଥକୁ ପୁଣି ଆନ ଦ୍ରବ୍ୟ କିଣା ॥
ତୃଷାର ଆରତେ ବୁଢ଼ା ଆକର୍ଷଣ କରି ।
ଦେଖି ସେ ବୁଢ଼ାକୁ ରକ୍ଷା ଲୋକେ ବେଗେମାରି
ବୋଲନ୍ତି ପାମର ବୁଢ଼ା ନ ଦେଇଣ ଲୋଡ଼ୁ ।
ଗତଜନ୍ମ ହେବାର ଯେ ତୋର ମୁହିଁ ପୋଡ଼ୁ ॥
ଖରାକାଳେ ଯେବେ ଦେଇଥାନ୍ତୁ ଅନ୍ନ ଜଳ ।
କିବା ମନୁଷ୍ୟେ ନୋହିଲେ କିବା ଗୋରୁକୁଳ ॥
କିବା ଜଳକାଣ୍ଡି ମୁଢ଼ା କରିଥାନ୍ତୁ ପଥେ ।
ସକଳ ଜୀବ ଜନ୍ତୁଏ ଜଳ ଖାଇ ଥାନ୍ତେ ॥
କିବା ପାଣି ପଣା ଛତ୍ର ତୁହି ଦେଇଥାନ୍ତୁ ।
ତେବେ ଏଠାବରେ ତୋତେ ଯାଚିକରି ଦିଅନ୍ତୁ ॥
ଆମ୍ଭେମାନେ ତୋତେ ନେଇ ସ୍ନାହାନ କରାଇ ।
ଦ୍ରବ୍ୟଶାଳା ପଣାମାନ ଦିଅନ୍ତୁ ତୋତେ ନେଇ ॥
ସଂସାରରେ ପ୍ରାଣୀ ଯାହା ଯହା ଦେଇଥାଇ ।
ଏଠାବରେ ଲୋଡ଼ିଲେ ଯେ ସମସ୍ତ ମିଳଇ ॥

ଶୁଣିଣ ବ୍ରାହ୍ମଣ ବୁଢା ତୃଷାରେ ବିକଳ ।
କାର୍ପଣ୍ୟ ହୋଇଣ ବୋଲେ ଦିଅ କିଛି ଜଳ ॥
ତୁମ୍ଭେ ଧର୍ମବନ୍ତ ହୋଇ ଧର୍ମ କଥା କହ ।
ଦୟାକରି ତୁମ୍ଭେ କିଛି ଅନ୍ନ ଜଳ ଦିଅ ॥
ନୋହିଲେ ନିଶ୍ଚୟ ଆଜି ଗଲା ମୋର ପ୍ରାଣ ।
ବୋଲୁଛନ୍ତି ରକ୍ଷକେ ଆରେ ବିପ୍ର ଶୁଣ ॥
ଯେତେବେଳେ କହିଲେ ତୁ ନ ପାରୁ ଆମ୍ଭେ ଦେଇ
ବଚନରେ ବୋଧ ନୋହୁ ନିରପକ୍ଷ ଭୂଇଁ ॥
ଏଠାବରେ ପ୍ରିୟାପ୍ରିୟ ନାହିଁ ପକ୍ଷାପକ୍ଷ ।
କେବଳ କଲକର୍ମର ଅଟେ ଧର୍ମ ସାକ୍ଷ ॥
ଫଳା ବେଗହୋଇ ରେ ନ କହ ଆଗ ବଟି ।
ଆଉ ବେଳକ କହିଲେ ଖାଇବୁ ଯେ ବାଢ଼ି ॥
ଏହା ଶୁଣି କରି ବିପ୍ର ନିରାଶ ହୋଇଲା ।
ଉତ୍ତମ ଯେ ଶାଳ ଅନ୍ନ ଯାଇଁଣ ଦେଖିଲା ॥
ବଗଡ଼ା ଅରୁଆ ଆଳୁଅ ଉଲାଉଲ ହୋଇ ।
ଖିରି ଖେଚଡ଼ି ଆବର ଘୃତ ଦୁଧ ଦହି ॥
ନାନାବିଧ ପ୍ରକାରେ ଅଛି ତିଅଣ ଭଜା ।
ନାନାବିଧ ଶାକର ଅଛି ନାନାବର୍ଣ୍ଣେ ଖଜା ॥
ଆମ୍ବ ପଣସ ନଡ଼ିଆ ଗୁଆ ଯେ କଦଳୀ ।
ନାରଙ୍ଗ କମଳା ଆଉ ଟଭା ବରକୋଳି ॥
ନାନାଜାତି ପକ୍ୱଫଳ ରହିଅଛି ତହିଁ ।
କର୍ପୂର ଚନ୍ଦନ ଗୁଆ ପାନ ଅଛି କାହିଁ ॥
ଶୁଭ୍ର ମନୋହର ଦ୍ରବ୍ୟ ନିର୍ମଳ ବସନ ।
ନବରତ୍ନମାଳ ନାନା ଅଳଙ୍କାର ମାନ ॥
ଧାଡ଼ି ଧାଡ଼ି ହୋଇ ତହିଁ ଅଛି ନିରନ୍ତର ।
ଅନେକ ଅନେକ ଅଛି ବିବିଧ ପ୍ରକାର ॥
ସକଳ ପଦାର୍ଥମାନ ପୂରିଅଛି ତହିଁ ।
ନାହିଁ ବୋଲିବାକୁ କିଛି ଦ୍ରବ୍ୟ ଆଉ ନାହିଁ ॥
ଅତ୍ୟନ୍ତ ସୁନ୍ଦର ମନୋହର ପୁରମାନ ।
ସୁବର୍ଣ୍ଣ କଳଶ ଉଡ଼େ ପାଟର ବସନ ॥
ମୁକୁତାର ମାଳମାନ ଲମ୍ବେ କେଉ କେଉ ।
ଗଜଦନ୍ତ ପଲଙ୍କରେ ଉପର ମଣ୍ଡୁର ॥
କେଉଁଣି ପୁର ହୋଇଛି କାଚରେ ନିର୍ମାଣ ।
ପ୍ରତିସ୍ତମ୍ଭ ପଡ଼େ ତହିଁ ଯେସନେ ଦର୍ପଣ ॥
କେଉଁଣି ଘର ଗୋଟିକ ଛଣଛୁଆ ହୋଇ ।
କେଉଁଣି ଘର ପାଳରେ ଅଛନ୍ତି ଘୋଡ଼ାଇ ॥

କେଉଁଣି ଘର ଭଙ୍ଗା ବା ଦଦରା ହୋଇଛି ।
କେଉଁଣି ଘର ଗୋଟିକ ଉଡ଼ି ଯାଇଅଛି ॥
ଏମନ୍ତେ ଅଧିକ ଉଣା ନାନାବର୍ଣ୍ଣେ ସାଇ ।
ବସିଅଛି ପୁରମାନ ଧାଡ଼ି ଧାଡ଼ି ହୋଇ ॥
ମେରୁର ଦକ୍ଷିଣ ଭାଗେ ସଞ୍ଜୀବନୀ ପୁର ।
ନୁହଇ ଉଜ୍ଜ୍ୱଳ ସେହୁ ନୁହଇ ଅନ୍ଧାର ॥
ସନ୍ଧ୍ୟାକାଳ ପ୍ରାୟେକ ଦିଶେ ତାର ଜ୍ୟୋତି ।
ଶତେ ଯୋଜନ ଅଟଇ ସହର ଆକୃତି ॥
ଧର୍ମବନ୍ତ ଲୋକମାନେ ଛନ୍ତି ତହିଁ ବସି ।
ଅଧର୍ମୀ ଲୋକଙ୍କୁ ସେହୁ ଅଟେ କାଳଫାଶି ॥
ସୁବର୍ଣ୍ଣ ସିଂହାସନରେ ବସେ ଯମ ପ୍ରଚଣ୍ଡ ।
ଚିତ୍ରଗୁପ୍ତ ତାଙ୍କ ଦକ୍ଷ ପାର୍ଶ୍ୱେ ଅଛନ୍ତି ॥
ଦିନକେ ମୃତ୍ୟୁ ଲଭନ୍ତି କୋଟିଏ ସଂଖ୍ୟାରେ ।
ସକଳେ ଯାଇଁ ମିଳନ୍ତି ସଞ୍ଜୀବନୀ ପୁରେ ॥
କାହାର ଯେ ହସ୍ତପଦ ବନ୍ଧାଇଥାଏ ବନ୍ଧା ।
କାହାର ଗାତ୍ରେ ମାରନ୍ତି ମୁଗୁଡ଼ା ବା ଖଣ୍ଡା ॥
କୋପ କରିଣ କାହାକୁ ଦିଅନ୍ତି ପ୍ରହାର ।
କାହାକୁ ଚଢୁଅଛନ୍ତି କାଳସର୍ପ ଦନ୍ତ ॥
କାହାକୁ ବିଧା ମାରନ୍ତି କଥା କହୁଁ କହୁଁ ।
କାହାର କାନ ମୋଡ଼ନ୍ତି ନେଇ ଯାଉଁ ଯାଉଁ ।
କାହାର ଗଳାରେ ନ୍ୟନ୍ତ ଚର୍ମରଜ୍ଜୁ ଦେଇ ।
ଝିଙ୍କି ନେଉଅଛନ୍ତି ସେ ମରୁଛି ବୋବାଇ ॥
କାହାର କେଶ ଧରିଣ ଆଣନ୍ତି ଓଟାରି ।
କା ପିଠିରେ ପିଟୁଛନ୍ତି କଣ୍ଟାଲଟ ଧରି ॥
କାହାକୁ ତପ୍ତ ବାଲିରେ ଦିଅନ୍ତି ଗଡ଼ାଇ ।
କାହାର ତୁଣ୍ଡରେ ବାଲି ଦିଅନ୍ତି ପୂରାଇ ॥
କାହାର ଛାତି ଉପରେ ପଥର ଲଦନ୍ତି ।
କାହାକୁ ନେଇ ବ୍ୟାଘ୍ରର ତୁଣ୍ଡରେ ପୂରାନ୍ତି ॥
କାହାକୁ ମହିଷି ଆଗେ କରିଛନ୍ତି ଠିଆ ।
ଶିମୁଳି କଣ୍ଟାରେ ଗୁଛା ହୋଇଛି କା ହିଆ ॥
ନାସିକା ରନ୍ଧ୍ରରେ କାର ଲୁହାକଣ୍ଟା ମାରି ।
ଗୋଡ଼ୁ ହାଡ଼େ କୁଟୁଅଛି କେବଣହିଁ ନାରୀ ॥
ଯନ୍ଦା ସିମୁଡ଼ି କାହାକୁ ଧରି କାମୋଡ଼ନ୍ତି ।
କାହାକୁ ଯେ ଶ୍ୱାନ ମୁଖେ ହାଡ଼ ଚୋବାଇ ଦିଅନ୍ତି ।
ଅଧର୍ମୀ ଲୋକେ ପାଆନ୍ତି ଦଣ୍ଡ ଏହିପରି ।
ତାହାଙ୍କ ଯାତନା ମୁଖେ କେହୁ କହିପାରି ॥

ଧର୍ମିବନ୍ତ ଲୋକମାନେ ଆସନ୍ତି ଯେ କାଳେ ।
ଅଶ୍ୱ ଆରୋହ କେ ଆସେ ଅବା ଚଉଡ଼ୋଳେ
କେହୁ ଗଜ ତୁରଙ୍ଗରେ ଆସୁଛନ୍ତି ଚଢ଼ି ।
ମଣିମା ମଣିମା ଡାକ କାହାକୁ ଯେ ପଡ଼ ॥
କେହୁ ଆସନ୍ତି ତା ଆଗେ ବାଜଇ ମହୁରୀ ।
କାହାର ଆଗରେ ପୁଣି ବାଜେ ଭେରୀତୁରୀ ॥
କାହାକୁ ନେଉଅଛନ୍ତି ପହଣ୍ଡ ମଣାଇ ।
ଭଲଦ୍ରବ୍ୟ ଦିଅନ୍ତି କାକୁ ଭୁଞ୍ଜିବାର ପାଇଁ ॥
କାହାକୁ ଦେଉଅଛନ୍ତି ନେଇ ଦ୍ରବ୍ୟମାନ ।
କାହାକୁ ଦେଉଅଛନ୍ତି ରତନ କାଞ୍ଚନ ॥
କାହାକୁ ଦେଉଅଛନ୍ତି ନାନାବର୍ଣ୍ଣ ପୁଷ୍ପ ।
କାହାକୁ ଦେଉଅଛନ୍ତି ସଂଭୁଷ୍ଟୀନ ବାସ ॥
କାହାକୁ ଦେଉଅଛନ୍ତି ଶାଲ ବନାତ ।
କାହାକୁ ପିନ୍ଧାଉଛନ୍ତି ରେସମରବସ୍ତ୍ର ॥
କାହାକୁ ଦେଉଅଛନ୍ତି ଦିବ୍ୟ ପୁରମାନ ।
ଦିବ୍ୟଭୋଗ ଭୁଞ୍ଜିଇ କେ ହୋଇ ତୋଷମନ ॥
କର୍ପୂର ଚନ୍ଦନ କାହା ଅଙ୍ଗେ ବୋଳିଦିଅନ୍ତି ।
ନାହିଁ ନାହିଁ କଲେ କେହୁ ବଳେ ତାକୁ ଦିଅନ୍ତି
କାହା ଅଙ୍ଗେ ଅଳଙ୍କାର ଖଞ୍ଜୁଛନ୍ତି ନେଇ ।
ଅଷ୍ଟରତ୍ନ କାହାଆଗେ ଦେଇଛନ୍ତି ଥୋଇ ॥
କାହେ ଦେଖି ଜନ୍ତୁପତି ତୋଷମନ ହୋଇ ।
କାହାକୁ ପାଶେଷ୍ଟ ଅବା ଆସନ୍ତି ସେ ଯାଇଁ ॥
କାହାକୁ ବିନୟ ହୋଇ କହନ୍ତି ବଚନ ।
କାହାକୁ ବୋଲନ୍ତି ତୁମ୍ଭେ ଯିବ କେଉଁସ୍ଥାନ ॥
କାହାକୁ ବୋଲନ୍ତି ତୁମ୍ଭେ ଧର୍ମପରାୟଣ ।
କାହାକୁ ବୋଲନ୍ତି ଶୁଭେ ଆସିଲ ଆପଣ ॥
କାହାକୁ କୁଶଳବାର୍ତ୍ତା ସାଦରେ ପୁଛନ୍ତି ।
କାହାକୁ ନେଇଣ ନିଜ କଟେରେ ବସାନ୍ତି ॥
କାହାକୁ ବୋଲନ୍ତି ତୁମ୍ଭେ ଏହିଠାରେ ଥାଅ ।
କାହାକୁ ବୋଲନ୍ତି ତୁମ୍ଭେ ସ୍ୱର୍ଗପୁର ଯାଅ ॥
କାହାକୁ ବୋଲନ୍ତି ତୁମ୍ଭେ ଯିବ ମର୍ତ୍ତ୍ୟପୁର ।
ତହିଁ ଜନମି ଉତ୍ତମ କାର୍ଯ୍ୟମାନ କର ॥
ଗତଜନ୍ମେ କରୁଥିଲ ଯେଉଁପରି ଧର୍ମ ।
ତୁମ୍ଭକୁ ପ୍ରାପତହେବ ସେହି ଶୁଭ କର୍ମ ॥
ଏହିପରି ଲକ୍ଷ ଲକ୍ଷ ଦ୍ୱନ୍ତି ଆତଯାତ ।
ଧର୍ମସ୍ତଙ୍କୁ ପ୍ରବୋଧନା କରେ ଜନ୍ତୁନାଥ ॥
ଏହି ମର୍ତ୍ତ୍ୟ ଭୁବନକୁ ସଞ୍ଜୀବନିପୁର ।
ଲକ୍ଷେକ ଯୋଜନ ପାଏ ଅଟେ ପଥଦୂର ॥
ଦୁଇଘଡ଼ି ଭିତରେ ସେ କରନ୍ତି ଭ୍ରମଣ ।
ଯମର ଆଜ୍ଞା ଏହିତ ଅଟଇ ପ୍ରମାଣ ॥
ଏହି ଜନ୍ମରେ ସୁକୃତ ଯାହା କରିଥାଇ ।
ସେରୂପେ ଭୋଗଦିଅନ୍ତି ତାକୁ ଜନ୍ତୁସାଇଁ ॥
ଇହପରଲୋକେ ତାକୁ କେବେ ନାହିଁ ଦୁଃଖ ।
ଜୀବନ୍ତେଣ ଅଇଶ୍ୱର୍ଯ୍ୟ ମଲେ ପାଏ ସୁଖ ॥
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ମନ ଧରି ।
ଏକାଘର କରେ ଥିଲେ ଷଡ଼ ସହୋଦର ॥
ବଡ଼ଭାଇ ତାହାଙ୍କର ବହୁ ଧର୍ମକରେ ।
ମାଗିଗଲେ ଦିଅଇ ସେ ଯାହାଥାଇ ଘରେ ॥
ଥିଲା ଦ୍ରବ୍ୟମାନ ସେ ଯେ ମାଗିଲେ ଦିଅଇ ।
ନ ଥିଲା ପଦାର୍ଥ ମାନ ବୋଲଇ ସେ ନାହିଁ ॥
ଅନ୍ନ ବସ୍ତ୍ର ଦିଅଇ ସେ ଅଭ୍ୟାଗତେ ନିତ୍ୟ ।
ଯାହା ଦେଖି ତାର ମଝିଆ ସାନ ଯେଉଁ ଭ୍ରାତ ॥
ବୋଇଲେ ଆମ୍ଭର ଘର ଭଗ୍ନ କରିଦେବ ।
ଯେତେ ଦ୍ରବ୍ୟ ଘରେ ଅଛି ପରେ ସମର୍ପିବ ॥
କେତେ ଦୁଃଖରେ ଆମ୍ଭେତ ଅର୍ଜିଅଛୁ ଧନ ।
ବସିବାର ଲୋକ ସେହୁ ନ ଜାଣେ ଏମାନ ॥
ପାଷାଣ୍ଡଲୋକଙ୍କ ଆଗେ କହନ୍ତେ ଏମନ୍ତ ।
ଶୁଣି ସେ ମୂର୍ଖେ ବୋଇଲେ ଏହିକଥା ସତ ॥
ମୂର୍ଖ ଲୋକଙ୍କ ଆଗରେ ଧର୍ମର ଚରିତ ।
କହିଲେ ସନ୍ତୋଷ କାହିଁ ହେବ ତାର ଚିତ୍ତ ॥
ସେ ଲୋକେ ବୋଇଲେ ତୁମ୍ଭେରହିଭିନ୍ନହୋଇ
ଶୁଣି ବୋଲେ ସେ ମଝିଆଭାଇ ହୋଇ ହୋଇ
ଏତେ ବୋଲି ଯାଇ ଘରେ ଦ୍ୱନ୍ଦଲଗାଇଲା ।
ସରି ଭାଗନେଇ ବେଗେ ଭିନ୍ନେ ସେ ରହିଲା ॥
ଆଉ ଚାରିଭାଇଙ୍କି ସେ ବଡ଼ଭାଇ କହି ।
ତୁମ୍ଭେମାନେ ମଧ୍ୟ କେବେ ଯିବ ଭିନ୍ନହୋଇ ॥
ସେହୁ ବୋଇଲେ ଆମ୍ଭର ନାହିଁ ପ୍ରୟୋଜନ ।
ତୁମ୍ଭେ ଅଟ ଜ୍ୟେଷ୍ଠଭାଇ ପିଅର ସମାନ ॥
ତୁମ୍ଭେ ଯାହା କରିବଟି ଆମ୍ଭର ସମ୍ମତ ।
ଖାଇବାର ପିନ୍ଧିବାର ଅଟେ ଆମ୍ଭମତ ॥
ତୁମ୍ଭେ ଯା କହିବ ଆମ୍ଭେଅବଶ୍ୟ ପାଳିବୁଁ ।
ତୁମ୍ଭର ବଚନ ମାନି ତୁମ୍ଭ ପାଶେଥିବୁଁ ॥

ଏହାଶୁଣି ଜ୍ୟେଷ୍ଠଭାଇ ସନ୍ତୋଷ ହୋଇଲା ।
ଏଥି ଅନନ୍ତରେ ତହିଁ କେତେଦିନ ଗଲା ॥
ଏହାଙ୍କର ଧନ କେବେ ନ ହୋଇଲା ଶେଷ ।
ହୀନ ହୋଇ ଥିବା ଭାଇ ନିତ ଉପବାସ ॥
ଏପାଇଁ ଭାଇଙ୍କ ଘରୁ ମାଗି ମାଗି ଖାଇ ।
ଅଧର୍ମୀର ଧନ ପୁଣି ବଢ଼ିବ ବା କାହିଁ ॥
ଧର୍ମକଥା ଶୁଣି ସେ ଅଧର୍ମିକ ଗଲା ।
ସରଭାଗ ନେଇ ବେଗେ ଭିନେ ରହିଥିଲା ॥
ଏହିରୂପେ ଗତ କଲେ କେତେକ ଦିବସ ।
ଏକାଦିନକରେ ଗଲେ ଛୋଟଭାଇ ନାଶ ॥
ଯମଦୂତମାନେ ଘେନି ଗଲେକ ତୁରିତ ।
ସେ ପାପୀଭାଇଙ୍କି କଲେ ବଡ଼ ପୁରୁଷାର୍ଥ ॥
ଧର୍ମ ବାରଣ କରଣ ଭିନେ ହୋଇବା ଭାଇ ।
ତାକୁ ନିଅନ୍ତି ତା ଗଳାରେ ଚର୍ମରଜ୍ଜୁ ଦେଇ ॥
ବିବିଧଦଣ୍ଡ ଦେଇଣ ନିଅନ୍ତି ସେ ପଥେ ।
ଶାଗୁଣା ଗୋଟିଏ ତାର ବସିଅଛି ମାଥେ ॥
ପଥେ ଯାଆନ୍ତେ ପାଇଲା ସେହି ବଡ଼କ୍ଳେଶ ।
ସଞ୍ଜୀବିନୀପୁରେ ଯାଇଁ ହେଲା ପରବେଶ ॥
ଯମପୁରବାସି ଜନେ ଭାବନ୍ତି ଏସନ ।
କପଟୀ ଦୁର୍ଜନ ପାପୀ ଅଟଇ ଏ ଜନ ॥
କେ ବୋଲଇ ଧର୍ମକଥା ଏହୁ ନ ଜାଣଇଁ ।
ଶାଗୁଣାଗୋଟିଏ ଯାର ମୁଣ୍ଡେ ବସିଛଇଁ ॥
ଏମନ୍ତ କହୁଁ ଆସ୍ଥାନ ତଳେ ନେଇ କଲେ ।
ଚିତ୍ର ଗୁପତଙ୍କୁ ଚାହିଁ ନରପତି ବୋଲେ ॥
ଏ ପାପୀଜଣ ଅଟନ୍ତି ଧର୍ମପରାୟଣ ।
ଏ ମୂଢ଼ାର ପାପ ଯାହା କର ତା ବଖାଣ ॥
ଧାର୍ମିକ ଲୋକ ପରାୟ ଦିଶୁନାହିଁ ଏହି ।
ଶାଗୁଣା ଯାମୁଣ୍ଡେ ବସିଅଛି କାହିଁପାଇଁ ॥
ଶୁଣିଣ ଚିତ୍ରଗୁପତେ କହିଲେ ତୁରିତ ।
ଶାଗୁଣାକୁ ନିର୍ଦ୍ଦୋଷରେ କଲା ଏହି ହତ ॥
ତୁମ୍ଭଙ୍କୁ କହିବା ପାଇଁ ଆସିଛି ଏଠାକୁ ।
ଏଥିକୁ ଯାହାବିଚାର କହିଲୁ ତୁମ୍ଭଙ୍କୁ ॥
ଯମ ହୋଇଲା ଅଦୋଷେ ଯେବେ କଲାନାଶ ।
ଏ ଶାଗୁଣା ଖାଉ ଏବେ ତା ଦେହରୁ ମାଂସ ॥
ସୁକୃତ କରିଥିଲେ ଏ ପାପଯାନ୍ତା ନାଶ ।
ଏ ପାପିଷ୍ଠ ଅଟଇତ ଅଧର୍ମ ପୁରୁଷ ॥

ପୂର୍ବେ ଧର୍ମ କରୁଥିଲା ଏହା ଜ୍ୟେଷ୍ଠଭାଇ ।
ହୀନ ହୋଇଗଲା ଧର୍ମବିରୋଧୀ ଏ ହୋଇ ॥
ଧର୍ମପଥେ ଚଳିଥିଲେ ପାନ୍ତା ଧର୍ମଭାଗ ।
ଏହାର କର୍ମରେ ବାରୁ ଅଛି ହାନିଯୋଗ ॥
ଏହି ଆଜ୍ଞା ଦେଲେ ଯମ୍ଭୁ କାଳଦଣ୍ଡପାଣି ।
ସେହି ମୂଢ଼ ଜନମିଲା ମ୍ଳେଚ୍ଛ ଘରେ ପୁଣି ॥
ଧର୍ମବନ୍ତ ଲୋକଙ୍କର ପୁଣ୍ୟ ଦେହମାନ ।
ଦାହିଲା ସୁବର୍ଣ୍ଣ ଜ୍ୟୋତି ପ୍ରାୟେକ କରଣ ॥
ସଞ୍ଜ ସକାଳେ ଯେଲୋକ ନିତି ପୂଜାପାଇ ।
ତାହାର ଯେ ଅବଗୁଣ ନ ବାଛନ୍ତି କେହି
ବ୍ରାହ୍ମଣ ବୁଢ଼ା ଦେଖୁଛି ଏ ଯେନୁ ଚରିତ୍ର ।
ଲୋକର ବିକଳେ ବୁଢ଼ା ମାଗିଲେକ ଭାତ ॥
ରଖା ଲୋକେ ବୋଲନ୍ତି ନ ଦେଖୁ କରେ ତୁହି
ଯେ ଯାହା ଦେଇ ଥାଇ ସେ ତାହା ସିନା ପାଇ
ତୁ ଏବେ ଭଲଦ୍ରବ୍ୟ ନ ଦେଇ ଖାଇ ଲୋଡ଼ୁ ।
ଗତଜନ୍ମ ହୋଇବାର ତୋର ମୁହଁ ପୋଡ଼ୁ ॥
ଉତ୍ତମ ଦ୍ରବ୍ୟ ବ୍ରାହ୍ମଣେ ଯେବେ ଦେଇ ଥାନ୍ତୁ ।
ଏବେ ଏହିଠାରେ ତୋତେ ଯାଚକରି ଦ୍ୟନ୍ତୁ ॥
ଏ ଯେ ଯମପୁର ଜାଣ ଅଟେ ନିରପେକ୍ଷ ।
ଦେଇ ନ ଥିଲେ ନ ମିଳେ ପ୍ରତ୍ୟକ୍ଷ ତୁ ଦେଖ ॥
ଭୋଗିଲୋକେ ଯେଉଁଜନ ଅନ୍ନ ଦେଇ ଥାଇ ।
ତେବେ ଯେ ଏଠାରେ ତାକୁ କ୍ଷୁଧା ନ ଲାଗଇ ॥
ଜଳକାର୍ତ୍ତିମାନ କରିଥାନ୍ତି ଯେଉଁ ପ୍ରାଣୀ ।
ନିବା ଖରାକାଳେ ଦେଇଥାନ୍ତି ପଣା ପାଣି ॥
ସେମାନଙ୍କୁ ଏହିଠାରେ କ୍ଷୁଧା ତୃଷା ନାହିଁ ।
ଦେଖିଲେ ତାହାକୁ ଦୂରେ ଯାଆନ୍ତି ପଳାଇ ॥
ଶୀତକାଳରେ ଦିଅନ୍ତି ଯେବା ଅଗ୍ନିଦାନ ।
ଦରିଦ୍ର ଲୋକଙ୍କ ଯେହୁ ଦିଅନ୍ତି ବସନ ॥
ଏହିଠାରେ ସେ ଲୋକଙ୍କ ଶୀତଭୟ ନାହିଁ ।
ଆପେ ଯାଚକରି ଦେଉଁ ବସ୍ତ୍ର ଯେ ଘୋଡ଼ାଇ ॥
ଦେଖ ସେ ଇହ ଜନ୍ମରେ ଯାହା ଦେଇଥିଲା ।
ଏଠାରେ ତାହାକୁ ବୁଢ଼ା ସମସ୍ତ ମିଳିଲା ॥
ଶୁଣିଣ ବ୍ରାହ୍ମଣ ବୁଢ଼ା ବୋଇଲା ଏ ସତ ।
ନିତେ ମୋ ପରାଣଗଲା ନ ପାଇଲେ ଭାତ ॥
ଏମନ୍ତ ଶୁଣିଣ ଦୂତ ବେଗେ ଚଳିଗଲେ ।
ଉଚ୍ଛିଷ୍ଟ ଅର୍ଣ୍ଣ ଠେଲୁଆ ଖଣ୍ଡେ ଆଣିଦେଲେ ॥

ଝିକ ଝିକ ହୋଇ କେତେ ଭସୁଅଛି ଶାଗ ।
ଖାଅ ଖାଅ ବୋଲି ଥୋଇ ଦେଲେ ବୁଢାଆଗ
ଦେଖି ବିପ୍ର ବୋଲଇ ଯେ ଦୂତମୁଖ ଚାହିଁ ।
ଉଚ୍ଛିଷ୍ଟ ଅନ୍ନ କେମନ୍ତେ ଖାଇବଇଁ ମୁହିଁ ॥
ଦୂତେ ବୋଇଲେ ସବୁତ କହିଦେଲୁ ତୋତେ
ପୂର୍ବେ ଯାହା ଦେଇଥାଇ ମିଳେ ଆସି ଏଥେ ॥
ପୂର୍ବେ ତୁହି ଅତିଥିକୁ ଥିଲୁ ଏହା ଦେଇ ।
ଯାହା ଦେଇଥିଲୁ ତାହା ପାଇଲୁରେ ତୁହି ॥
ଏ ଉଚ୍ଛିଷ୍ଟ ଅନ୍ନଖାଇ ଗର୍ଭ କର ଶାନ୍ତ ।
ଆଉ କହିଲେ ଝାଡିବୁ ତୋର ସବୁ ଦାନ୍ତ ॥
ଶୁଣିଣ ବ୍ରାହ୍ମଣ ବୁଢା ମହାଭୟ ପାଇ ।
ଭୋକ ବଳକଲେ ଉଚ୍ଛିଷ୍ଟ ଅନ୍ନଙ୍କୁ ଭକ୍ଷଇ ॥
ବ୍ରାହ୍ମଣ ବୁଢାକୁ ଦୂତେ ତହୁଁ ଘେନିଗଲେ ।
ତାହାର ପୁତ୍ର ବଧୂକୁ ନେଇ ଦେଖାଇଲେ ॥
ଉତ୍ତମ ମନ୍ଦିର ମଧ୍ୟେ ଅଛନ୍ତି ସେ ରହି ।
ପଲଙ୍କ ଉପରେ ତାର ପୁତ୍ର ଅଛି ଶୋଇ ॥
ସ୍ୱାମିର ପୟର ବୋହୁ ମର୍ଦ୍ଦିଉଣ ଥିଲା ।
ଦୂରରୁ ଶ୍ୱଶୁରକୁ ସେ ନୟନେ ଦେଖିଲା ॥
ସ୍ୱାମୀକି ବୋଇଲା ତାର ଶୁଣ ଆହେ କାନ୍ତ ।
ସଞ୍ଜୀବନି ପୁରେ ତୁମ୍ଭ ଅଇଲେଣି ତାତ ॥
ଶୁଣି ସେ ବୋଇଲା ସେକେ ଆମ୍ଭର ପିୟର ।
ବାତୁଳ ପରାୟେ କପାଁ କହୁଛୁ ଏ ଗିର ॥
ସେ ଆମ୍ଭର ଅଟଇ ଲୋ କେତେ ଜନ୍ମତାତ ।
ଆମ୍ଭେ ତାହାର ଅଟୁ ଲୋ କେତେ ଜନ୍ମସୁତ ॥
ତାହା ନ କହି କବାଟ ଦିଅ ବେଗେ ପାଡ ।
ପୁଣି କହିଲେ ଖାଇବୁ ଜାଣି ଲୁହା ବାଡ଼ି ॥
ଶୁଣିକରି ସୁନ୍ଦରୀ ଯେ ରହେ ତୁନି ହୋଇ ।
ସେ ବୁଢା ବ୍ରାହ୍ମଣ ଥିଲା ଛିଡ଼ା ହୋଇ ତହିଁ ॥
ପୁତ୍ର ବଧୂଙ୍କର ଯହୁଁ ଏମନ୍ତ ଉତ୍ତର ।
ଶୁଣିଣ ସେ ଦ୍ୱିଜବର ହୋଇଲା କାତର ॥
ଦୁଆରେ ଉଭାହୋଇଣ ବୋଲଇ ବ୍ରାହ୍ମଣ ।
ତୁହି ମୋହର ବାବୁରେ ଅଟୁ ସର୍ବପ୍ରାଣ ॥
ଷଡ଼ମାସ ହେଲା ମୋତେ ଅଇଲୁ ତୁ ଛାଡି ।
ସେଦିନୁ ନୟନୁ ଲୁହ ପଡେ ହର ଘଡ଼ି ॥
ତୁମ୍ଭଙ୍କୁ ଝୁରି ଝୁରି ମୋ ତନୁ ହେଲା ଖିଲ ।
କୃଷ୍ଣ ପକ୍ଷରେ ଚନ୍ଦ୍ରମା ଅଟଇ ଯେସନ ॥

ଆହାର ନ ରୁଚଇ ଯେ ଦୁର୍ବଳ ଶରୀର ।
ଦେଖିବାକୁ ଅଇଲିରେ ତୋତେ ଏତେଦୂର ॥
ଦେଖିଲେ ତୋହର ମୁଖ ହେବ ଦୁଃଖନାଶ ।
କବାଟ ଫେଡ଼ ବାବୁରେ କତନ ମୋ ଆଶ ॥
ପରମୁଣ୍ଡା ହୋଇ ମୁହିଁ ଯିବି ଆରେ ଧନ ।
ଦେଖି ତୋ ମୁଖ ଖଣ୍ଡିବ ମୋର ଦୁଃଖମାନ ॥
ମୁହିଁ ତୋର ପତାରେ ତୁ ମୋହର କୁମର ।
ଦେଖିବି ପୁତ୍ର ବଧୂରେ ବଦନ ତୁମ୍ଭର ॥
ଏମନ୍ତ ବାଣୀ ଯହୁଁ ସେ ବୋଲେ ଦ୍ୱିଜବର ।
ଶୁଣିଣ କୋପରେ ସେ ବୋଲଇ କୁମର ॥
ତୋଠାରେ ଆମ୍ଭର ଋଣ ବନ୍ଧନ ଯେ ଥିଲା ।
ତେଣୁକରି ନେଇଗ ସେ ବାହା ଘଟାଇଲା ॥
ସେହେତୁ ଆମ୍ଭ ଆର୍ଦ୍ଧୋଳ ସହିଲୁ ଯେ ତୁହି ।
ଜନ୍ମଠାରୁ ବଡ଼ ବନାପନା ଶେଷ ହୋଇ ॥
ଆମ୍ଭର ସେ ଧନ ଯହୁଁ ହୋଇଲାକ ଶେଷ ।
ତେଣୁକରି ଜାଣ ତେଜ ଅଇଲୁ ତୋ ପାଶ ॥
ତୁ ବିଶ୍ୱାସେ ହରିଥିଲୁ ପୂର୍ବେ ଆମ୍ଭଧନ ।
ମାଗିଗଲେ ନ ଦେଲୁରେ କଲୁ ମୂର୍ଖପଣ ॥
ତେଣୁକରି ଲୋ ଆମ୍ଭେ ପାଇଲୁ ବହୁତ ।
ଆଣି ନ ପାରିଲୁ କେବେ ତୋହଠାରୁ ବିତ୍ତ ॥
ଉଧାର ମାଗନ୍ତ ପୁଣି କାହିଁ ହେବ ଋଣୀ ।
ବେଳକାଳ ଜାଣି ଧାତା କରଇ ଘଟଣୀ ॥
ଏହା କେହି ନ ଜାଣନ୍ତି ନରେ ମହାମୂର୍ଖ ।
ବଅର୍ଥରେ ମରୁଆନ୍ତି କରି ପୁତ୍ରଶୋକ ॥
ଶୁଣିଣ ବ୍ରାହ୍ମଣ ବୁଢା ସ୍ତମ୍ଭୀଭୂତ ହୋଇ ।
ଏମନ୍ତ ସମୟେ ମୋଚି ଧଇଲାକ ଯାଇ ॥
ବୋଲେ ପାଣ୍ଡୋଇ କଉଡ଼ି ମୋତେ ତୁ ନଦେଲୁ
ମାଗିଗଲେ ବହୁତର ଭର୍ତ୍ସନା ତୁ କଲୁ ॥
ଆଜ ହାତେବାଡ଼େ ପଡ଼ିଛୁ ଯିବୁ ତୁହି କାହିଁ ।
ନଦେଲେ ତୋ ଦେହୁଁ ଚର୍ମ କାଟିନେବ ମୁହିଁ ॥
ଶୁଣିଣ ବ୍ରାହ୍ମଣ ବୁଢା ତରସ୍ତ ହୋଇଲା ।
ଭିତରେ ଆଇଣ ପୁତ୍ର ତାହାକୁ କହିଲା ॥
ମୃତ୍ୟୁଲୋକେ ଯେହ୍ନେ ଯାହା ଦେଇ ଆଇ ପାଇ
କାହାର ଧାର ଅଇଲେ ଯେ ଏଠାରେ ନେଇ
ଋଣ ନ ଶୁଝିଲେ ଲକ୍ଷ ପାଇ ସେ ବହୁତ ।
କାଳକର୍ମମାନ ଜାଣ ହୁଏ ସରୁପତ ॥

ବନ୍ଧୁ କୁଟୁମ୍ବ ଆବର ଧନ ଦାରା ସୁତ ।
ଏଠାରେ ରଖିବାକୁ କେ ନୁହେଁ ସାମରଥ ॥
ପିଣ୍ଡ ଛାଡ଼ ପ୍ରାଣ ଯେବେ ହୁଅଇ ଅନ୍ତର ।
ସମସ୍ତେ ଯେ ସେହିଠାରୁ ହୋଇଯାନ୍ତି ପର ॥
ମିଛେ ବୋଲୁଥାନ୍ତି ମୋର ଏହି ମୋର ଏହି ।
ପିଣ୍ଡରୁ ପ୍ରାଣ ଗଲେ ତ କାର ନୁହେଁ କେହି ॥
ଶ୍ରୀହରିଙ୍କ ନାମଗୋଟି ଅଟେ ଧର୍ମବାଟ ।
ତାହାଙ୍କୁ ଆଶ୍ରେ କରିଲେ ନ ଥାଇ ସଙ୍କଟ ॥
ଯାହା ଦେଇଥିବ ପୂର୍ବେ ଏଠାରେ ତା ପାଇ ।
ଅଧିକ ଲୋଡ଼ିଲେ ସେହୁ ମରେ ମାଡ଼ଖାଇ ॥
ଆଗମ ନିଗମ ଶାସ୍ତ୍ର ପୁରାଣ ବାକ୍ୟରେ ।
ସଂସାରେ ଥାଇଣ ବୁଢ଼ା ଶୁଣିନାହୁଁ କିରେ ॥
ନିର୍ବଳ ଲୋକଙ୍କଠାରୁ ବଳବନ୍ତ ଜନ ।
ଧନ ନେଇଣ ତାହାକୁ ନ ଦିଏ ପୁଣ ॥
ଏହିଠାବରେ ସେମାନେ ହୁଅନ୍ତି ଭୁଲ କସ ।
ନିଦାନ ବେଳକୁ ଜାଣ ଦେହୁଁ ଦିଅନ୍ତି ମାଂସ ॥
ପଣ ଅଧିକାର ଥାଇ ଯେବଣହିଁ ନର ।
ନୀରସ ଲୋକମାନଙ୍କୁ କରେ ହରବର ॥
ଦାମ୍ଭିକ ପଣ କରି ତା ଠାରୁ ଧନ ନେଇ ।
ମାଗି ଗଲେ ତାହାକୁ ସେ ମାରଇ ଗୋଡ଼ାଇ ॥
ଯେତେବେଳେ ଆସଇ ସେ ସଞ୍ଜୀବନୀ ପୁର ।
ଲୋଡ଼ନ୍ତି ଏଠାରେ ତାକୁ କରେ ହରବର ॥
ଅଧିକାର ପଣକେରେ ଏଥି ଆଣି ଥାଇ ।
ଶୂକର ହୋଇ ଖାତକ ସେବା ସେ କରଇ ॥
ଧର୍ମ ଏହିଠାରେ ବୁଢ଼ା ଅଛଇ ପ୍ରମାଣ ।
ଦାମ୍ଭିକ ପଣ କରି ମୁଁ ଦେଲି ତୋର ଧନ ॥
ଏବେ ତୋର ଚର୍ମ ମୋତେ କାଟିବ ଉଚିତ ।
ଏହିପରି ନ୍ୟାୟ କଥା କହିଲା ତା ସୁତ ॥
ଶୁଣି ବ୍ରାହ୍ମଣ ବୁଢ଼ାର ନ ସ୍ଫୁରଇ କିଛି ।
ବହୁତ କଷ୍ଟ ତାକୁ କରିଲା ସେ ମୋତେ ॥
କରେ କାତି ଘେନି ଗଲା କାଟିବାକୁ ଚର୍ମ ।
ବୃକ୍ଷଟିଏ ରୋପିବାରୁ ଥିଲା କିଛି ଧର୍ମ ॥
ଆତଙ୍କ ହୋଇଣ ତହିଁ ବ୍ରାହ୍ମଣ କମ୍ପଇ ।
ତତକ୍ଷଣରେ ପ୍ରବେଶ ହେଲେ ବୃକ୍ଷ ଦୁଇ ॥
ମୂର୍ତ୍ତିମନ୍ତ ହେଲେ ଦୁହେଁ ଛାଡ଼ ବୃକ୍ଷ ରୂପ ।
ମୋଚନ କରାଇଲେ ବିପ୍ର ଆମ୍ଭ ଧର୍ମ ବାପ ॥

ଆମ୍ଭ ଦେହ ଜଣଙ୍କର ଠାରୁ ଚର୍ମ ନିଅ ।
ଏ ଆମ୍ଭର ପିତା ଅଟେ ଏହାଙ୍କୁ ଛାଡ଼ିଦିଅ ॥
ପାଟଣୋଇ ସମ ଦେହରୁ ଚର୍ମ ଦେଲେ କାଟି ।
ଚର୍ମ ପାଇଣ ସେ ମୋତେ ଗଲ୍ଭିକ ଲେଉଟି ॥
ଦେଖିଣ ବ୍ରାହ୍ମଣ ବୁଢ଼ା ଚକିତ ହୋଇଲା ।
ସୁସ୍ଥ ହୋଇକରି ମନୁ ଭୟକୁ ଛାଡ଼ିଲା ॥
ବେନି ଗୋଟି ବୃକ୍ଷ ତହୁଁ ହେଲେ ଅନ୍ତର୍ଦ୍ଧାନ ।
ନିଜ ପିଣ୍ଡରେ ପ୍ରବେଶ ବ୍ରାହ୍ମଣ ଜୀବନ ॥
ଚେତା ପାଇକରି ଦ୍ୱିଜ ଉଠିଲା ବହନ ।
ସ୍ତିରିଯାକୁ ବୋଇଲା ମୁଁ ଦେଖିଲି ସ୍ୱପନ ॥
ଏତେ ବୋଲି ନେତ୍ରକାଳ ଫେଡ଼ିଲା କବାଟ
ତକ୍ଷଣେ ମିଳିଲା ଯାଇଁ ବୃକ୍ଷର ନିକଟ ॥
ଦେଖିଲା ବେନି ବୃକ୍ଷରେ ବେନି ଛେଲି ନାହିଁ
ପାଣ୍ଟୋଇର ପ୍ରମାଣରେ ଅଛି କଟା ହୋଇ ॥
ରୁଧିର ପ୍ରାୟେକ ବୃକ୍ଷୁଁ ବହୁଅଛି ଜଳ ।
ଦେଖିଣ ବ୍ରାହ୍ମଣ ବୁଢ଼ା ହୋଇଲା ବିକଳ ॥
ବୁକୁରେ ସେ କୋଡ଼ହୋଇ ବୋଲେ କି କରିଲି
ମହା ବୃକ୍ଷ ଦୁଇଙ୍କୁ ମୁଁ ଏତେ ଦଣ୍ଡ ଦେଲି ॥
ଧିକ ଜନମ ମୋହର ଧିକ ବୁଦ୍ଧି ମୋର ।
ମୋପାଇଁ କଷଣ ବୃକ୍ଷେ ପାଇଲେ ଅପାର ॥
ଏତେବୋଲି ନେତ୍ରୁ ଲୁହ ବହେ ଘନ ଘନ ।
ତକ୍ଷଣେ ଗୋମୟ ବୃକ୍ଷେ କରିଲେ ଲେପନ ॥
ପଇଡ଼ର ପାଣି ଆଣି ବୃକ୍ଷ ମୂଳେ ଦେଇ ।
ପ୍ରଦକ୍ଷିଣ କଲା ବିପ୍ର ବୃକ୍ଷମୂଳେ ଶୋଇ ॥
ଉଠି ଉଭା ହୋଇ କରି କରେ ନମସ୍କାର ।
ବୋଲେ ବୃକ୍ଷରାଜ ମୋତେ କଲ ଉପକାର ॥
ଦୁଃସହ ସଙ୍କଟ ମଧ୍ୟୁଁ ମୋତେ ପାରି କଲ ।
ସଂସାର ମଧ୍ୟରେ ତୁମ୍ଭେ ଏ ଯଶ ରଖିଲ ॥
ଏମନ୍ତ ରୂପେ ବହୁତ ଜଣାଇ ସେ ପୁଣି ।
ଜାଣି ପାହାନ୍ତେ ଉଦୟ ହେଲେ ଦିନମଣି ॥
ପତ୍ନୀ ପାଶରେ ପତିକୁ ସ୍ୱପନ ବୃତ୍ତାନ୍ତ ।
ଶୁଣିଣ ବ୍ରାହ୍ମଣ ବୁଢ଼ା କହଇ ଯାବତ ॥
ଯମ ପୁର ଯିବାର ଯେ କ୍ଷୁଧା ତୃଷା କଥା ।
ପାଣି ପଣା ମାଗିବାର ଅନ୍ନର ବ୍ୟବସ୍ଥା ॥
ବୋଇଲା ବହୁତ ପଦାର୍ଥ ଅଛି ସେହି ସ୍ଥାନ ।
ଶୀତ କଷ୍ଟ ପାଇବାର ମାଗିବା ବସନ ॥

ରଖ ଲୋକମାନେ ତହିଁ ଯାହା କହୁଥିଲେ ।
ଉଚ୍ଛିଷ୍ଟ ଅନ୍ନ ଖାଇବା ହେଲେକର ବିକଳେ ॥
ପୁଣ୍ୟ ଲୋକମାନଙ୍କର ଆସିବାର ଗତି ।
ତାଙ୍କ ସମାଦର କରିବାର ଜନ୍ତୁପନ୍ତି ॥
ପାପି ଲୋକମାନଙ୍କର ଯେତେକ ଦଣ୍ଡ ମଣ୍ଡ ।
ତାଙ୍କୁ ପକାନ୍ତି ଯେପରି ନେଇ ନର୍କକୁଣ୍ଡ ॥
ପୁଅ ବୋହୂ ଯାହା ଯାହା କହୁଲେକ ପୁଣ ।
କାନ୍ଦି କାନ୍ଦି ସ୍ତ୍ରିୟା ଆଗେ କହଇ ବ୍ରାହ୍ମଣ ॥
ମୋର ଆସି ଚର୍ମ କାଟି ନେବାର ବିଷୟ ।
ନରରୂପି ବୃଷ ତହିଁ କାଟିଦେଲେ ଦେହ ॥
ବୋଇଲେ ମୋ ଧର୍ମ ତାତ ଅଟଇ ବ୍ରାହ୍ମଣ ।
ଆମ୍ଭଠାରୁ ଚର୍ମ ନିଅ ପାଟେଣ୍ଟଇ ପ୍ରମାଣ ॥
ଶୁଣିଣ ଚମର ବେଗେ ଲଗାଇଲା କାତି ।
ମୋହପାଇଁ ବୃଷେ ପାଇଛନ୍ତି ଏତେ ଶାସ୍ତି ॥
ଶୁଣ ତୁ ସୁନ୍ଦରି ସେହି ପୁର କଥା ମାନ ।
ତହିଁର ନୃପତି ଅଟେ ତପନ ନନ୍ଦନ ॥
ଧାର୍ମିକ ଲୋକଙ୍କୁ ତହିଁ ଅଛି ବଡ଼ ସୁଖ ।
ପାପି ଲୋକଙ୍କୁ ସେଠାରେ ମିଳେ ବଡ଼ ଦୁଃଖ ॥
ଅମର ଭୁବନ ପ୍ରାୟେ ଶୋଭେ ସେହି ପୁର ।
ପାପି ଲୋକଙ୍କୁ ସେ ପୁର ସ୍ୱପନ ପ୍ରକାର ॥
କମଳାଳୟ ପରାୟ ଦିଶେ ସେ ଭୁବନ ।
ଅଷ୍ଟ ଐଶ୍ୱର୍ଯ୍ୟ ଅଛି ତହିଁ ପରିପୂର୍ଣ୍ଣ ॥
ଜମ୍ବୁନଦର ପାବଛ ହୋଇଛି ସେଠାରେ ।
ଚିତ୍ର ବିଚିତ୍ରରେ ପୁର ଜନ ମନ ହରେ ॥
ପ୍ରସ୍ଫୁଟିତ ସୁମନର ବାସ ମହକଇ ।
ସେ ବନେ ସୁମନମାନେ ବିହରନ୍ତି ଯାଇଁ ॥
କାଞ୍ଚନର କୁମ୍ଭମାନ ଅଛଇ ଅନେକ ।
ପିଢା ଉପରେ ବସିଛି କଳସ କନକ ॥
ସାତକୁମ୍ଭରେ ନାରୀଏ ଜଳକୁ ପୂରାଇ ।
ପଥେ ଯାନ୍ତି ନେଉଥିଲେ ଜନମନ ମୋହି ॥
ଅମର ବର ପରାଏ ଛନ୍ତି ତହିଁ ନରେ ।
ଛି ଛି ଅସାର ସଂସାର ଏ କଳିକାଳରେ ॥
ଅହିଂସା ପଥରେ ଥିଲେ ଦେଖିବୁ ଟିଗୋ ସହି ।
ମିଛ ସଂସାର ଏଥିରେ ପ୍ରୟୋଜନ ନାହିଁ ॥
ଯା ଦେଇଥିବ ଅତିଥି ଅବା ଅଭ୍ୟାଗତ ।
ସେଠାରେ ତାହା ସକଳ ହୁଏ ପରାପତ ॥

ଦିନେ ଅତିଥି ଉଚ୍ଛିଷ୍ଟ ଅନ୍ନ ଦେଇଥିଲି ।
ସେ ଉଚ୍ଛିଷ୍ଟ ଅନ୍ନକୁ ମୁଁ ସେଠାରେ ପାଇଲି ॥
ଉତ୍ତମ ଦ୍ରବ୍ୟ ଦେଖିଣ ତହିଁ କଲି ଆଶ ।
ଯମଦୂତମାନେ ତହିଁ କରିଲେ ନିରାଶ ॥
ବୋଇଲେ ନ ଦେଇ ଏଥେ ଖାଇବାକୁ ଲୋଡ଼ୁ ।
ଧନ ରଖିବାର ଧିକ ତୋର ମୁହଁ ପୋଡ଼ୁ ॥
ତେଣୁକରି ଆମ୍ଭ ଘରେ ଅଛି ଯେତେ ଧନ ।
ମିଷ୍ଟାନ୍ନ କରି ଅତିଥି ଦିଅ ଭୋଜନ ॥
ବ୍ରାହ୍ମଣ ବୈଷ୍ଣବ ଦେବାଦେବୀ ସେବା କରି ।
ଦେଉଳ ମଣ୍ଡପ କୂପ ଆରାମ ପୋଖରୀ ॥
ଏହା କରାଇବା ଆମ୍ଭ ଅନ୍ୟ କାର୍ଯ୍ୟ ନାହିଁ ।
ଏତେ ବିଚାରି ବହୁତ ରୂପେ ଦାନ ଦେଇ ॥
ଗୋରୁଙ୍କ ମୁଖରେ ଘାସ ପିମ୍ପୁଡ଼ିଙ୍କ ଖୁଦ ।
ବିଷ୍ଣୁଙ୍କ ପ୍ରତିମା ପୂଜା ଶମ୍ଭୁ ଶିରେ ଦୁଧ ॥
ଏମନ୍ତ କରିଣ ଧନ ବିତରି ସୁଚିତରେ ।
ଦାନ ଦେଇ ଧର୍ମ କୀର୍ତ୍ତି ରଖିଲି ଜଗତେ ॥
ଏହିପରି ଯାବଜ୍ଜୀବ ଧର୍ମ କୀର୍ତ୍ତି କଲି ।
ଆୟୁଷ ଶେଷ ହେବାରୁ ମୃତ୍ୟୁକୁ ଲଭିଲି ॥
ପତି ବିଯୋଗ ହେବାରୁ ଦେଖି ତାର ନାରୀ ।
ଅଗ୍ନିରେ ପଶିଲା ସେହୁ ପତି ଶବ ଧରି ॥
ମୃତ୍ୟୁକାଳ ଜାଣି ଦୂତେ ଆଇଲେ ତୁରିତ ।
ସଙ୍ଗେ ଘେନି ଆସିଛନ୍ତି ସ୍ୱର୍ଣ୍ଣମୟ ରଥ ॥
ଯେଣୁ ସେହି ସୁଚିତ୍ତରେ ଦେଇଥିଲି ଦାନ ।
ତେଣୁ ତାହାକୁ ପ୍ରାପତ ହେଲା ଶୁଭକର୍ମ ॥
ତତକ୍ଷଣେ ବେନି ପ୍ରାଣୀ ରଥରେ ବସିଲେ ।
ସଞ୍ଜୀବନୀ ପୁରେ ଯାଇଁ ପ୍ରବେଶ ହୋଇଲେ ॥
ଦେଖିଣ ସେ ପୁର ଜନେ ଆନନ୍ଦିତ ହୋଇ ।
ବସନ ଭୋଜନ ବହୁ ଯୋଗାଇଲେ ନେଇ ॥
ବୋଇଲେ ତୁ ଦେଇଅଛୁ ଏବେ ଭୋଗ କର ।
ଯାହା ଦେଇଅଛୁ ତାହା ରହିଛି ଏଠାର ॥
ବହୁତ ଆଦର କରି କଲେ ପୁରୁଷାର୍ଥ ।
ଜନ୍ତୁପନ୍ତି ଦେଖି କରି ହେଲି ତୋଷଚିତ୍ତ ॥
ଗଉରବ କରି ତାଙ୍କୁ ଦେଲେ ଦିବ୍ୟ ରସ ।
ଦେଖିଣ ବ୍ରାହ୍ମଣ ବୁଢା ହୋଇଲା ହରଷ ॥
ଇହଲୋକେ ସେହି ବିପ୍ର ଯାହା ଥିଲା ଦେଇ ।
ସେ ପୁରେ ଦେଖିଲା ବିପ୍ର ସମସ୍ତ ଅଛଇ ॥

ଦେଖିଣ ବ୍ରାହ୍ମଣ ବୁଢ଼ା ବିସ୍ମରିଲ ମନ ।
ବ୍ରହ୍ମମଧ୍ୟେ ରହିଗଲା ବାକି କିଛି ଧନ ॥
ଅତିଥି ଅଭ୍ୟାଗତେ ମୁଁ ଯାହା ଥିଲି ଦେଇ ।
ସେ ସବୁ ଏଠାରେ ମୋର ଅଛି ଥୁଆହୋଇ ॥
ପୁତ୍ରକୁ ଦେଖିବା ପାଇଁ ଆସିବାରୁ ଏଥି ।
ତେଣୁ ସିନା ଜାଣିଲି ମୁଁ ଏଥିର ତଦନ୍ତ ॥
ନୋହିଲେ ଏଠାରେ ପାଇଥାନ୍ତି ବହୁ ଦଣ୍ଡ ।
କୃପଣ ବୋଲି କରନ୍ତେ ଦେହ ଖଣ୍ଡ ଖଣ୍ଡ ॥
ଧନବନ୍ତ ହୋଇ ଯେବେ ଧର୍ମ ନ କରଇ ।
ଅତିଥି ଅଭ୍ୟାଗତଙ୍କୁ ଘଉଡ଼ି ଦିଅଇ ॥
ପୋଖରୀ ପାନ୍ଥଶାଳା ଆଉ କୂପ ଜଳ କାଢ଼ି ।
ନ କରଣ ଯେଉଁଜନ ଧନ ମଣି ଥାନ୍ତି ॥
ନ ଦେଇ ନ ଖାଇ ଯେହୁ ରଖେ ଯତ୍ନ କରି ।
ଆୟୁଷ ସରିଲେ ସେହୁ ଆସେ ଯମପୁରୀ ॥
ଏହିଠାରେ କ୍ଷୁଧା ତୃଷା ହୋଇଗଲେ ବହୁତ ।
ଭୋକ ବିକଳେ ନେଉଛନ୍ତି ଖାଇବାକୁ ଭାତ ॥
ତୃଷା ଆରତେ ନେଉଛନ୍ତି ପିଇ ପଣା ପାଣି ।
ଶୁଣିକରି ରକ୍ଷକଲୋକେ ମାରନ୍ତି କହୁଣି ॥
ପ୍ରଚଣ୍ଡ ତାପେ ରଖନ୍ତି ପୁଣି ତାକୁ ନେଇ ।
ଖରାରେ ଆରତ ହୋଇ ଲୋଡୁଥାଇ ଛାଇ ॥
ତତଲା ବାଲିରେ ଦୂତ ନିଅନ୍ତି ଘୋଷାରି ।
ଅନେକ ପ୍ରକାରେ ତାକୁ ଦଣ୍ଡମାନ ଦେଇ ॥
ବୋଲୁଥାନ୍ତି ଧନ ଅର୍ଜି ନ କଲୁ ରେ ଧର୍ମ ।
ଧିକ ତୋହର ଜୀବନ ଧିକ ତୋ ଜନମ ॥
ନ ଥିବା ଲୋକକୁ କିଛି ନ ଲାଗଇ ଦୋଷ ।
ଥାଇ ଧର୍ମ ନ କରିଲେ ନର୍କେ ହୁଏ ବାସ ॥
ଏହାକୁ ମୁଁ ଏଠାବରେ ଦେଖିକରି ଗଲି ।
ଧର୍ମ ଆଗେ କରି କିଛି ଧନ ବିତରିଲି ॥
ଦେଇଥିଲି ଯାହା ତାହା ଦେଲେ ଯମଦୂତେ ।
ଏହିପରି ବୁଢ଼ା ବିପ୍ର ବିସ୍ମରିଇ ଚିତ୍ତେ ॥
କହୁଛନ୍ତି ଚଇତନ ଶୁଣ ମନ ଗ୍ରାହ୍ୟ ।
ନ ଦେଲେ ନ ପାଇବ ଯେ ଏ କଥା ନିଶ୍ଚୟ ॥
ସତ୍ୟ ଅନୁକ୍ରମେ ଯେହୁ କରୁଥାଏ ଧର୍ମ ।
ଇହ ପରଲୋକେ ତାର ହୁଏ ଶୁଭକର୍ମ ॥
ସଂସାର ମଧ୍ୟରେ ଅଛନ୍ତି ଯେତେ ଯେତେ ଲୋକ ।
କର୍ମ ଅନୁସାରେ ଭୁଞ୍ଜୁଥାନ୍ତି ଦୁଃଖ ସୁଖ ॥

ଗତ ଜନ୍ମ ପାପ ପୁଣ୍ୟ ଏ ଜନ୍ମରେ ପାଇ ।
ବୃକ୍ଷକୁ ଯେପରି କେବେ ନ ଛାଡ଼ଇ ଛାଇ ॥
ଶୁଣିଲାରୁ ସୁମନ ଯେ ହେଲା ତୋଷ ଚିତ୍ତ
କହଇ ମାଧବ ପାରିକର ଜଗନ୍ନାଥ ॥



କଳି ଚରିତ୍ର ଓ ତାହାର ଗୁଣ ।

ସୁମନ ବୋଲନ୍ତି ତୁମ୍ଭେ ଶୁଣ ଚଇତନ୍ୟ ।
ଆଉ କିଛି ଧର୍ମ କଥା କୁହନ୍ତୁ ଆପଣ ॥
ଧର୍ମ ମାର୍ଗେ ମୋର ଚିତ୍ତ କେଭେ ନ ବଳଇ ।
ଅଧର୍ମ କଥାରେ ପୁଣି ବହୁ ପ୍ରବର୍ତ୍ତଇ ॥
ଗୋବିନ୍ଦଙ୍କ ନାମ ଅଟେ ସୁଧାସମ ରସ ।
ସେହି କଥା ଅନୁକ୍ଷଣ କରନ୍ତୁ ପ୍ରକାଶ ॥
ଗୋବିନ୍ଦଙ୍କ ପାଦାମ୍ବୁଜେ ଚିତ୍ତ ରହୁ ନାହିଁ ।
ବିସ୍ମରଇ ଚିତ୍ତ ଦେବ କୃଷ୍ଣରେ ମିଶାଇ ॥
ସେହି ପାଦୁ ଗଳୁଅଛି ସୁଧାରସ ଧାର ।
ଆମ୍ଭ ତୋଷ କରିବ ମୁଁ କରିଣ ଆହାର ॥
ଶ୍ରବଣ ପଥରେ କରୁଥିବ ନିତ୍ୟ ପାନ ।
ମୁଖରେ ମୁଁ ବୋଲୁଥିବ କୃଷ୍ଣ ଭଗବାନ ॥
ଅତିଥିଙ୍କ ପୂଜା ବିଧି ନିତ୍ୟ କରୁଥିବ ।
ବ୍ରାହ୍ମଣଙ୍କ ପାଦେ ନିତ୍ୟ ମୁହିଁ ସେବୁଥିବ ॥
କ୍ଷୁଧାର୍ତ୍ତି ବିପ୍ରମାନଙ୍କୁ ଦେବଇଁ ଭୋଜନ ।
ଦକ୍ଷିଣା ବିଧି କରିଣ ଦେବି କିଛି ଧନ ॥
ଏ ମିଥ୍ୟା ସଂସାର ଜାଣ ଅଟେ ଅକାରଣ ।
ଏମନ୍ତ କରିଲେ ଅବା ପାଇବ କାରଣ ॥
ଏପରି ବିସ୍ମର ମୁହିଁ କରେଁ ଦୃଢ଼ କରି ।
କରିଲା ବେଳକୁ ତାହା ଦିଅଇ ପାଶୋରି ॥
ରୂପବତୀ ବେଶ୍ୟାକୁ ମୁଁ ଦେଖିଲେ ନୟନ ।
ତାହାକୁ ତ ବେଗକରି ନେଇ ଦିଏ ଧନ ॥
ଗୋବିନ୍ଦଙ୍କ ଚରିତ୍ରକୁ ଶୁଣି ମାଡ଼େ ନିଦ୍ରା ।
ଡମାଲି ଶୁଣିଲେ ତହିଁ ବଢ଼େ ମୋ ଶରଧା ॥
ଗୋବିନ୍ଦଙ୍କ ଚରିତ୍ରକୁ ନ କରେ କୀର୍ତ୍ତନ ।
ସେକଥାରେ କେତେବେଳେ ନ ରସେ ମୋ ମନ
ନିନ୍ଦ କପଟ ଲମ୍ପଟ କୂଟ ମିଥ୍ୟାଲକ୍ଷ ।
ଅସାଧୁଙ୍କ ସଙ୍ଗେ ସଙ୍ଗ ପଶାଖେଳ ରସ ॥
ଏଥିରେ ମୋହର ମନ ବହୁତ ରସଇ ।
ଦାନ ଦେଇ ଦକ୍ଷିଣା ମୁଁ ବୋଲେ ନାହିଁନାହିଁ ॥

ବିପ୍ରପାଦ ସେବିବାକୁ ହୁଏ ବଡ଼ ମନ ।
ଦେଖିଲେ କରି ନପାରେ ନ କରଇ ମାନ୍ୟ ॥
ବ୍ୟାଧିମନ୍ତ ଗୋରୁ ପଙ୍କମଧ୍ୟେ ପଡ଼ିଥିଲେ ।
ତାହାକୁ ଟେକିବା ମୋର ଶକ୍ୟ ନାହିଁ ବୋଲେ
କେହି ଜନ୍ତୁ ଯେବେ ଆସି ଖାଏ ମୋହଠାରେ ।
ତାହାକୁ ମାରିବାକୁ ମୁଁ ଧାଏଁ ତତପରେ ॥
କ୍ଷୁଧାର୍ତ୍ତି ଜନ ଯଦ୍ୟପି ମାଗେ ଅନ୍ନଗ୍ରାସେ ।
ତାହାକୁ ନ ଦେଇ ଘରେ ଯାଇଁ ଖାଇ ବସେ ॥
ବସ୍ତ୍ରଖଣ୍ଡେ ଦେବି ବୋଲି ମନେ ଭାବୁଥାଇ ।
ମାଗେ ଯେବେ କେହି ତାକୁ ବୋଲେ ନାହିଁ ନାହିଁ
ଗୋବିନ୍ଦ ନାମ ଶୁଣିବି ମନେ ପାଞ୍ଚି ଥାଇ ।
କର୍ଣ୍ଣରେ ପଡ଼ିଲେ ନାମ ନିଦ୍ରା ଆକର୍ଷଇ ॥
ଏକାଦଶୀ ବ୍ରତ କରିବାକୁ କରେ ମନ ।
ଅନିଦ୍ରା ରହିବି ଆଜି ନ କରି ଶୟନ ॥
ସେଦିନ ଦ୍ୱିଗୁଣ ମୁହିଁ କରଇ ଭୋଜନ ।
ବେଳ ଥାଉଁ ଥାଉଁ କରେ ସେଦିନ ଶୟନ ॥
କ୍ଷୁଧାର୍ତ୍ତି ଜନମାନଙ୍କୁ ନେଇ ଅନ୍ନ ଦେବି ।
ଏହିପରି ମନମଧ୍ୟେ ଥାଏ ସଦା ଭାବି ॥
କେହି ଯେବେ ମାଗି ଆସେ ବୋଲେ ନାହିଁ ନାହିଁ
ଘରେ ଥାଇ କରି ବୋଲେ ପାଇବି ମୁଁ କାହିଁ ॥
ବିଚାରଇ ପୁଅ ଝିଅ ବନ୍ଧୁ ମୋ ଘର ।
ମୋହର ମୂଳ ଅଟନ୍ତି ଜନନୀ ପିଅର ॥
ଏମନ୍ତ ବୋଲି କରଣ ଭାବୁଥାଏ ମନ ।
ପୁଣି ତାଙ୍କୁ ଛାଡ଼ିଯାଏ ଭାରିଯା ଘେନିଣ ॥
ଏହି ସଂସାରେ ଅଧର୍ମ ରହିଅଛି ଯେତେ ।
ତାହା ସବୁ ସଅଁପିଣ କହିବଇ କେତେ ॥
ଅଧର୍ମ କଥା ଯଦ୍ୟପି କରଇ ବିଚାର ।
ସେ କଥାରେ ସେହିକ୍ଷଣି ହେଉଛି ତତ୍ପର ॥
ସୁକର୍ମ କଥା ଯଦ୍ୟପି ବିଚାରେ ମୋ ମନ ।
ସେହିକଥା ସେହିକ୍ଷଣି ହେଉଛି ଖଣ୍ଡନ ॥
ସୁକର୍ମ ଆଚାରମାନ କରନ୍ତି ଯେ ନର ।
ସେମାନଙ୍କୁ ଦେଖି ହୃଦ ଦୁଃଖ ହୁଏ ମୋର ॥
କେମନ୍ତ ଚରିତ୍ର ଏହୁ କେମନ୍ତ ବିଧାନ ।
ଏ ବିଷୟ ମୋର ଆଗେ କହନ୍ତୁ ଚୈତନ୍ୟ ॥
ଶୁଣିକରି ଚଇତନ୍ୟ ବୋଲନ୍ତି ବଚନ ।
ଏକମନ ହୋଇକରି ଶୁଣହୋ ସୁମନ ॥

ଚାରିପାଦ ମେଦିନୀ ଯେ କାଟଶୁକରେ ଭୋଗ ।
ସତ୍ୟ ତ୍ରେତୟା ଦ୍ୱାପର ଆଉ କଳିଯୁଗ ॥
ସତ୍ୟଯୁଗେ ଚାରିପାଦ ତ୍ରେତୟାରେ ତିନି
ଦ୍ୱାପରରେ ଦୁଇପାଦ ଧରଇ ଧରଣୀ ॥
ସୁକର୍ମ ମାନ ସେଯେତେକ କହିଦେଲୁ ତୋତେ ।
ଏ ତିନି ଯୁଗରେ ଜାଣ ହୋଇଥିଲା ଏତେ ॥
ଏ ଚାରି ଯୁଗ ଅଟନ୍ତି ଚାରିଗୋଟି ଭାଇ ।
ସାନଭାଇ କଳି ବଡ଼ ଦୁର୍ଜନ ଅଟଇ ॥
ତିନି ଭାଇଙ୍କର ସେହି ଦେଖିଣ ଆଚାର ।
କଳିଯୁଗ କମ୍ପୁଥାଏ ହୋଇ ଥରହର ॥
ସଂସାର ଲୋକମାନଙ୍କୁ ତର୍ଜି କହେ ପୁଣ ।
ରହ ତୁମ୍ଭଙ୍କୁ କରିବି ମୁହିଁ ରଗାଭ୍ରଣ ॥
ଜେଷ୍ଠ ତିନି ଭାଇଙ୍କର ସାହା ଅଛ ପାଇ ।
ମୋ ମାର୍ଗରେ ନ ଚଳିଲେ ଶାସ୍ତି ଦେବି ମୁହିଁ ॥
ବିପ୍ରକୁଳକୁ କରିବି ଆଗ ନାର ଖାର ।
ପଛକେ ବୁଝିବି ସବୁଙ୍କର ନାଆଚାର ॥
ଏମନ୍ତେଣ ତିନିଯୁଗ ଧର୍ମରେ କଟିଲା ।
ଏବେ କଳିଯୁଗ ଆସି ପ୍ରବେଶ ହୋଇଲା ॥
କଳିଯୁଗ ମନେ ମନେ କରଇ ବିଚାର ।
ଧର୍ମପଥେ ଅଛ ସବୁ ବୁଝିବା ଏଥର ॥
ସାଧୁସନ୍ଥ ଜନ ଆଉ ବୁଦ୍ଧିମାନ ନର ।
ଯତି ସତୀ ଆଦିକରି ସର୍ବ ବିପ୍ରବର ॥
ଏହିପରି କଳିଯୁଗ ବିଚାରୁଛି ବସି ।
ମିଛ ମାୟା ପରବେଶ ହେଲେ ତହିଁ ଆସି ॥
ଛନ୍ଦ କୂଟ କପଟ ଯେ ଅନ୍ୟାୟର ହିଂସା ।
ବହୁଦିନୁ କଳିକି ସେ କରିଥିଲେ ଆଶା ॥
ସେହି ତିନି ଯୁଗରେ ସେ ପ୍ରବର୍ତ୍ତି ନପାରି ॥
କଳିଯୁଗକୁ ମନରେ ଥିଲେ ଚିନ୍ତାକରି ॥
କୁକର୍ମ କୃପଣ ଆଉ ବହୁ ହୀନବୁଦ୍ଧି ।
ଛନ୍ଦ ମନ୍ଦ ଆଦିକରି ସ୍ୱଜାତି ବିରୋଧୀ ॥
ଅସତ୍ୟ ଅନାଚାରମାନ କୂଟ ଲୋଭ ମୋହ ।
ରାଗ ତମ ଅଜ୍ଞାନାଦି ଦୁର୍ମତି ଦୁର୍ଜୟ ॥
କଳିର ପାଟଣ ଆସିଣ ମିଳିଲେ ସମସ୍ତେ ।
ସମସ୍ତଙ୍କ ଦୁଃଖ କଳି ଜାଣୁଛନ୍ତି ଶତେ ॥
ଏକଠାବରେ ସମସ୍ତେ ହୋଇକରି ଭୁଣ୍ଡ ।
ଆଜ୍ଞାମାଗିଲେ କଳିକି ହୋଇଣ ପ୍ରଚଣ୍ଡ ॥

ବୋଇଲେ ହେ କଳିରାଜା ଦେଖ ଆମ୍ଭ ଦୁଃଖ ।
ତୁମ୍ଭ ବନ୍ଦୀ ହୋଇଥିଲୁ ସମସ୍ତେ ନିରେଖ ॥
ସେ ସତ୍ୟଯୁଗର ଲୋକେ କଲେ ଅନାଦର ।
ତେଣୁ ପଶି ନ ପାରୁଁ ତାହାଙ୍କ ହୃଦର ॥
ବହୁତ ଦୁଃଖରେ ଆମ୍ଭେ ବଞ୍ଚିଥିଲୁ ଦିନ ।
ଏବେ ହେ ତୁମ୍ଭେ ଆମ୍ଭଙ୍କ ହୁଅ ପରସନ୍ନ ॥
ଆମ୍ଭମାନଙ୍କୁ ଅନ୍ତର କରିଛନ୍ତି ଯେହି ।
ତାହାଙ୍କର ବଂଶ ସବୁ ଏବେ ଛନ୍ତି ରହି ॥
ତାହାଙ୍କୁ କରିବୁଁ ଆମ୍ଭେ ବହୁ ନାରଖାର ।
ସତ୍ୟବନ୍ତ ଲୋକେ ଶତ୍ରୁ ଅଟନ୍ତି ଆମ୍ଭର ॥
ମହତ୍ତ୍ୱ ମର୍ଯ୍ୟାଦା ଶୀଳ ଦୟା କ୍ଷମା ଶାନ୍ତି ।
ସତ୍ୟ ଧର୍ମ ଲକ୍ଷ୍ମୀକର୍ମ ସୁବୁଦ୍ଧି ସୁକାନ୍ତି ॥
ତୁମ୍ଭର ଆଜ୍ଞା ପାଇଲେ ଏମାନଙ୍କୁ ତଡ଼ିବୁ ।
ଏ କଳିଯୁଗେ ଏହାଙ୍କ ମହତ୍ତ୍ୱ ସାରିବୁ ॥
ଆମ୍ଭମାନଙ୍କୁ ଘଉଡ଼ି ଦେଇଛନ୍ତି ଆଗ ।
ଏବେ ସେମାନଙ୍କୁ ଆମ୍ଭେ ଘଉଡ଼ିବା ବେଗ ॥
ଛନ୍ଦ କପଟ କନ୍ଧାନ୍ତି ହୋଇ ଆଗଭର ।
ଆମ୍ଭଙ୍କୁ ରଖିଲା ବାନ୍ଧି ରାଜା ଯୁଧିଷ୍ଠିର ॥
ଯୁଧିଷ୍ଠିର ଦୁର୍ଯ୍ୟୋଧନ ଆମ୍ଭଙ୍କୁ ବାନ୍ଧଣ ।
ସେହି ବେଳଠାରୁ କଲେ ସତ୍ୟ ଉଚ୍ଚାରଣ ॥
ତହିଁରେ ଥୋକାଏ ସତ୍ୟ ଅଛି ଭୋଗକର ।
ଶୁଣିଣ ଅସତ୍ୟ ତହୁଁ କହେ ଆଗୁଳକର ॥
ମୋତେ ତହିଁ ଦେଇଅଛି ଉଚ୍ଚାରଣ ସତ୍ୟ ।
ରହି ବୁଝିବା ତୁମ୍ଭର ଆଗର କେମନ୍ତ ॥
ଯୁଧିଷ୍ଠିର ରାଜାଙ୍କୁ ତୁହି କରୁଛୁ ପ୍ରଶଂସା ।
ମୋତେ ଦୂରକଲା ବୋଲି କରୁ ବଡ଼ ହିଂସା ॥
ଏପରି କହୁ ଯେ ଯାହାଠାରେ କୋପବହି ।
ଶୁଣିଣ ସେ କଳିଯୁଗ ତାହାଙ୍କୁ ବୋଲଇ ॥
ଏବେ ତୁମ୍ଭେ ସମସ୍ତେ ହୋ ଯାଅ ବେଗ ହୋଇ
ଅଧିକାର କର ତୁମ୍ଭେ ସର୍ବଦେହେ ରହି ॥
ତୁମ୍ଭର ଆଗର ଅଟି ସମସ୍ତ କରିବେ ।
ତେଣୁକରି ଏ ସଂସାରେ ନିଶ୍ଚିନ୍ତେ ରହିବେ ॥
ସୁଧର୍ମ ଆଗରମାନ କରିବେ ଯେ ନର ।
ସେ ଲୋକମାନଙ୍କୁ ଦୁଃଖ ଦେବ ବହୁତର ॥
ମୋହର ଆଗରମାନ ଛାଡ଼ିବ ଯେ ଜନ ।
ତାହାଙ୍କୁ କରିବା ବହୁତର ହୀନମାନ ॥
ଧନ ଜନରେ ସେମାନେ ହୋଇବେ ନିରସ୍ତ ।
ସେଥିପାଇଁ ଘରେ ଘରେ ମାଗିବେକ ଭିକ୍ଷ ॥
ମୁହିଁ କଳିଯୁଗ ମୋର ଆଗର ଛାଡ଼ିଲେ ।
ସେ ଲୋକମାନଙ୍କୁ କମୁ ବଧାଇବୁ ଭଲେ ॥
ଯାଅ ବେଗକରି ତୁମ୍ଭେ ନକର ବିଳମ୍ବ ।
ସେ ଯାହାର ଅନୁରୂପେ ବସ ସର୍ବ ଅଙ୍ଗ ॥
ମୋହ ଆଗର ବଢ଼ାଅ ଯାଇଁ ବେଗକରି ।
ତୁମ୍ଭର ଦୁଃଖ ଦେଖିଣ ମୋ ହୃଦ ବିଦାରି ॥
ସମସ୍ତେ ବୋଇଲେ ତହୁଁ ତୁମ୍ଭସଙ୍ଗେ ଯିବୁ ।
ଆଗ ହୋଇକରି ଆମ୍ଭେ ପଶି ନ ପାରିବୁଁ ॥
ଶୁଣିକରି ସନମତ କଲା କଳିଯୁଗ ।
ସକଳ ପ୍ରକୃତି ଆସି ମିଳିଲେ ତା ଆଗ ॥
ବୋଇଲେ ସୁମନରାଜା ଆମ୍ଭଙ୍କୁ ତଡ଼ିଲା ।
ଗୋବିନ୍ଦଙ୍କ ପଦାମ୍ବୁଜେ ସତତ ମଜ୍ଜିଲା ॥
ବିଷ୍ଣୁଠାରେ ଭକ୍ତ ସେହି ଅଟେ ଜ୍ଞାନବାନ ।
ଆମ୍ଭମାନଙ୍କୁ ପାଶରୁ କରିଦେଲା ଭିନ ॥
ନିମଗ୍ନ ହୋଇଣ କୃଷ୍ଣ ସେବା କରୁଥାଇ ।
ଜ୍ଞାନ ଖଡ଼ଗରେ ସେହି ସବୁଙ୍କୁ ହାଣଇ ॥
କେତେରୂପରେ ଶ୍ରୀକୃଷ୍ଣ ପାଦରେ ଜଣାଇ ।
ତେଣୁ ତାର ପାଶେ ଆମ୍ଭେ ନପାରିଲୁଁ ରହି ॥
ଆମ୍ଭଙ୍କୁ ଘଉଡ଼ି ସେହି ହୁଏ ସୁଖନିଧି ।
ତାହା ଦେଖିକରି ଆମ୍ଭେ ହେଉଛୁଁ ବିଦାରି ॥
କଳିଯୁଗ ବୋଇଲେ ଏବେ ସବୁକଥା ଛାଡ଼ ।
ବେଗେ ସୁମନକୁ ତୁମ୍ଭେ ଦମପାଇଁ ମାଡ଼ ॥
ସୁକର୍ମ ମାର୍ଗେ ଯେବେ ସେ କରିବ ଗମନ ।
ତୁମ୍ଭେ ତାର ସଙ୍ଗେ ଥାଇ କରୁଥିବ ବିଘ୍ନ ॥
ତହିଁକି ମୁହିଁ ହୋଇବି ତୁମ୍ଭ ଆଗୁସାର ।
ଏମନ୍ତେଣ ସୁମନଙ୍କୁ କରି ହରି ବର ॥
ସୁକର୍ମମାନ ଯେପରି ନ ପାରିବ କରି ।
ତେବେ ଏ ସଂସାରୁ ସେହି ନପାରିବ ତରି ॥
ସୁମନ ତୁମ୍ଭଙ୍କୁ ନାମ ଧ୍ୟାଇ ଘଉଡ଼ିଲା ।
ମୋତେ ଧ୍ୟାଇ ତୁମ୍ଭେ ତାର ମନକର ଭେଳା ।
ପ୍ରକୃତିମାନଙ୍କୁ ଏହା କହି କଳିଯୁଗ ।
ସଂସାରମଧ୍ୟେ ଯିବାକୁ ବାହାରିଲା ବେଗ ॥
ତତକ୍ଷଣେ ରତ୍ନମୟ ପାଲଙ୍କି ଆଣାଇ ।
ପାଟର ମୁଣ୍ଡୁଲା ଆଣି ପକାଇଲା ତହିଁ ॥

ହାତେକ ବନ୍ଧନରେ କଳି ବଞ୍ଚିଲା ଶେଷ ।
ତହିଁପରେ ବାଛିଲା ସୁମନ ସେରାଜ ॥
ମୁକୁତାର ଝରାମାନ ଲମ୍ବେ କେରି କେରି ।
ତା ଉପରେ ଚନ୍ଦୁଆକୁ ଟାଣି ସମ ହେରି ॥
ସୁରିଯାର ହାତ କଳି ଧରିକରି ନେଲା ।
ପାଲଙ୍କି ଉପରେ ତାକୁ ନେଇ ବସାଇଲା ॥
ସପ୍ତ ପରିବାରି ସଙ୍ଗେ ନାଚେଯାଗିଲା ନେଇଁ ।
କେ ଆଲଟ ଧରେ କେହୁ ବଇଁଶୀ ବଇଁଇ ॥
କେ ଗାବନ୍ତି ଗୀତ କେହୁ ଦିଅନ୍ତି ହୁଳହୁଳୀ ।
ପାଲୁଶରେ ଖଟିଛନ୍ତି ସହସ୍ରେକ ବାଳୀ ॥
ଏଥୁଅନନ୍ତରେ ସେହି କଳି ମହାବୀର ।
କରରେ କମାଣ ଧରି ହୋଇଲା ବାହାର ॥
ମେଘପରାୟେ ଦିଶଇ କଳିର ଶରୀର ।
ଆକାଶମାର୍ଗରେ ଯାଇଁ ଲାଗିଲା ତା ଶିର ॥
ଉଡ଼ିଏ ଛାଡ଼ିଲା ଯେହ୍ନେ ମେଘ ଘଡ଼ ଘଡ ।
ସୁକର୍ମମାନ ସଭିଏ ପଳାଇଲେ ଛାଡ଼ି ॥
ଲୋଭ ମୋହ ହିଂସା କୁଟ ଆଦି ବେଗେ ଆସି
ସବୁଙ୍କର ଦେହରେ ସେ ବେଗେ ଗଲେ ପଶି ॥
ଅନ୍ୟାୟର କୃପଣ ଯେ ମିଥ୍ୟା ମୂଢ଼ମତ ।
ତତକ୍ଷଣେ ସଂସାରରେ ଗଲେ ସେ ପ୍ରବର୍ତ୍ତି ॥
ସୁଧର୍ମ ସକଳ ଗଲେ ଭୟେ ଅପସରି ।
ଅଧର୍ମମାନ ସଂସାରେ ରହିଲେ ଆବୋରି ॥
ପଚାଶ ପ୍ରକୃତ ହେଲେ ପରବେଶ ଆସି ।
ସୁମନ ସ୍ୱାମିଙ୍କ ବେଗେ ଧଇଲେ ଆକର୍ଷି ॥
ଯେବେ ସେହି ଧର୍ମକଥା ବିଚାରଇ ମନେ ।
ଏମାନେ ତା ଭଗ୍ନକରି ଦିଅନ୍ତି ତତକ୍ଷଣେ ॥
ଅଧର୍ମ କଥାମାନଙ୍କୁ ଯେବେ ମନେକରେ ।
ପଚାଶ ପ୍ରକୃତ ବଳ ଦିଅନ୍ତି ଆଗକରେ ॥
କଥିତ ପ୍ରକାରେ ଯେବେ ତହିଁ ମନଦେଇ ।
ସହସ୍ରପ୍ରକାରେ ତାକୁ ପ୍ରବର୍ତ୍ତାନ୍ତି ନେଇ ॥
ବୋଲନ୍ତି ଜୀବମାନଙ୍କ ନାଶ ବେଗେଯାଇଁ ।
ସ୍ୱମାଂସ ଭକ୍ଷିଲେ ପୁଷ୍ଟହେବ ଆମ୍ଭ ଦେହୀ ॥
ଏହିପରି ପାଇଁଥାନ୍ତି ମନ ଅନୁକ୍ଷଣେ ।
ନସ ସେହି କଣପାରେ ହୋଇ ଏକଜଣେ ॥
ତେଣୁ ସେହି ଧର୍ମକାର୍ଯ୍ୟ ନ ପାରଇ କରି ।
ଅଧର୍ମ ପ୍ରବର୍ତ୍ତି କହୁଦନେ ଯାଏ ମରି ॥

ଶୁଣିଣ ସୁମନ ସ୍ୱାମୀ ହୋଇଲେ କମ୍ପମାନ ।
ବୋଇଲେ ଏଥିରୁ ରକ୍ଷାକର ଭଗବାନ ॥
ଆହେ ନାରାୟଣ ଏବେ କର ମୋତେ ପାର ।
ତାରକଣ ଭବସିନ୍ଧୁ ଦେଇ ପଦତରୀ ॥
ଆତଙ୍କ ନାଶନ ଅଟେ ତୁମ୍ଭ ନାମ ଗୁଣ ।
କହଇ ମାଧବ ମୁହିଁ ସେପାଦେ ଶରଣ ॥



କଳିରେ ଲୋକମାନଙ୍କର ବ୍ୟବହାର ।

ସୁମନ ବୋଲନ୍ତି ଯାହା କହିଲ ଚୈତନ୍ୟ ।
ଏହା ଶୁଣି ମୋହର ଯେ ବୁଡ଼ିଗଲା ଜ୍ଞାନ ॥
ପୁଣି ବିଚାରଇ ମୁହିଁ ଏ ମୋହର ଚିତ୍ତ ।
ଅଟନ୍ତି ସକଳ କର୍ତ୍ତା ପ୍ରଭୁ ଜଗନ୍ନାଥ ॥
ମୁହିଁ ଯେବେ ପ୍ରଭୁଙ୍କର ଥିବ ଆଶ୍ରାଧରି ।
ପ୍ରକୃତିମାନେ ମୋହର କି ପାରିବେ କରି ॥
ପ୍ରଚଣ୍ଡ ବାତେ ରହେ କି ଶୁଖିଲା ପତର ।
ମାର୍ଜାର ଆଗରେ କାହିଁ ଦର୍ପ ମୂଷିକର ॥
କେଶରୀ ଆଗମନେ କି ରହେ ମତ୍ତକରୀ ।
ସୂର୍ଯ୍ୟ ଉଦେହେଲେ ଯେହ୍ନେ ଯାଏ ବିଭାବରୀ ॥
ତେମନ୍ତ ପରାୟେ ହୋଇ ସର୍ବ ହେବ ଦୂର ।
ଯେବେ କି ଧରିବ ମୁହିଁ ଗୋବିନ୍ଦପୟର ॥
ଏଥକୁ ସାଧୁଜନେ ହୋ ମନରେ ବିଚାର ।
ଏକଥା ମିଥ୍ୟା ନୁହଇ ଅଟେ ଜଗାଧାର ॥
ଏଥୁଅନନ୍ତରେ ପୁଣି ସୁମନରାଜନ ।
ଚଇତନ୍ୟ ପାଦେ ପଡ଼ି କହଇ ବଚନ ॥
ଏହିଠାରୁ ସଂଶୟ ଯେ ରହିଲା ମୋ ମନ ।
କେମନ୍ତ ପ୍ରକାରେ କଳି କଲାକ ଗମନ ॥
କେମନ୍ତ ପ୍ରକାରେ କଳି ହେଲା ପରବେଶ ।
ସେହିକଥା ଆଦ୍ୟନ୍ତେ କରନ୍ତୁ ପ୍ରକାଶ ॥
କେମନ୍ତ ଆଚାର ତାର କେମନ୍ତ ବିଚାର ।
କିପରି ଚଳିବେ ଏବେ କଳିଯୁଗ ନର ॥
ଏହା ସବିଶେଷ ମୋତେ କହିବା ଚୈତନ୍ୟ ।
ତବ ମୁଖରୁ ଶୁଣିଲେ ହେବ ଦିବ୍ୟଜ୍ଞାନ ॥
ଶୁଣି ଚୈତନ୍ୟ ବିଷ୍ଣୁଙ୍କୁ ହୃଦେ ଧ୍ୟାନକରି ।
ଜୟ ଜୟ ସ୍ୱାମି ତୁମ୍ଭେ ଶଙ୍ଖ ଚକ୍ରଧାରୀ ॥
ତୁମ୍ଭେ ଯେ ସୁଦୟା ମୋତେ କଲେ ଦେବରାୟେ
କଳିର ଚରିତ୍ର ମୁହିଁ କହିବି ଟିକାଏ ॥

ମୋଠାରେ ତୁମ୍ଭର ଯେବେ ହୋଇବ କରୁଣା ।
କଳି ବଳନ୍ତ ନହ୍ନବ ନ ହୋଇବା ବଣା ॥
ଅଟନ୍ତି ଦୀନବନ୍ଧୁ ଏମନ୍ତେ ହୁଅନ୍ତୁ ପ୍ରସନ୍ନ ।
ଏତେତେବୋଲି ବିଷ୍ଣୁଙ୍କୁ କରିଲେ ସେ ଧ୍ୟାନ ॥
ଧ୍ୟାନେ ଦେଖିଲେ ପ୍ରଭୁଙ୍କୁ ପଦ୍ମ ଆସନରେ ।
ବିଜେ କରିଛନ୍ତି ରତ୍ନ ସିଂହାସନ ଉପରେ ॥
ସେବନ୍ତି ପାଦୁକାରେ ଛତ୍ର ଲକ୍ଷ୍ମୀ ସରସ୍ୱତୀ ।
ବୀଣା ଧରି ଅଟନ୍ତି ଦିବ୍ୟ ନାରଦ ଯେ ଯତି ॥
ଚତୁର ମୁଖରେ ବ୍ରହ୍ମା କରଇ ଜଣାଣ ।
ଭକ୍ତ ହୋଇଛନ୍ତି ସେହିଠାରେ ଦେବଗଣ ॥
ଯେ ଯାହାର ସେବାରେତ ସର୍ବେଛନ୍ତି ରହି ।
ଆଲଟ ଚାମରମାନ ବିଞ୍ଚୁଛନ୍ତି ନେଇଁ ॥
ବରୁଣ ସୁବାସ ପାଣି ଧରିଣ ଝରିରେ ।
ଠିଆ ହୋଇଛନ୍ତି ନେଇ ପ୍ରଭୁଙ୍କ ସମ୍ମୁଖରେ ॥
ମଳୟପବନ ବହେ ତହିଁ ଧୀର ଧୀର ।
ସୁଗନ୍ଧରେ ଆମୋଦଇ ସମସ୍ତ ଶରୀର ॥
ବାସବ ଚାମର ଧରି ଧୀରେ ଧୀରେ ଢାଳ ।
ଦେବସ୍ତ୍ରୀମାନେ ମିଳି ଦିଅନ୍ତି ହୁଳହୁଳି
ବ୍ରହ୍ମା ଦେବଗଣ ଆଦି ସର୍ବ ସୁରମୁନି ।
ସବୁଙ୍କର ମୁଖେ ଶୁଭେ ହରି ହରି ଧ୍ୱନି ॥
ପ୍ରଭୁଙ୍କର ପାଦମୂଳେ ଚିତ୍ତକୁ ବୁଡ଼ାଇ ।
ମହାନନ୍ଦେ ଦେବଗଣ ଛନ୍ତି ଛିଡ଼ାହୋଇ ॥
ଏମନ୍ତ ସମସ୍ତ ଧ୍ୟାନେ ଚୈତନ୍ୟ ଦେଖିଲେ ।
ସକଳ ଚିନ୍ତାମାନଙ୍କୁ ମନୁ ଉପେକ୍ଷିଲେ ॥
ଜୟ ଜୟ ବିଷ୍ଣୁ ବୋଲି କଲେକ ଧିଆନ ।
ମାଧବର ସେହି ପାଦେ ସଦା ରହୁ ମନ ॥
ସକଳ ସାଧୁଜନେ ହେ ମୋତେ ଦୟାକର ।
ତୁମ୍ଭର କୃପା ହୋଇଲେ ଭବୁ ହେବି ପାର ॥
ଏଥୁଅନନ୍ତରେ ପୁଣି କହନ୍ତି ଚୈତନ୍ୟ ।
ସାବଧାନ ହୋଇକରି ଶୁଣହେ ସୁମନ ॥
ଭୂପେ ପଚାରିଲୁ ମନ କଳିର ବୃତ୍ତାନ୍ତ ।
ବଚନରେ କହି ନୋହେ ସେ ବଡ଼ ଅଜାତ୍ୟ ॥
ଧରିଯାକୁ କଳି ସ୍ୱର୍ଣ୍ଣ ରଥରେ ବସାଇ ।
ସହସ୍ରେକ ପରିବାରୀ ନିଯୋଗିଲା ନେଇଁ ॥
ବାୟୁଠାରୁ ବେଗ ଅଶ୍ୱ ସଜାଇଛି ଆଣି ।
ଚାରି ଚରଣରେ ତାଙ୍କ ନୂପୁର ବାଜେଣି ॥

ରଥର ଉପରେ ସ୍ୱର୍ଣ୍ଣ ଚାନ୍ଦୁଆ ଯେ ଶୋହେ ।
ହୀରା ନୀଳା ମୋତିରେ ସେ ଝିଲ୍ଲୁଣ ଥାଏ ॥
କଳିଯୁଗ ନିଜେ ଯାଇ ହେଲା ଦିବ୍ୟବେଶ ।
ଶିରପରେ ରଙ୍ଗପାଗ ବାନ୍ଧି ଝିନବାସ ॥
ଆଉ ଚାରଙ୍ଗ ଖାରଙ୍ଗା ପିନ୍ଧି ପାଇଜାମା ।
ବସନ୍ତ୍ର ସୁବେଶ କଲି କେ ଦେବ ଉପମା ॥
ଅଷ୍ଟରତ୍ନରେ ଜଡ଼ିତ ଦିବ୍ୟ ପଦ୍ମମାଳା ।
ପରିଚାରି ଲୋକେ ଆଣି ଲମ୍ବାଇଲେ ଗଳା ॥
ଛନ୍ଦ ମନ୍ଦ ଦ୍ୱନ୍ଦରେ ହେ ଘୋଡ଼ା ବାମେ ଗୋଡ଼େ ।
ସୁଜନ ଦର୍ପ ଧ୍ୱଂସନ ପୈତା କାନ୍ଧେ ପଡ଼େ ॥
ସୁଧର୍ମ ନାଶନ ନାମେ ବାନାକୁ ଉଡ଼ାଇ ।
ନୃତ୍ୟ ଗୀତ ଶବଦେଁ ପୃଥ୍ୱୀ ଚମକଇ ॥
ସତ୍ୟବନ୍ତ ନାଶନ ଯେ ଢାଲ ତରୁଆରି ।
କନ୍ଦଳ କୋରଡ଼ା ଗୋଟି ଧଇଲାକ କରି ॥
ଧର୍ମଦେବ ଘୋଡ଼ାପରେ ଯାଇକରି ବସି ।
ଅଧର୍ମ ବାଗକୁ କରେ ଧଇଲା ଆକର୍ଷି ॥
ଘୋଡ଼ାର ବାଗ ଦଉଡ଼ ଆଉ ଯା ପଦାର୍ଥ ।
ଏକଠାବେ ଜମାକରି ବାନ୍ଧିଣ ତୁରିତ ॥
ମାତାକୁ ବୋଇଲା ଆଲେ ବନ୍ଧ ଏହା ତୁହି ।
ଶୁଣିକରି ବୁଢ଼ି ବୋଲେ ନ ପାରିବ ବନ୍ଧି ॥
ତତକ୍ଷଣେ କୋରଡ଼ାଏ କରିଲା ପ୍ରହାର ।
କହେ ପ୍ରାଣେ ଆଶାଥିଲେ ବେଗେୟାକୁ ଧର ॥
ବୁଢ଼ି ବୋଇଲା ବାପୁରେ ମୋର ଶକ୍ତିନାହିଁ ।
ଏଡ଼େ ବୋଝ ମୁହିଁ କେବେ ନ ପାରିବ ବହି ॥
ଶୁଣିକରି କଳିଯୁଗ ଚାପି ଦନ୍ତପାଟି ।
ବିକରାଳ ନୟନରେ ଚାହିଁଲା ତରାଟି ॥
ଦେଖି ବୁଢ଼ି ବୋଲେ ଦୟା ନାହିଁକିରେ ମୋତେ
ଦଶମାସ ଗର୍ଭେ ପରା ଧରିଥିଲି ତୋତେ ॥
ଧରିଯାକୁ ପାଲିଙ୍କିରେ ବସାଇଲୁ ନେଇ ।
ମୋତେ ମାରୁଅଛୁ ଆରେ ନାନାଦଣ୍ଡ ଦେଇ ॥
ନ ଶୁଣି କଳିବୋଲଇ ଚାଲ ତଡ଼ବଡ ।
ବୁଢ଼ଲୋକ ସିନା ସେହି ପଡ଼ଇ ହାବଡ଼ ॥
ତକ୍ଷଣେ କୋରଡ଼ାକୁ ସେ ପିଟେ କୋପକରି ।
ବୋଲେ ବୁଢ଼ିମଲେ ପାପ ଯାଆନ୍ତା ଆମ୍ଭର ॥
ଶୁଣିକରି ବୋଲଇ ସେ କଳିର ଘରଣୀ ।
ଜାଣିଲି ବୁଢ଼ି ନମରି ରହେ ପ୍ରାଣଘେନି ॥

ଦୁଷ୍ଟ ଯାଉନଲା ତୋର ଏହି ବେଳ ଆଖି ।
କାମଧନ୍ଦା ନ କରିଣ ଖାଉଛ ବାନ୍ଧିକ ॥
ଶୁଣିକରି ବୁଢ଼ିବୋଲେ ପୁତ୍ରକୁ ଡାକିଣ ।
ଶୁଣୁଛୁ ନା ବୋହୂ ବୋଲେ କେମନ୍ତ ବଚନ ॥
କଳିବୋଲେ ତା ସଙ୍ଗରେ ଲାଗୁ ଅଛୋ ଭାଇ ।
ନମର ଯାଇ ବୁଢ଼ିଲେ ଖାଉଛୁ କପାଇଁ ॥
ପୁଣି ଯେବେ ଏହିକଥା ତୋ ମୁଖୁ ଶୁଣିବି ।
କୋରଡ଼ା ଘାତରେ ନାକଣ୍ଠ ତୋପିଠି ଫାଟିବ ॥
ଆଜଠାରୁ ସଂସାରରେ ଏହିପରି ହେବ ।
ମୋହର ଅଧିକାରରେ ଏମନ୍ତ ପ୍ରସ୍ତୁ ବ ॥
ଏତେବୋଲି ସେହିବୋହୂ ମାତାକୁ ଲୁହାଇ ।
ଘୋଡ଼ାଆଗେ ସେ ବୁଢ଼ିକୁ ଚଳାଇଲା ନେଇ ॥
ଭରିଯା ଆଗେ ଆଲଟ ଗ୍ରମର ପଡ଼ଇ ।
ପାଲଙ୍କି ଉପରେ ବସି ସୁଖେ ଯାଏ ସେହି ॥
ବୁଢ଼ି ଦଶା ଦେଖି ବୋହୂ ହସେ କର କର ।
ଏମନ୍ତେଣ କଳିହେଲା ସଂସାରେ ପ୍ରଚୁର ॥
ସାଧୁଜନଙ୍କର ହୃଦ ହୋଇଲା କମ୍ପମାନ ।
ଯତ ସନ୍ଥମାନଙ୍କର ହରିଗଲା ଜ୍ଞାନ ॥
ଯୋଗିଜନମାନଙ୍କର ହୃଦ ଟଳ ଟଳ ।
ବସୁମତୀ କମ୍ପଇ ଯେ ହୋଇଣ ବିକଳ ॥
ବାସୁକି ଯେ ତ୍ରୋଧରେ ବୋଲେ ପୁଣି ପୁଣି ।
ବହୁତ ଭାର ଏବେ ସେ ହୋଇଲା ଧରଣୀ ॥
ମୁହିଁ ରହିବଇଁ ଏବେ କେମନ୍ତ ପ୍ରକାରେ ।
ବହୁ ଅନ୍ୟାୟର ହେଲା ଏ କଳିଯୁଗରେ ॥
ଗିରି ମେରୁଙ୍କର ଭାର ବହିପାରେ ମୁହିଁ ।
ଦୁଷ୍ଟଜନଙ୍କର ଭାର ନ ପାରିଲି ସହି ॥
ହେ ଦୀନବନ୍ଧୁ ତୋହର ସକଳ ସଂସାର ।
ଏ କଳିଯୁଗରୁ ମୋତେ ବାରେକ ଉଦ୍ଧର ॥
ସିଦ୍ଧ ସାଧକ ସକଳ ତପି ଋଷିଜନ ।
ଧ୍ୟାନ ଭାଙ୍ଗି ମନ ତାଙ୍କ ହେଲା ଛନ ଛନ ॥
ବସିଲେକ ସର୍ବେ ତୁଣ୍ଡ ହୋଇ ଏକମେଳେ ।
ଧ୍ୟାନକରି ଜାଣିଲେ ସେ ନିଜ ଯୋଗବଳେ ॥
ବୋଇଲେକ କଳି ଆସି ହୋଇଲା ପ୍ରବେଶ ।
ଧର୍ମପଣ ଆମ୍ଭର ଏ କରିବ ବିନାଶ ॥
ଏଥିକୁ କେମନ୍ତ ଆମ୍ଭେ ଉପାୟ କରିବା ।
ଚାଲ ଏବେ ଭଲସ୍ଥାନ ଖୋଜିଣ ରହିବା ॥

ଶୌନକ ବୋଇଲେ ଅଛି ନୈମିଷ ଅରଣ୍ୟ ।
ଚାଲ ସର୍ବେ ସେହିଠାକୁ କରିବା ଗମନ ॥
ପବିତ୍ର ସ୍ଥାନ ଉତ୍ତମ ପୁଣ୍ୟ ସେହି ଭୂଇଁ ।
ସେହିଠାରେ ବହିଯାଏ ପୁଣ୍ୟ ଗଙ୍ଗା ନଈ ॥
ସେଠାରେ କରିବା ଚାଲ ସର୍ବେ ମହାଯାଗ ।
ଦେବତାଙ୍କ ବଦନରେ ଦେବା ହବିର୍ଭାଗ ॥
ସେଠାରେ ରହି କରିବା ନିତ ସ୍ନାନ ଦାନ ।
ସର୍ବେ କରିବା ହରିଙ୍କ ନାମକୁ କୀର୍ତ୍ତନ ॥
ସ୍ଥିର କଲି ଆମ୍ଭର ଯେ କ କରି ପାରିବ ।
ଉଠ ଯିବା ବିଳମ୍ବରେ ନାହିଁ ଆଉ ଲାଭ ॥
ହରିଧ୍ୟାନ କରି ସର୍ବେ ସେଠାରୁ ଗମିଲେ ।
ନୈମିଷ ଅରଣ୍ୟେ ଯାଇଁ ପ୍ରବେଶ ହୋଇଲେ ॥
ଦେଖିଲେ ଅତି ଉତ୍ତମ ଅଟଇ ସେ ସ୍ଥାନ ।
ରବୁଛନ୍ତି ଶୁକ ପିକ ପକ୍ଷୀ ଘନ ଘନ ॥
କୁସୁମବନେ ଭ୍ରମର ଛନ୍ତି ପନ୍ତି ପନ୍ତି ।
ପୁଷ୍ପ ଫଳଭରେ ବୃକ୍ଷ ଭୂମିରେ ଲୋଟନ୍ତି ॥
ଆମ୍ବ ପଣସ କଦଳୀ ଆଉ ନଡ଼ିଆଳି ।
କଦଳୀ ଖଜୁରୀ ଗୁଆ କରମଙ୍ଗା ତାଳ ॥
ଟଭା ନାରଙ୍ଗ ଲେମ୍ବୁ ଓ କମଳା ସପୁରି ।
କେନ୍ଦୁ ଡେଉଟ ଆବର ଅଛଇ ବଦରୀ ॥
ଚମ୍ପା ନାଗେଶ୍ୱର ପୁଷ୍ପ ପୁନ୍ନାଗ ମାଳତୀ ।
କେତକୀ ଯେ କୁରୁଅନା ଦମ୍ୟଣା ସେବତୀ ॥
ଜାଈ ଜୂଈ କୁରୁବେଳ ମଲ୍ଲିକା ଟଗର ।
ଅଶୋକ ଧାତୁକୀ ଚମ୍ପା ତଗର ମନ୍ଦାର ॥
ଏହିପରି ନାନାପୁଷ୍ପ ତହିଁ ଅଛି ପୂରି ।
ଭ୍ରମରେ ବୁଲନ୍ତି ତହିଁ ପୁଷ୍ପ ଚୁମ୍ବ କରି ॥
ହୋଇଛନ୍ତି ମଧୁରସ ପାନେ ମତ୍ତ ହେଲ ।
କ୍ରୀଡ଼ନ୍ତି ନାନାବର୍ଣ୍ଣର ପକ୍ଷୀ ହୋଇ ମେଳ ॥
ସେ ସ୍ଥାନ ଅତି ସୁରମ୍ୟ ଦେଖି ଋଷିମାନେ ।
ଅତ୍ୟନ୍ତ ହରଷ ହୋଇ ରହିଲେ ସେ ବନେ ॥
ସେହିଦିନ ଥିଲା ମାଘ କୃଷ୍ଣ ଚତୁର୍ଦ୍ଦଶୀ ।
ବ୍ୟାସଦେବ ପରବେଶ ହେଲେ ତହିଁ ଆସି ॥
ଦେଖିକରି ତପିଗଣ ଉଠିଲେ ତତ୍ପର ।
ଆନନ୍ଦେ ସମସ୍ତେ ତାଙ୍କୁ କଲେ ନମସ୍କାର ॥
କଲ୍ୟାଣ କରଣ ବ୍ୟାସ ତାହାଙ୍କୁ ସତ୍ୱର ।
କ ବସ୍ର କର ବସି ସର୍ବ ତପସ୍ୱୀ ॥

ଋଷି ବୋଇଲେ କଳିର ଆମ୍ଭେ ଭୟ ପାଇ ।
ଏହି ସ୍ଥାନକୁ ଆସିଣ ସର୍ବେ ଅଛୁ ରହି ॥
କଳିକାଳର ଭୟରୁ ବର୍ତ୍ତିବା କେମନ୍ତେ ।
ଏଥିରେ ବିଚାରମାନ କରୁଅଛୁଁ ଚିତ୍ତେ ॥
ଆପଣ ବେଦଜ୍ଞ ଭୂତ ଭବିଷ୍ୟ ଜାଣନ୍ତି ।
ଏଥିକୁ ବିଚାର ତୁମ୍ଭେ କହ ମହାମତି ॥
ଯାହା କରିବାକୁ ଆମ୍ଭେ ବିଚାରୁଛୁଁ ମନେ ।
ଏ କଥାକୁ ପ୍ରତିକାର କହ ମହାମୁନେ ॥
ନ ଛୁଇଁ ଏ କଳିକାଳ ତ୍ରାସ କରେ ଆସି ।
ତେଣୁକରି ତୁମ୍ଭଙ୍କୁ ହେ ପଚାରୁଁ ମହର୍ଷି ॥
ବ୍ୟାସଦେବ ବୋଇଲେ ହୋ ରାମନାମ ଧର ।
ମନ୍ଦ ପ୍ରକୃତିମାନଙ୍କୁ ଦେହୁଁ କର ଦୂର ॥
ବୈଷ୍ଣବ ଧର୍ମରେ ତୁମ୍ଭେ ଦେଇଥାଅ ଚିତ୍ତ ।
ଗୋବିନ୍ଦଙ୍କ ପାଦପଦ୍ମେ ମନ ଦିଅ ନିତ୍ୟ ॥
କି କରି ପାରିବ ଏହି କଳିକାଳ ଛାର ।
ଯେଣୁ ହରିନାମ ଅଟେ ମହାପାତହାର ॥
ସେ ନାମକୁ ହୃଦମଧ୍ୟେ ଜପ ଦୃଢ଼ଚିତ୍ତ ।
କି କରି ପାରିବ ଛାର କଳିକାଳ ଭୀତ ॥
ତୀର୍ଥଜଳମାନଙ୍କରେ ସ୍ନାନ ଦାନ କର ।
ଛୁଇଁ ନ ପାରିବ ତୁମ୍ଭ ଦେହେ କଳି ଛାର ॥
ଆମ୍ଭର ନନ୍ଦନ ଜାଣ ଶୁକ ମହାମୁନି ।
ସେହି ମହାତ୍ମା ଅଟନ୍ତି ପୂର୍ଣ୍ଣ ବ୍ରହ୍ମଜ୍ଞାନୀ ॥
ସର୍ବଶାସ୍ତ୍ର ବିଶାରଦ ଆଗମ ପୁରାଣ ।
ପଚାରିଲେ କହିବ ସେ ସର୍ବ ବିବରଣ ॥
ଏତେ କହି ବ୍ୟାସଦେବ ତହୁଁ ଗଲେ ଚଳି ।
ଶୁକଦେବଙ୍କ ପାଶରେ ସର୍ବେ ଯାଇ ମିଳି ॥
ଆସନ ସେ ପାଦାସନ ଦେଇ ବସାଇଲେ ।
ଧୂପ ଦୀପ ପୁଷ୍ପ ଆଉ ନଇବେଦ୍ୟ ଦେଲେ ॥
ବସିଲେ ସକଳ ଋଷି ହୋଇ ଏକମନ ।
ଶୁକମୁନିଙ୍କି ପୁଚ୍ଛିଲେ ସର୍ବେ ବ୍ରହ୍ମଜ୍ଞାନ ॥
ହେମୁନି ଶୁଣିମା ତୁମ୍ଭେ ବ୍ୟାସଙ୍କର ସୁତ ।
କଳିଯୁଗ ଏବେ ଆସି ହେଲା ଉପଗତ ॥
ଆମ୍ଭେମାନେ କଳିକାଳ ମହାଭୟ ପାଇ ।
ନୈମିଷ ଅରଣ୍ୟ ମଧ୍ୟେ ସର୍ବେ ଅଛୁଁ ରହି ॥
ଯେତେ ଲୋକ ରହିଛନ୍ତି ସଂସାର ମଧ୍ୟରେ ।
କେମନ୍ତେ ବର୍ତ୍ତିବେ ସେହି ଏ କଳିଯୁଗରେ ॥

କେମନ୍ତ ଆଚାର ତାଙ୍କ କେମନ୍ତ ବୃତ୍ତାନ୍ତ ।
କେମନ୍ତ ସଂସାରେ ଜନେ ହୋଇବେ ଆତଯାତ ॥
କେମନ୍ତ ହୋଇବ ସେହି କଳିର ଆଚାର ।
କେଉଁ ଭାବରେ ଚଳିବେ କହ ସର୍ବନର ॥
କେମନ୍ତ କରିଣ ପ୍ରଜା ପାଳିବେ ନୃପତି ।
କେଉଁ ଆଚାରେ ଚଳିବେ ପୁରୁଷ ଯୁବତୀ ॥
ପିତାପୁତ୍ରଙ୍କ କେମନ୍ତ ହେବ ଆଚରଣ ।
ବୋହୂମାନେ ଶାଶୁଙ୍କୁ ସେ ପାଳିବେ କେସନ ॥
କଳିଯୁଗେ ବିପ୍ର କି କି କରିବେ ଆଚାର ।
ଛତିଶ ବର୍ଣ୍ଣର ଜାତି ଅଛନ୍ତି ସଂସାର ॥
ସେମାନେ ଆଚରଣ କରିବେ କିପରି ।
ହେ ମୁନି ଏହା ଆମ୍ଭଙ୍କୁ କହିବେ ବିସ୍ତାରି ॥
ଆଦ୍ୟ ମଧ୍ୟ ପ୍ରାନ୍ତରେ ଯେ ହେବ କିସ କିସ
ଏ କଥା ବିସ୍ତାରି କହ ବ୍ୟାସପତି ଶିଷ୍ୟ ॥
ଶୁଣିକରି ଶୁକମୁନି ବିଷ୍ଣୁ କରି ଧ୍ୟାନ ।
ତତକ୍ଷଣେ ପ୍ରଭୁ ତାଙ୍କୁ ହୋଇଲେ ପ୍ରସନ୍ନ ॥
ବୋଇଲେ ମୁନି ପ୍ରସନ୍ନ ହୋଇଲୁଁ କି ତୋତେ ।
କହ ତୁ ଋଷିଙ୍କୁ ଯାହା ପଚାରନ୍ତି ତୋତେ ॥
ପୁଚ୍ଛିଲେ କହିବୁ ଏକା ନ ପୁଚ୍ଛିଲେ ନାହିଁ ।
ଏତେ କହି ଅନ୍ତର୍ହିତ ହେଲେ ଦେବସାହି ॥
ସେହି ମହାପ୍ରଭୁଙ୍କର ଅମ୍ବୁଜ ଚରଣ ।
ଧ୍ୟାନ ଜ୍ଞାନ ମାଧବ ମୁଁ ପଶିଲି ଶରଣ ॥
ସାଧୁଜନମାନଙ୍କର ଅ ଅତିଅନୁରାଗେ ।
କଳି ଚରିତ୍ର କହିବ ମୁହିଁ ଗୀତ ଯୋଗେ ॥
ଏଥିକୁ ସାଧୁଜନେ ନ କର ଉପହାସ ।
ଯାହା କୃପା କଲେ ମୋତେ କମଳାବିଳାସ ॥



କଳିରେ ଜନମାନଙ୍କର ବ୍ୟବହାର ।

ଏଥିଅନ୍ତେ କହୁଛନ୍ତି ଶୁକ ମହାମତି ।
ସାବଧାନ ହୋଇ ତୁମ୍ଭେ ଶୁଣ ଦେଇ ମତି ॥
ତୁମ୍ଭେମାନେ ପଚାରିଲ କଳିର ବେଭାର ।
ମିଥ୍ୟା କପଟ ଛନ୍ଦ ହେବ ଏହିଯୁଗେ ସାର ॥
ଯେଣୁ ମିଥ୍ୟା କୁବଚନ ନିତ୍ୟ କହୁଥିବ ।
ତାହାଙ୍କୁ ଭୟ କରିବେ ସକଳ ମାନବ ॥
ଅଧର୍ମ ଆଚରଣକୁ କରିବେ ଯେ ନର ।
ଧନ ଜନ ବୁଦ୍ଧି ବହୁ ହୋଇବ ତାହାଙ୍କର ॥

ଧର୍ମପଥ ଆଚରି କରି ଚଳିବ ଯେ ଜନ ।
ତାହାଙ୍କୁ ପଡ଼ିବ ଜାଣ ବହୁତ କଷଣ ॥
ଦୁଷ୍ଟ ଲୋକମାନେ ଦେଖି କରିବେ ତମାସା ।
ସୁଜନମାନଙ୍କୁ ପାଦେ ପକାଇବେ ଦଳି ॥
ଦୁଷ୍ଟ ଲୋକମାନେ ତହୁଁ ଜ୍ଞାନୀ ବୋଲାଇବେ ।
ସୁଜନମାନେ ତାହାଙ୍କୁ ସଦା ଆରାଧିବେ ॥
ହସିବେ ସେ ନ୍ୟାୟଶାସ୍ତ୍ର ଶୁଣି କରି କରି ।
ବୋଲିବେ ନୁହଇ ଏହ ଧର୍ମର ବେଭାର ॥
ବିଦ୍ୟାବନ୍ତ ଲୋକଙ୍କୁ ଯେ ନ ମିଳିବ ଅନ୍ନ ।
ବେଶ୍ୟାମାନଙ୍କର ମହାସୁଖେ ଯିବ ଦିନ ॥
କୁଳସ୍ତ୍ରୀମାନେ ଜାଣ ବିଟପୀ ହୋଇବେ ।
ପରପୁରୁଷଙ୍କ ସଙ୍ଗେ ସଦା ପ୍ରବର୍ତ୍ତିବେ ॥
କୁଳ ମହତ ଲଜ୍ଜାକୁ ଛାଡ଼ି ଭଲ ନାରୀ ।
ପରପୁରୁଷରେ ମାତି ହୋଇବେ ଦୋଗିରୀ ॥
ବଚନେ ତାହାଙ୍କୁ ଜିଣି ନ ପାରିବେ କେହି ।
ନାନା ଛନ୍ଦ ଚାତୁରୀରେ ଦେବେ ସେ ଭୁଲାଇ ॥
ନବଯୁବା ସ୍ତ୍ରୀଙ୍କି ଯେ ରଖି ନିଜବାସେ ।
ବିଟପୀ ସ୍ତ୍ରୀ ସଙ୍ଗେ ରମିବେ ପୁରୁଷେ ॥
ଯୋଇଲି ଭାରିଯାରେ ଯେ କରିବେ ବେଭାର ।
ବିଭାହେଲା ଭାରିଯାକୁ କରିଦେବେ ଦୂର ॥
ନିଜ ଭାରିଯାମାନଙ୍କୁ କରାଇ ନିରାଶ ।
ପରଦାରା ଲମ୍ପଟରେ ରହିବେ ପୁରୁଷ ॥
ସୁକର୍ମିମାନଙ୍କେ କାରୁ ନ ରହିବ ମନ ।
ଅଧର୍ମ କୀର୍ତ୍ତିମାନ ସେ କରିବେ ଭଜନ ॥
ନିଧନୀ ଲୋକମାନଙ୍କୁ ନ ପୁଛିବେ କେହି ।
ଧନବନ୍ତ ଲୋକ ପାଖେ ସର୍ବେ ଥିବେ ରହି ॥
ଶାଶୁମାନଙ୍କ ଉପରେ ଦେଉଁ ଯିବେ ବୋହୂ ।
ନାନା ଭର୍ତ୍ସନାରେ ଗାଳି ଦେଉଥିବେ ବହୁ ॥
ପୁତ୍ରମାନେ ସେ ଭାର୍ଯ୍ୟାକୁ ନ ବୋଲିବେ କିଛି ।
ମାତାଙ୍କୁ ଦଣ୍ଡିବେ ସେ ଯେ ଭାରିଯାକୁ ପୁଛି ॥
ବୋଲିବେ ଲୋ ଯାହା କିଛୁ ତୁହି ଆଗ ଦ୍ୱନ୍ଦ ।
ବେଳକୁଁ ଜାଣେ ବୁଢ଼ିଲୋ ଅଟୁ ତୁହି ମନ୍ଦ ॥
ଭାରିଯା ଉଣ୍ଡି ବସିଛି ଯେବେ ମଥା ପୋତି ।
ତାହାକୁ ବିନୟ ହୋଇଁ କହିବେ ଝାରଣି ॥
ମାତା ପିତାଙ୍କୁ ଭ୍ରମରେ ନ କରି ଆଦର ।
ଭାର୍ଯ୍ୟାକୁ ଘେନି କରିବେ ଯାଇଁ ଭିନ୍ନେ ଘର ॥

ଏକା ସ୍ତ୍ରୀ ପୋଷିବାକୁ ଯେ ହେବେ ବଳହନ୍ତ ।
ଆହୁରି ତାଙ୍କର ମନେ ଛାଡୁଥିବେ ନାତ ॥
ଦେବତାଗୁରୁମାନଙ୍କ ଯେ ନ ମାନିବେ କେହି ।
କଥା କହୁଥିବେ ସେ ଯେ ବଦନ ହଲାଇ ॥
ଦେବତାଗୁରୁମାନେ ତହୁଁ ହେବେ ଯେ ଅନ୍ତର ।
ଭାଇବୋହୂ ମନରେ ନ ଥିବ କିଛି ଡର ॥
ଷୋଳବର୍ଷ ପୁଅପେଘେନି ଅନୂଢ଼ା ଯେ ନାରୀ ।
ଭିନ୍ନ ଘରରେ ରହିବେ ତାହାକୁ ଆବୋରି ॥
ମାତାଙ୍କର ବଚନକୁ ପୁତ୍ରେ ନ ମାନିବେ ।
ପିତାଙ୍କୁ କୁମରମାନେ ଘଉଡ଼ାଇ ଦେବେ ॥
ବଡ଼ ସାନ ବୋଲି ଆଉ ମନେ ନ ବିଚାରି ।
ବୃଦ୍ଧଙ୍କୁ ନ ଲୋଡ଼ି ନ୍ୟାୟ ପିଲାମାନେ କରି ॥
ବୋଲିବେ ସେ ବୃଢାମାନେ ନ ଜାଣନ୍ତି କିଛି ।
ତାହାଙ୍କର ଜାଣିବାର ବିଷୟ କି ଅଛି ॥
ଜନ୍ତୁମାନେ କେହି ନ ଜାଣିବେ ଯୋଗ ।
ଅଯୋଗରେ ବରଷା ଯେ କରୁଥିବ ମେଘ ॥
ତେଣୁ କରି କୃଷି ହାନି ହୋଇବ ବହୁତ ।
ଟଙ୍କାକୁ ତଣ୍ଡୁଳ ସେରେ ନ ମିଳିବ ଘୃତ ॥
ଝିଅକୁ ଦେଇଣ ଟଙ୍କା ନେବେ ଅପ୍ରମିତେ ।
କନ୍ୟାଦାନ ନ କରିଣ କରିବେ ଏମନ୍ତେ ॥
ଭୋକିଲା ଲୋକଙ୍କୁ ସ୍ନେହେ ନ ଦେବେଟି ଅନ୍ନ ।
ତାହାଙ୍କୁ କହୁଥିବେ ତୁ କରି ମୂଲ କାମ ॥
ଏ ଦୋଷରେ ନ ମିଳିବ ତୋତେ କିଛି ଅନ୍ନ ।
ଯାଅ କହି ତଡ଼ିଦେବେ ତାହାକୁ ବହନ ॥
ଦାନ ଦେଇ ଦକ୍ଷିଣା ନ ଦେବେ କଦାଚିତେ ।
ପର ଦ୍ରବ୍ୟ ହରଣ ସେ କରିବେ ନିରତେ ॥
ଜଳ କୀର୍ତ୍ତିମାନ ପୋତି ତହିଁ କରି ଗୃହ ।
ହାଳ କରିବେ ବୃଷଭ ବୋଲିବେ କି ଦୋଷ ॥
ଦାନ ଦେଇ ହରିନେବେ ଲୋଭେ ପୁଣ ପୁଣ ।
ବହୁତ ଅନ୍ୟାୟ ଯେ କରିବେ ବ୍ରାହ୍ମଣ ॥
ଗାୟତ୍ରୀ ମନ୍ତ୍ରକୁ ଛାଡ଼ି ପାରସି ଶିଖିବେ ।
ବେଦ ବିଦ୍ୟା ଆଦିକରି ସର୍ବ ପାସୋରିବେ ॥
ତ୍ରିସନ୍ଧ୍ୟା ନ କରିବେ ସେ ବେଳ କାଳ ଜାଣି ।
ଶୂଦ୍ର ସ୍ତ୍ରୀମାନଙ୍କୁ ଘେନି କରିବେ ରମଣି ॥
ଘରେ ଘରେ ବୁଲିକରି ନେଉଥିବେ ଦାନ ।
ଶବହାଡ଼ ଗଳା ନେବେ ବହୁତର ଧନ ॥

ପଞ୍ଚାଶାଏ କଳିଭକ୍ତ ହେବ ଯେତେ ଲୋକ ।
ତା ସଙ୍ଗେ ଯୋଗାଇବେ ମୋ ଯେସନେ ସେବକ
ମଣକ କହିଁ କେଭେ ଧ୍ୟାନ ନ ଧେଆଇବେ ।
କାର୍ଯ୍ୟଗ୍ରାହୀର ମହତ୍ୱ କେବେ ନ ରଖିବେ ॥
ବାଣିଜ୍ୟ କରିବେ ଦ୍ୱିଜ ଲୋଭର ଜାତିର ।
ବେଦବିଦ୍ୟା ଛାଡ଼ି ସେ ଧନେ ଦେବେ ଚିତ୍ତ ॥
ପୁଣି ସଭା ଶଟାରେ ସୁଆଁଖେଳ କରି ।
ମୁଖରେ ସେ ନ ବୋଲିବେ ରାମ-କୃଷ୍ଣ ହରି ॥
ବସନ ନ ପାଲଟିଣ ଭୁଞ୍ଜିବେ ସେ ଭାତ ।
ଗ୍ରସ୍ତରୋଗ ବୋଲିବେ ମୋ ଦେହ ଅଶକତ ॥
ମିଥ୍ୟା କପଟ କହି ବାନ୍ଧିଥିବେ ଧନ ।
ଭକ୍ଷଣ କରିବେ ବିପ୍ରେ ଶୁଷ୍କ ମାଛମାନ ॥
ବିଧବା ସ୍ତ୍ରୀମାନେ ଯେ ଶୂଦ୍ରେ ହୋଇ ରତ ।
ରହିଥିବେ ସଙ୍ଗେ ନେଇ ଦୁହିତା ଯେ ସୁତ ॥
କୁଳ ସ୍ତ୍ରୀମାନେ ତାଙ୍କ ପତିବ୍ରତା ଛାଡ଼ି ।
ବିଟପ ପୁରୁଷଙ୍କର ସଙ୍ଗେ ଥିବେ ପଡ଼ି ॥
ବ୍ରାହ୍ମଣମାନେ ଏ ଯୁଗେ ହୋଇବେ ଜ୍ଞାନହୀନ ।
ଦେବ ପୂଜା ବାଞ୍ଛ ଯିବେ କରି ମଦ ପାନ ॥
ଏକଜାତି ପରିଯୋଗ ହେବେ ସର୍ବ ଲୋକେ ।
ଏକଠାବରେ ଭୁଞ୍ଜିବେ ବସି ଅବିବେକେ ॥
ଏହିମନ୍ତେ ଥୋକାଏକ ଦିନ ସେ କରିବେ ।
ଶେଷରେ ସମସ୍ତ ଲୋକେ ଏକଜାତି ହେବେ ॥
ଏମନ୍ତେ ଏକଜାତୀୟ ହେବେ ସର୍ବ ନର ।
ଛୁଆଁଛୁଇଁର ବିଚାର ନ ଥିବ କାହାର ॥
ଯେ ଯହିଁ ପାଇବେ ତହିଁ କରିବେ ଭୋଜନ ।
ତହିଁକି ଶୋଚନା କିଛି ନ ଥିବ କା ମନ ॥
ବୈଷ୍ଣବମାନେ ପୁଣି ହେବେ ମାୟାଧାରୀ ।
ନିଶ୍ଚିନ୍ତେ ରହିବେ କୁଳସ୍ତ୍ରୀଙ୍କୁ ଆବୋରି ॥
ଯହିଁ ପୃଥ୍ୱୀରେ ଅସତ ହୋଇଯିବ ପୂର୍ଣ୍ଣି ।
ଦେବତାଏ ଛାଡ଼ିଯିବେ ଆପଣା ଆସ୍ଥାନ ॥
ଗ୍ରାମର ଗ୍ରାମଦେବତା ଯିବେ ଛାଡ଼ିକରି ।
ଦଣ୍ଡୀ ସ୍ତ୍ରୀରେ ରତ ହେବେ ବ୍ରହ୍ମଚାରୀ ॥
ବୈଷ୍ଣବମାନେ ନାନା ବଣିଜାର ହେବେ ।
ବିକା କିଣା ଲାଗି ଦୂରଦେଶେଁ ବୁଲିଥିବେ ॥
ଗୋବିନ୍ଦଙ୍କ ପାଦରେ ନ ଥିବ ତାଙ୍କ ମନ ।
ଧନ ସମ୍ପଦରେ ସେହୁ ହରାଇବେ ଜ୍ଞାନ ॥

ରାଜାମାନେ ସବୁବେଳେ ହୋଇବେ ଅନ୍ୟାୟୀ
ପରଜାମାନଙ୍କଠାରୁ ଧନ ନେବେ ବଳି ॥
ନିରଖ ଜନ ଗୁହାରି କେଭେ ନ ବୁଝିବେ ।
ଅଦୋଷେ ପ୍ରାଣୀମାନଙ୍କୁ ବଡ଼ଦଣ୍ଡ ଦେବେ ॥
ମାତ୍ର ମଲ୍ଲିଏ ଲୁଟିବେ ଲକ୍ଷମାନ ଖାଇ ।
ହାରିଲ ଲୋକେ ଜାଣିଲୁଁ ବୋଲି କରି କହି ॥
ଦେବତା-ବ୍ରାହ୍ମଣଠାରେ ନୋହିବେ ଭକତ ।
ଗ୍ରହପୀଡ଼ାକୁ କେଭେହେଁ ନ କରିବେ ଶାନ୍ତ ॥
ଅଦାତା କୃପଣ ହୀନ ହେବ ତାଙ୍କ ମତ ।
ଧନ ନ ଦେଖିଲେ କେଭେ ନୋହିବେଟି ଶାନ୍ତ
ଦାନ ଧର୍ମ ପୁଣ୍ୟମାନ ନ କରିବେ କେହି ।
ହୋମ ନ କରିବେ ବିପ୍ରେ ବ୍ରାହ୍ମଣ ବୋଲାଇ ॥
ପରଧନ ପରସ୍ତ୍ରୀଅ ଆଣିବେକ ହରି ।
ତେଣୁକରି ଧର୍ମ ନାଶ ଯିବ ଯେ ତାଙ୍କର ॥
ନୃପତି କୁଳ ସକଳ ଭ୍ରଷ୍ଟହୋଇ ଯିବେ ।
ଅସୁରିଆ ଲୋକମାନେ ମୁଲକ ସାଧିବେ ॥
ଦୁର୍ଭିକ୍ଷ ପଡ଼ୁଥିବ ନ ହେବ ଜଳବୃଷ୍ଟି ।
କୃଷିହୀନେ ଲୋକମାନେ ହେବେ ବଡ଼କଷ୍ଟୀ ॥
ବରଷକୁ ବରଷ ଯେ ପଡ଼ିବ କାନ୍ତାର ।
ଗ୍ରାମମାନଙ୍କରେ ପୁଣି ହେବେ ବହୁ ଚୋର ॥
ଗ୍ରାମେ ଗ୍ରାମେ ବହୁତ ଯେ ହେବ ଜ୍ୱରଜର ।
ଭିକ ନ ପାଇବେ ମାଗି ଗଲେକ ଭିକାରି ॥
ଅଦାତା କୃପଣ ପୁଣି ହେବେ ସର୍ବଜନ ।
ଅଧାଏକ ଚାଉଳ ନ ଦେବେ କେଉଁ ଜନ ॥
ମୃତପଣେ ଯେ କରୁବେ ଅବା ବତରଣ ।
ଶୁଣିଲେ ଧାଇଁବେ ତହିଁ ସହସ୍ରେ ବ୍ରାହ୍ମଣ ॥
କାହାକୁ କେତେ ଦେବ ସେ ଅଳ୍ପ ଧନ ତାର
ତାହାକୁ କରିବେ ଯାଇଁ ବହୁ ହରବର ॥
ଏଣୁକରି ତାହାର ଯେ ମନ ଯିବ ଭାଙ୍ଗି ।
କାହାଁକୁ ବା ଦେବ ସେହି ହେବ ବଇରାଗୀ ॥
ତେଣୁକରି ଅଧର୍ମରେ ପୂର୍ଣ୍ଣ ହେବ ମହୀ ।
ଅନ୍ନ ବସ୍ତ୍ରବିନା ନାଶ ହୋଇବେ ନ ପାଇ ॥
ଯେ ଲୋକ ମୁଠାଏ ଭିକ ନିତି ଦେଉଥିବ ।
ଦାତାବୋଲି ତାହାକୁ ଯେ କହୁଥିବେ ସର୍ବ ॥
ଦେଶେ ଦେଶେ ନାମ ଯହିଁ ହୋଇବ ବିଖ୍ୟାତ
ବହୁ ଭିକାରିର ତହିଁ ହେବ ଉତପାତ ॥

ତେଣୁକରି ଭକ୍ତ ସେ ନ ପାରିବେଟି ଦେଇ ।
ଯାହା ଦେଇଥିବେ ତାହା ଆଉ ଦେବେ ନାହିଁ ॥
ଏଣୁକରି ସେ ଲୋକ ଯେ ବିରକତ ହୋଇ ।
ତାହାଲେ ସେ ନ ଶୁଣିବ ଜଡ଼ପ୍ରାୟ ରହି ॥
ଏରୂପେ ସଂସାରେ ଭକ୍ତ ନ ଦେବେଟି କେହି ।
ମରିବେ ଭିକାରିମାନେ ଅନ୍ନକଷ୍ଟ ପାଇ ॥
ଖାତକମାନେ ଯେ ସାହୁଠାରୁ ନେବେ ଧନ ।
କେବେହେଁ ଦେବାକୁ ତାଙ୍କ ନଥିବ ଯେ ମନ ।
ବାନ୍ଧିକରି ସାହୁ ତାଙ୍କ ହଳ ଘେନି ଯିବେ ।
ତେଣୁକରି ସେ ଖାତକେ କୃଷିହୀନ ହେବେ ॥
ପ୍ରତେକରି ନ ଦେବେ କେ ଆଉ ତାକୁ ଧନ ।
ଏମନ୍ତେ ମରିବେ ସେ ଯେ ହୋଇ ଅନ୍ନହୀନ ॥
ସନ୍ଧାକୁ ଯେ ବନ୍ଧା ଦେଲେ ସାଧୁ ଧନ ଦେବେ ।
ମୂଳ କଳନ୍ତରର ଚାରି ଲେଖି ରଖୁଥିବେ ॥
ନୋହିଲେ କାହାକୁ ଯେ ନ ଦେବେ କିଛି ଧନ
ବନ୍ଧାଏକା ସଂସାରରେ ହୋଇବ ପ୍ରଧାନ ॥
ଥିବାଲୋକେ ଖାଇବେ ନଥିବା ଲୋକେ ମରି ।
ତାହାଙ୍କଠାରେ ଦୟା ନ ଥିବଟି କାହାରି ॥
କହୁଛନ୍ତି ଶୁକମୁନି କଳିଯୁଗ ସ୍ଥିତି ।
ନୈମିଷଅରଣ୍ୟେ ସର୍ବ ଯତିଏ ଶୁଣନ୍ତି ॥
ଶୁଣି ବୋଲନ୍ତି ସକଳ ଋଷି ରାମ ରାମ ।
ଏମନ୍ତ ହୋଇବ ଯେବେ କଳିଯୁଗ ଧର୍ମ ॥
କେମନ୍ତେ ବଞ୍ଚିବା ଆମ୍ଭେ ଲାଗେ ବଡ଼ଭୀତି ।
ଏତେବୋଲି ସୁମରିଲେ ଦେଉ ରମାପତି ॥
ହେ ଦୀନବନ୍ଧୁ ବାରେକ କରିବା ଉଦ୍ଧାର ।
ଶୀଘ୍ରେ ଯେମନ୍ତେ ହୋଇଯାଉ କଳିକାଳ ଦୂର ॥
ଶ୍ରୀଗୋବିନ୍ଦଙ୍କ ପାଦେ ଚିତ୍ତକୁ ନିବେଶି ।
ପୁନରପି ପଚାରନ୍ତି ସକଳ ମହର୍ଷି ॥
ସେହି ସାଧୁ ଜନଙ୍କର ପାଦେ ଆଉ ଚିତ୍ତ ।
କହଇ ମାଧବ ତହିଁ ମୁଁ ଶରଣାଗତ ॥
ସାଧୁଜନମାନଙ୍କର ଚରଣର ଧୂଳି ।
ମଣ୍ଡି ହେଉଥାଉ ସଦା ମୋହର ମଉଳି ॥



କୃଷ୍ଣଦାସ ଚରିତ ।

ଭକତଜନ ବୋଇଲ ହୋ ଶୁଣିଲୁକ ମନ ।
ଶୁକମୁନି ଯାହା କହିଲେ କଳିର ବିଧାନ ॥
ଶୁଣି ସକଳ ମହର୍ଷି ହୋଇଲେ ହରଷ ।
ବୋଇଲେ ଧନ୍ୟ ଧନ୍ୟ ହେ ବ୍ୟାସଙ୍କର ଶିଷ୍ୟ ॥
ଧନ୍ୟ ଧନ୍ୟ ତୁମ୍ଭର ଯେ ଗର୍ଭଧାରୀ ମାତ ।
ପୁତ୍ରକୁ ଜାତ କଲେ ବିଧାତା ସଂଜାତ ॥
ଆଗମ ନିଗମ ଆଦି ପୁରାଣ ସମସ୍ତ ।
ସବୁ ବିଷୟ ତୁମ୍ଭଙ୍କୁ ଅଛି ଅବଗତ ॥
ଏହିରୂପେ ବହୁତର ପ୍ରଶଂସାକୁ କଲେ ।
ପୁନରପି କହ ବୋଲି ତାହାଙ୍କୁ ପୁଛିଲେ ॥
ସଂସାରେ କରିବ କେତେ କାଳ କଳିଭୋଗ ।
କେମନ୍ତ ପୁଣି ପ୍ରବେଶ ହେବ ସତ୍ୟଯୁଗ ॥
କେମନ୍ତ କାଳଭୟରୁ ବଞ୍ଚିବାକ ଜନ ।
କହ ମୁନିବର ତୁମ୍ଭେ ପ୍ରସିଦ୍ଧ ବଚନ ॥
କଳିକାଳ କଥା ଶୁଣି ଲାଗୁଅଛି ଡର ।
ନିପୁଣ ଆମ୍ଭଙ୍କୁ ଏହି କରେ ହରବର ॥
ବଦୟନ୍ତି ଶୁକମୁନି ଶୁଣ ସର୍ବ ଋଷି ।
ତୁମ୍ଭେତ ନାମାଗ୍ନି ଜାଳୁଅଛ ଅହର୍ନିଶି ॥
ଗୋବିନ୍ଦ ପାଦରେ ଅଛ ଚିତ୍ତକୁ ନିବେଶି ।
ନାମାବଳି ଗୁଣମାନ ଅନୁକ୍ଷଣ ଘୋଷି ॥
ଏହି କଳିକାଳ ତୁଳା ପର୍ବତ ଅଟଇ ।
ଦହନ ହୋଇବ ନାମ-ଅନଳରେ ସେହି ॥
ଏଥିକୁ ଚିନ୍ତା ତୁମ୍ଭେ ନ କର ସର୍ବଋଷି ।
ଗୋବିନ୍ଦ ନାମ କୀର୍ତ୍ତନ କରୁଥାଅ ବସି ॥
ଶୁଣିଣ ସେ ତପୋଜନେ ହୋଇଲେ ହରଷ ।
କହ ମହାମୁନି ତୁମ୍ଭେ କଳିର ଭବିଷ ॥
ଶୁକମୁନି ବୋଇଲେକ ମିଛ ପରସ୍ପର ।
ମିଛରେ ଆଚଯାଉଟି ହେବ ଏ ସଂସାର ॥
ଗଞ୍ଜାଇ ଅପୁ ମଦରେ ସର୍ବ ନର ନାରୀ ।
ମଗ୍ନହୋଇ ରହିଥିବେ ଦିବସ ଶର୍ବରୀ ॥
ରୂପବତୀ ସ୍ତ୍ରୀଙ୍କୁ ଯେ ଦେଖିଲେ ନୟନ ।
ତହିଁ ଆବଦ୍ଧ ହୋଇବ ପୁରୁଷଙ୍କ ମନ ॥
ଏହିକଥା ଏ ସଂସାରେ ହୋଇବ ବହୁତ ।
ଗୁପତହୋଇ ଯିବଟି ଗୋବିନ୍ଦ ଚରିତ ॥
ବ୍ୟାଧିବନ୍ତ ଓହିଲେ ପୁଚ୍ଛା ନ ବୋଲିବେ ହରି
ମାତା ପିତାଙ୍କୁ ସେମାନେ ବିସର୍ଦ୍ଦି ସୁମରି ॥
କୁଟୁମ୍ବ ପୋଷଣେ ବ୍ୟସ୍ତ ହେବେ ସର୍ବଜନ ।
କେବଳ ସେ କରୁଥିବେ ଚିନ୍ତା ଅନୁକ୍ଷଣ ॥

ଧନ ସମ୍ପତ୍ତି ଥିବେ ନରେ ଅତି ଯତ୍ନକରି ।
ଭୁଲେ ନ ବୋଲିବେ ଥରେ ରାମକୃଷ୍ଣ ହରି ॥
ଜନ୍ତୁବଧର ବିଷୟ ଶୁଣୁଥିବେ କର୍ଣ୍ଣେ ।
ଏକଙ୍କୁ ଆରେକ କହି ତୁଷ୍ଟ ହେବେ ମନେ ॥
କେହି ଜ୍ଞାନୀ ବ୍ରାହ୍ମଣ ବୋଲିଦେଲେ ଉପଦେଶ ।
ବୋଲିବେ ଏହି ବାଉଳା କହୁଅଛି କିସ ॥
କେହି କେବେ ନ ଶୁଣିବେ ଗୋବିନ୍ଦ ପ୍ରସ୍ତାବ ।
ନିର୍ଦ୍ଦୟ ନିଷ୍ଠୁର ହେବ ନରଙ୍କ ସ୍ୱଭାବ ॥
ପଶା ଜୂଆ ଖେଳଠାରେ ଥିବେ ମନଦେଇ ।
କେବେହେଁ ପୁରାଣମାନ ନ ଶୁଣିବେ କେହି ॥
ଯଦି କାମନାରେ କେହି ଶୁଣିବେ ପୁରାଣ ।
ମନ ତୋଷରେ ଦକ୍ଷିଣା ନ ଦେବେଟି ଜାଣ ॥
ଯେତେ ଅତି ଦକ୍ଷିଣା ନଦେଲେ ନାହିଁ ଫଳ ।
ବ୍ରାହ୍ମଣଙ୍କ ଅସନ୍ତୋଷେ ସମସ୍ତ ନିଷ୍ଫଳ ॥
ଏମନ୍ତ ପୁରାଣ ନରେ କର୍ଣ୍ଣପୁଟେ ଶୁଣି ।
ନିନ୍ଦିତ ହୋଇ ଲୋକଙ୍କୁ ବିଦ୍ରୂପ ବଖାଣି ॥
ଟଙ୍କାକେ ମାସେ ଅଣାଏ ହୋଇବ କଳାନ୍ତର ।
ଉଦାସ ଲୋକଙ୍କ ବିତ୍ତ ହରିବେ ଚତୁର ॥
ଦେବା ଦୟାପଦ ପୁଣି ନ ଥିବ କାହାର ।
ମୂର୍ଖମାନଙ୍କୁ କେବେ ନ ମାନିବେ ନାରୀ ॥
ଦଶ ଜଣ ଆଦିଠାରୁ ବଣିଜ ବେପାର ।
ସତ୍ୟ କଥା ଯେ କହିବ ହାନି ହେବ ତାର ॥
ଶୁଣ ଆହେ ସାଧୁଜନେ କଳିଯୁଗ ଗତି ।
କହିଲେ ଶୁକ ଶୁଣିଲେ ସେ ସକଳ ଯତି ॥
କୃଷ୍ଣଦାସ ବୋଲି କରି ଏକ ଶୂଦ୍ର ଥିଲା ।
ଆପଣା ହାତରୁ ଟଙ୍କା ସହସ୍ରେକ ନେଲା ॥
ମଇତ୍ରର ଘରେ ଯାଇ ହେଲା ପରବେଶ ।
ଦେଖିଣ ମଇତ୍ର ବେଗେ ଅଇଲେକ ପାଶ ॥
କୁଶଳ ବାର୍ତ୍ତା ହୋଇଲେ ବସି ପୁଛାପୁଛି ।
ମଇତ୍ରର ନେତ୍ର ଟଙ୍କା ଉପରେ ପଡ଼ିଛି ॥
ବିଚାରେ ସୁଭାଗ୍ୟ ମୋର ମିଳିବ ଏ ଅର୍ଥ ।
ଦେଖିଣ ସଧୀରେ ତାର କହଇ ମଇତ୍ର ॥
ଏକପରିଆ ଘରେ ଅଛି ମୋହର ।
ସହସ୍ରେ ଟଙ୍କା ଥୋଇବି ମୁଁ ତୁମ୍ଭର ଘର ॥
ଯେବେ କାର୍ଯ୍ୟ ପଡ଼ିବ ମୋ ଆସିଣ ନେବି ।
ଏହି ଟଙ୍କା ଘରେ ଆଜ ରଖିଥାଅ ଥୋଇ ॥

ଏତେ ବୋଲି ଟଙ୍କା ତାର ମଇତ୍ରକୁ ଦେଲା ।
ସହସ୍ରେକ ଟଙ୍କା ଅଛି ବୋଲିଣ କହିଲା ॥
ଶୁଣିଣ ମଇତ୍ର ବୋଲେ ଦୁଇଜଣ ଯିବା ।
ମନ୍ଦିରରେ ଗାତ ଖୋଳି ପୋତିଣ ଆସିବା ॥
ତହୁଁ ଦୁଇଜଣ ଯାଇଁ ମନ୍ଦିରରେ ମିଳି ।
ଗରୁଆ ପୋତିଲେ ଗୃହମଧ୍ୟେ ଗାତ ଖୋଳି ॥
ତହିଉତ୍ତାରୁ ଶୂଦ୍ର ତା ଘରକୁ ଚଳିଲା ।
ଭାର୍ଯ୍ୟାକୁ ସେ ସମସ୍ତ ବିଧାନ କହିଲା ॥
ଏହିରୂପରେ କେତେକ ଦିନ ଗତହେଲା ।
ବ୍ୟାଧିମନ୍ତ ହୋଇଣ ସେ କୃଷ୍ଣଦାସ ମଲା ॥
ଅନେକ କାରୁଣ୍ୟ କଲା ତାହାର ଘରଣୀ ।
ଗୁଣମାନ ସୁମରି ସେ କାନ୍ଦେ ପୁଣ ପୁଣି ॥
କୁଳାଗ୍ରରେ ତାର ନାରୀ ପ୍ରେତକାର୍ଯ୍ୟ ସାରି ।
ଏକଇ ପୁତ୍ର ଗୋଟିକ କାଖରେ ସେ ଧରି ॥
ମଇତ୍ର ଘର ପାଶକୁ ଗଲା ଶୀଘ୍ର ହୋଇ ।
ପ୍ରବେଶ ହୋଇଲା ନାରୀ ମିତ୍ରଘରେ ଯାଇଁ ॥
ଦଣ୍ଡେ ମିତ୍ରଘରେ ବସି ହେଲେ ସୁଖ ଦୁଃଖ ।
ଗେରସ୍ତ ମରିଗଲେ ମୋ ମୁଁ ହେଲି ନିରଖ ॥
ଘରେ ଯାହା ଥିଲା ମୋର ବିକାକିଣା କରି ।
ଏଠାକୁ ଅଇଲି ମୁହିଁ ପ୍ରେତକାର୍ଯ୍ୟ ସାରି ॥
ଆମ୍ଭର ଟଙ୍କା ଦେଲେ ମୁଁ ଯିବି ବେଗକରି ।
ତୁମ୍ଭ ମିତ୍ରର ଏ ପୁତ୍ର ମୁହିଁ ଯେ ତୁମ୍ଭର ॥
ଶୁଣି ସେ ମଇତ୍ର କହେ ବଦନ ହଲାଇ ।
କେବେ କିସ ଟଙ୍କା ମୋତେ ଦେଇଅଛୁ ତୁହି ॥
ପୁଣି ଯେବେ କହିଲେ ହାଡ ଦେବି ଦନ୍ତପାଟି ।
ଏତେ ବୋଲି ନୟନରେ ଚାହିଁଲା ତରାଟି ॥
ଶୁଣିକରି ସୁନ୍ଦରୀର ହଂସା ଗଲା ଉଡ଼ି ।
ମୋହଯାଇଁ ଭୂମିରେ ସେ ପଡ଼ି ମୁହାଁ ମାଡ଼ି ॥
ଉଠି ବସି ଚେତଣ ସେ ମୁଣ୍ଡେ କରମାରି ।
ବିକଳେ କାନ୍ଦଇ ନାରୀ କାନ୍ତକୁ ସୁମରି ॥
ଶୁଣିଣ ସେ ନଗ୍ରଲୋକେ ତା ପାଶକୁ ଆସି ।
ପଚାରନ୍ତେ ନାରୀ ତାଙ୍କୁ କହିଲା ବିଶେଷି ॥
ସେ ଲୋକମାନେ ବୋଇଲେ ସତେକ ହୋଇବ ।
ଏ ବୋଇଲା ମିଛ କହେ ଟଙ୍କା ଦେଇ ନାହିଁ ॥
ଏହା ଶୁଣି ସେ ବୋଇଲେ ନାରୀମୁଖ ଚାହିଁ ।
ଅସତ କହି କାହିଁକି ମରୁଛୁ ବୋବାଇ ॥

ଉଗନ୍ତାଲେକତ ଆମ୍ଭ ଆଗେ ନାସ୍ତି କଳ ।
କ ଟଙ୍କା ଦେଇଛୁ ତୁମ୍ଭେ ନ ଜାଣେ ବୋଇଲ ॥
ଯୁବତୀ ବୋଇଲା ମୋର ଏହୁକଥା ସତ ।
ସହସ୍ର ଟଙ୍କା ଥୋଇଛନ୍ତି ସ୍ୱାମୀ ମୋକାନ୍ତ ॥
ଶୁଣିକରି ଟଙ୍କ ଗ୍ରାହୀ ବୋଲେ କର ତମ ।
ତାର ପୁତ୍ର ମୁଣ୍ଡ ଧରି କରୁ ସେ ନିୟମ ॥
ସହସ୍ରେକ ଟଙ୍କା ପଛେ ହାତୁ ଦେଲେ ଦେବ ।
ଏ ନାରୀକି ନିୟମ ମୁଁ ଆଗ କରାଇବ ॥
ଶୁଣିଣ ତରୁଣୀବର ବୋଲେ ଆଗସର ।
ନିୟମ କରିବ ନିଜେ ଆସେଁ ସ୍ନାନକର ॥
ସଭଜନେ ଶୁଣି ନାରୀ କହଇ ବଚନ ।
ତୁମା ଗେରସ୍ତ ଏହାଠାରେ ରଖିଥିଲ ଧନ ॥
ଏହୁ କଥା ଯେବେ ମୁହିଁ କହୁଥିବ ମିଛ ।
ନିଶ୍ଚୟରେ ମରିଯିବ ମୋର ବାଳବତ୍ସ ॥
ଏତେବୋଲି ପୁତ୍ର ର ମୁଣ୍ଡେ ଦେଲା ହସ୍ତ ।
ତତ୍କ୍ଷଣେ ବାଳକ ପଡ଼ ହୋଇଲା ଅଣାୟତ୍ତ ॥
ଦେଖିକରି ସଭଜନେ ହାହାକାର କଲେ ।
ଏତେବଳ ସାହାସୀ ତୁହି ଅଟୁ ଲେ ବୋଇଲେ ॥
ଧିକ ଧିକ ତୋ ଜୀବନ ଅଟେ ଲେ ପାମରୀ ।
ଏହାପରି ପୁତ୍ରକୁ ତୁ ପକାଇଲୁ ମାରି ॥
ଏହି ପୁତ୍ରକୁ ମୋଡ଼ିଲେ ଯୋଡ଼ ବେଗେ ଯାଯା ।
ରାଣ୍ଡି ଆଣ୍ଡୁକୁଡ଼ ଲେ ତୋ ମୁଖେ ନାହିଁ ଲଜ୍ଜା ॥
ପଦାର୍ଥଗ୍ରାହୀର ମନେ ଆନନ୍ଦ ଅପାର ।
ଫୁଟିଲା ପଦ୍ମ ପ୍ରାୟେକ ମୁଖ ଦିଶେ ତାର ॥
ସମସ୍ତଙ୍କର ଧିକ୍କାର ଶୁଣି ସେ କାମିନୀ ।
ତହୁଁ ଚଳିଗଲା କାନ୍ଦେ ତନୟକୁ ଘେନି ॥
ଜାଣନ୍ତେ ଯୋଡ଼ଇ ବସି ଦଇବ ସୁମରି ।
ବୋଲେ କାହାଠାରେ ଆଉ କରିବ ଗୁହାରି ॥
ଧିକ ଏହି ସଂସାର ଯେ ଧିକ ଏହି ଯୁଗ ।
ଆପଣାର ପଦାର୍ଥକୁ ପରକଲା ଭୋଗ ॥
ଧିକ କଳିଯୁଗ ଧର୍ମ ଧିକ ଏ ବିଚାର ।
ସତକଥା କହିବାରୁ ମଲା ମୋ କୁମର ॥
ପୋଡ଼ୁ ପୋଡ଼ୁ କଳିଯୁଗ ପୋଡ଼ୁ ଏ ସଂସାର ।
ଆଉ କିପାଁ ଏ ଶରୀର ରଖିବ ମୋହର ॥
ଅନେକ ପ୍ରକାରେ ସେହୁ ଯୁଗ ନିନ୍ଦାକରି ।
ବୋଲେ ଆହା ଅକାରଣେ ପୁତ୍ର ଗଲା ମରି ॥
ମରିବ ବୋଲି ଫାଶୀ ଲଗାଏ ବନରେ ।
ଜାଣିକରି କଳିଯୁଗ ମିଳିଲେ ସେଠାରେ ॥
ବିକରାଳ ଖଳ ମୁଖ ପ୍ରଚଣ୍ଡ ମୂରତି ।
ଅରୁଣବର୍ଣ୍ଣ ନେତ୍ରକୁ ବୁଲାଇ ତଡ଼ନ୍ତି ॥
ପାଦଶ ସମାନ ଉଚ୍ଚ ଅନୁକ୍ରମେ ମୋଟ ।
ଶିରପରେ ଶୋଭିବନ କନକ ମୁକୁଟ ॥
ପ୍ରଚଣ୍ଡ ମୁଦ୍ଗର କଳ କରେ ଅଛି ଧରି ।
କାହିଁକି କାନ୍ଦୁଛୁ ବୋଲି ନାରୀକି ପଚାରି ॥
କାହିଁକି ଯୁଗକୁ ନିନ୍ଦା କରୁଅଛୁ ତୁହି ।
କହ ବେଗକରି ଏହା ନ ସହଇ ମୁହିଁ ॥
ଶୁଣିଣ ସୁନ୍ଦରୀ ହେଲା ଡରେ ଥରହର ।
ନାକୁସ୍ତେ କହଇ ବାଣୀ ଯୋଡ଼ି ବେନିକର ॥
ଆଦ୍ୟ ପ୍ରାନ୍ତ କରଣ ସେ କହିଲା ସମସ୍ତ ।
ନିୟମ ବିଧାନ ପୁତ୍ର ହୋଇବାର ହତ ॥
ଶୁଣିଣ ସେ କଳିଯୁଗ ବୋଇଲା ଲୋ ଶୁଣ ।
ଏବେ ତୁହି ବାହୁଡ଼ିଣ ଯାଅ ଏହିକ୍ଷଣ ॥
ଯୋଡ଼ିବା ଠାବରୁ ତୋର ପୁତ୍ର ଯିବୁ ଘେନି ।
ବୋଲିବୁ ତୁ ପାଟଣାରିକି ନ ପାରିଲି ଜାଣି ॥
ନ ଜାଣି ନିୟମ ମୁହିଁ କଲି ହୀନ ନାରୀ ।
ତେଣୁକରି ମୋହର ଟି ପୁତ୍ର ଗଲା ମରି ॥
ମୋହର ସ୍ୱାମୀଠାରେ ଅଛି ଦୁଇଟି ଗରିଆ ।
ଦୁଇ ସହସ୍ର ଟଙ୍କା ଯେ ଏହାଠାରେ ଥୁଆ ॥
ଏ କଥା ମିଛ ହୋଇଲେ ନ ଉଠିବ ପୁତ୍ର ।
ସତ ହେଲେ ଉଠିଣ ସେ ବସିବ ତ୍ୱରିତ ॥
ଏହା କହି ଛୁଇଁବୁ ତୁ ନନ୍ଦନର ମାଥ ।
କହିଣ ସେ କଳିଯୁଗ ହେଲେ ଅନ୍ତର୍ହିତ ॥
କଳିର ଆଦେଶ ପାଇ ସେ ସୁନ୍ଦରୀ ଗଲା ।
ବାଳ ଖୋଲି କୁମରକୁ କାନ୍ଧେ ପକାଇଲା ॥
ଗ୍ରହୀତା ସଭମଧ୍ୟକୁ ସେ ସୁନ୍ଦରୀ ଯାଇ ।
ବୋଲେ ଯୋଡ଼ିଏ ଗରିଆ ଅଛି ଏହା ଠାଇଁ ॥
ଏହି କଥା ଯେବେ ସତ ହୋଇବ ମୋ ପୁତ୍ର ।
ଏତେ ବୋଲିଣ ପୁତ୍ରର ମୁଣ୍ଡେ ଦେଲା ହାତ ॥
ତତକ୍ଷଣ ଉଠିଣ ସେ ବସିଲା ନନ୍ଦନ ।
ଦେଖିକରି ସଭଲୋକେ କଲେ ଧନ୍ୟ ଧନ୍ୟ ॥
ଧନଗ୍ରହୀତା ସଙ୍ଗରେ ବହୁ କଲେ ଦ୍ୱନ୍ଦ ।
ତାହାକୁ ବୋଇଲେ ତୁହି ଅଟୁ ବଡ଼ ମନ୍ଦ ॥

ତାର ବେନି ଗଣ୍ଠିଆକୁ ପକା ବେଗେ ଦେଇ ।
ରଖିଦେଲ ବହୁତ ଶାସ୍ତ୍ର ପାଇବୁଟି ତୁହି ॥
ଶୁଣିଣ ଧନଗନ୍ଧାତା ହୋଇଲା ତରସ୍ତ ।
କାହାର ଧରଇ ଗୋଡ଼ କାର ଧରେ ହାତ ॥
ତତ୍କ୍ଷଣେ ଏକ ଗଣ୍ଠିଆ ଟଙ୍କା ଆଣି ଦେଲା ।
ଦେଖିକରି ବ୍ରାହ୍ମଣୀ ଯେ ପଞ୍ଚଙ୍କୁ କହିଲା ॥
ଆଉ ଏକ ଗଣ୍ଠି ଟଙ୍କା ନ ଆଣେ କପାଇଁ ।
ଆପଣ ମାନେ ତା ତହୁଁ ଦିଆଅ କହଇ ॥
ଶୁଣିକରି ପଞ୍ଚମାନେ କହିଲେ ତାହାକୁ ।
ଆର ଗଣ୍ଠି ଟଙ୍କା ଆଣ ପଞ୍ଚଙ୍କ ଛାମୁକୁ ॥
ଗନ୍ଧାତା ଅତି ବ୍ୟାକୁଳ ହୋଇ ତହୁଁ ଗଲା ।
ପଦାର୍ଥମାନ ବିକଣି ଆଉ ଟଙ୍କା ଦେଲା ॥
ବୁଢ଼ୀଗଣ୍ଠି ଟଙ୍କା ଦେଖି ନାରୀ ହେଲା ବୋଧ ।
ମନେ ମନେ କଳିକି ଯେ କରେ ଆଶୀର୍ବାଦ ॥
ମହା ତୃପ୍ତମନା ହୋଇ ତହୁଁ ସେହି ନାରୀ ।
ବୁଢ଼ୀଗଣ୍ଠି ଘେନିଗଲା ତାର ନିଜପୁରୀ ॥
ଏମନ୍ତ ଅଟଇ ହାଦେ କଳିର ଚରିତ ।
ଯେ ସତ କହିବ ତାର ନୋହିବ ଉଦତ ॥
ଜୟ ଦୀନବନ୍ଧୁ ସ୍ୱାମି ଜଗତର ପତି ।
ତୋ ପାଦେ ଏ ମାଧବର ରହିଥାଉ ମତି ॥



ଧର୍ମର ପରାକ୍ରମ ।

ଶୁଣି ସର୍ବ ଋଷିବର ମନରେ ବିସ୍ମୟ ।
କେତେଦିହିଁକ ଦିନେ କଳି ହୋଇବ ଯେ କ୍ଷୟ ॥
ତେତେକାଳ ଆମ୍ଭରତ କିଛି ସୁଖ ନାହିଁ ।
କଳି ଭୋଗ ଆଉ କେତେ ଦିବସ ଅଛଇ ॥
ଯେତେଦିନ ଥିବ ହାଦେ କଳିର ବେଭାର ।
ସାଧୁଜନମାନେ ନିତେଶୁଁ ହେବେ ନାରଖାର ॥
ନିନ୍ଦିତରେ ଆମ୍ଭ ଦିନ ଯେବେ ଯାଏ ସରି ।
ତେବେ ଯେ ବରଷେ ଗଲେ ଦିନକର ପରି ॥
ଯେବେ ଦିନ ମନ୍ଦ ପୁଣି ହେବ ପ୍ରତିଦିନ ।
ତେବେ ଯେ ଦିନକ ହେବ ଯୁଗର ସମାନ ॥
ଅନୁକ୍ଷଣେ ଅଧର୍ମ ହୋ ଯେବେ କରି ଏକା ।
ଏଥିକୁ ଆମ୍ଭର ମନେ ଲାଗୁଥାଏ ଶଙ୍କା ॥
ଶୁଭିବା ଯେ ଶପି ଶପି ପଥତ ଗସଡ଼ା ।
ନ ପୁଣ ଏ କଳିକାଳ ନ ଦିଅଇ ପୀଡ଼ା ॥
ଏ କଳିର କେତେ ଭୋଗ କହ ମହାମୁନି ।
ଆମ୍ଭ ମନ ସ୍ଥିର ହେବ ତୁମ୍ଭ ମୁଖୁ ଶୁଣି ॥
କହୁଛନ୍ତି ଶୁକମୁନି ଶୁଣ ସର୍ବଋଷି ।
ଯେତେବେ ପଚାରିଲ ତୁମ୍ଭେ କହିବା ବିଶେଷି ॥
ଚାରିଲକ୍ଷ ବତିଶ ଯେ ସହସ୍ର ବରଷ ।
ଏତେ ତେ କେ ଏ କଳିଯୁଗ ହୋଇଯିବ ଶେଷ ॥
ତହିଁର ଉତ୍ତରୁ ପୁଣି ସତ୍ୟଯୁଗ ହେବ ।
ସତ ପଟୁଗ୍ରର ହେବ ମିଛ ନାଶଯିବ ॥
ସ୍ୱଧର୍ମରେ ରହିବେ ଯେ ସେ ଯୁଗରେ ନର ।
ଧର୍ମରେ ଆତଯାତ ଯେ ହୋଇବ ସଂସାର ॥
ଶୁଣିକରି ସର୍ବ ଋଷି ବିସ୍ମୟ ବଦନ ।
ବୋଇଲେ ବଞ୍ଚିବା ଆମ୍ଭେ ଅବା କେତେଦିନ ॥
ଚାରିଲକ୍ଷ ବତିଶ ଯେ ସହସ୍ର ବରଷ ।
ଏହା ଶୁଣିଣ ଆମ୍ଭଙ୍କୁ ଲାଗେ ବଡ଼ ତ୍ରାସ ॥
ଶୁକମୁନି ବୋଇଲେ ହେ ଶୁଣ ତପୋବନ୍ତ ।
ଧର୍ମରେ ଧାରଣା ଜାଣ ହେବ ଏ ଜଗତ ॥
ଧର୍ମରେ ଥିବାର ଲୋକ ପୋଡ଼ିବାର ପୂନା ।
ଅଧର୍ମରେ ଥିବାଲୋକେ ହୋଇଯାନ୍ତି ଚୂନା ॥
ଧର୍ମ ଚାରିଯୁଗେ ଦେଖ ଅଟଇଟି ସତ ।
ଅଧର୍ମରେ ଥିବାଲୋକ ଅଳ୍ପେ ହୋଏ ହତ ॥
ଧର୍ମ ରହିଥିଲେ ଯଶ ଆୟୁ ବୃଦ୍ଧି ହୋଇ ।
ଅଧର୍ମରେ ଅର୍ଜିଲେ ସେ ଅଳ୍ପେ ନାଶ ଯାଇ ॥
ଏଥି କଥାଏ କହିବା ମନଦେଇ ଶୁଣ ।
ଦ୍ୱାପରଯୁଗରେ ଥିଲା ଏକଇ ବ୍ରାହ୍ମଣ ॥
ସନ୍ତାନ ନିମନ୍ତେ ସେହି ହରସେବା କରି ।
ତାକୁ ପ୍ରସନ୍ନ ନୋହିଲେ କେଭେ ତ୍ରିପୁରାରି ॥
ବହୁତ ସେବା ପୂଜା ସେ କରେ ନିତି ନିତି ।
ଏକଦିନେ ଈଶ୍ୱରଙ୍କୁ କହିଲେ ପାର୍ବତୀ ॥
ଏ ବ୍ରାହ୍ମଣ ତୁମ୍ଭଙ୍କୁ ତ ବହୁ କରେ ସେବା ।
ପ୍ରସନ୍ନ ହୋଇଣ ତାକୁ ପୁତ୍ର ଦାନ ଦେବା ॥
ଈଶ୍ୱର ବୋଇଲେ ଆଗେ ତାର କର୍ମେ ନାହିଁ
ତେଣୁକରି ତାହାକୁ ମୁଁ ପ୍ରସନ୍ନ ନୁହଇ ॥
ଉମା ବୋଇଲେ ଅକର୍ମୀଦାନୀ ଅଟ ତୁମ୍ଭେ ।
ନ ପାଇବାରୁ ସେବିଲା ତୁମ୍ଭଙ୍କୁ ସେ ଏବେ ॥
କର୍ମରେ ଥିଲେ ତାରତ ହୁଅନ୍ତା ନନ୍ଦନ ।
କାହିଁକି ତୁମ୍ଭଙ୍କୁ ସେବା କରନ୍ତା ବ୍ରାହ୍ମଣ ॥

ପ୍ରତ୍ୟହ ତୁମ୍ଭର ଶିରେ ବେଲପତ୍ର ଦେଇ ।
ତୁମ୍ଭ ଅଙ୍ଗଣା ଖରକେ ଶମନା ନ ହୋଇ ॥
ତାହାକୁ ତୁମ୍ଭେ କେତେ ଯେ ଦେଇଅଛ ବର୍ତ୍ତନ ।
ଏଥିକୁ ସେ ପୁଣି କିଛି ନ ମାଗିଲ ଧନ ॥
ସଂସାର ଜନମନ୍ତେ ସେ ଯେ ମାଗୁଅଛି ସୁତ ।
ତୁମ୍ଭେତ ନ ଶୁଣ ତାହା ବଧିର ସଂଯାତ ॥
ନିତଦିନ ସେବା ପୂଜା କରେ ଯେ ଯାହାକୁ ।
ସେ ଯେବେ ଉପକାର ନ କରଇ ତାହାକୁ ॥
ତାହାର ସେ ଆରଜନ୍ମେ ସେବା ପୁଣ କରି ।
ଆପଣେତ ଭଆଇଛ ଏହା ତ୍ରିପୁରାରି ॥
ନ ପାସୋର ଏବେ ତୁମ୍ଭେ ଯେଉଁ ତାର ସେବା
ପ୍ରସନ୍ନ ହୋଇଣ ତାକୁ ପୁତ୍ରଦାନ ଦେବା ॥
ନୋହିଲେ ନିନ୍ଦା ପାଇବ ଜାଣ ଶୂଳପାଣି ।
କାହିଁକି ସଂସାରେ ସେବା କରିବେ ବା ପ୍ରାଣୀ ॥
ଉଠ ଉଠ ସ୍ୱାମି ଆମ୍ଭେ ବେଗହୋଇ ଯିବା ।
ପ୍ରସନ୍ନ ହୋଇଣ ତାକୁ ପୁତ୍ରଦାନ ଦେବା ॥
ଶୁଣିକରି ସଦାଶିବ ପ୍ରମୋଦିତ ହୋଇ ।
ତ୍ରିଶୂଳ ଭୁଜ ଧରି ବିଜେ କଲେ ଉମାସାଇଁ ॥
ଦେଖିଣ ବ୍ରାହ୍ମଣ ତାଙ୍କ ପାଦତଳେ ପଡ଼ି ।
ଉଠି ଉଭା ହୋଇଲ ସେ ଶିରେ କର ଯୋଡ଼ି ॥
କି ବର ମାଗୁଛୁ ବୋଲି ବୋଇଲେ ଈଶାନ ।
ବ୍ରାହ୍ମଣ ବୋଇଲା ମୋର ନାହିଁନା ସନ୍ତାନ ॥
ଶଙ୍କର ବୋଇଲେ ତୋତେ ଶତପୁତ୍ର ଦେବା ।
ସହସ୍ର ବରଷ ତାଙ୍କ ଆୟୁଷ କରିବା ॥
ନାନା ଉପଦ୍ରବମାନ କରିବେ ସେ ସୁତେ ।
ରାଜଦ୍ୱାରେ ବନ୍ଧାଇବେ ନିଶ୍ଚୟ ସେ ତୋତେ ॥
ସଂସାରେ ବହୁ ଅକର୍ମ ସେ ପୁତ୍ରେ କରିବେ ।
ଆବର ଗୋଟିଏ କଥା ଶୁଣ କହେ ଏବେ ॥
ମନକୁ ଅଇଲେ ତୋତେ ଦେବା ଏକ ସୁତ ।
ଷୋଳ ବରଷରେ ତାର ହେବ ପ୍ରାଣ ହତ ॥
ମହା ପୁଣ୍ୟବନ୍ତ ପାଠ ଶାସ୍ତ୍ର ହେବ ଜ୍ଞାତା ।
ପଚାରିଲେ କହିବ ସେ ତନ୍ତ୍ରପୁର କଥା ॥
ବୃହସ୍ପତିର ସମାନେ ହୋଇବ ପଣ୍ଡିତ ।
ପଚାରିଲେ କହିବ ସେ ଗୂଢ଼ବେଦ ଅର୍ଥ ॥
ଷୋଳବରଷରେ ନିଶ୍ଚେ ହୋଇବ ସେ ନିଧନ ।
ବେନି କଥା କହିଲୁଁ ହୋ ଯେଉଁଣ ତୋର ମନ

ଶୁଣିଣ ବ୍ରାହ୍ମଣ ବୋଲେ ଶୁଣିମା ଗୋସାଇଁ ।
ମୋର ଭାର୍ଯ୍ୟାକୁ ଏ କଥା ପୁଚ୍ଛିଆସେ ଯାଇଁ ॥
ଶୁଣିକରି ଉମା ଶିବ ହେଲେ ହସ ହସ ।
ବୋଇଲେ ତୋ ଘରଣୀକୁ ବେଗେ ପୁଚ୍ଛ ଆସ ॥
ଶୁଣିଣ ବ୍ରାହ୍ମଣ ଅତି ଶୀଘ୍ର ହୋଇ ଗଲା ।
ଶିବ ଯା କହିଲେ ସବୁ ଭାର୍ଯ୍ୟାକୁ କହିଲା ॥
ବ୍ରାହ୍ମଣୀ ବୋଇଲା ଆହେ ଶୁଣ ମୋର ଈଶ ।
ଆମ୍ଭର ଆସି ହୋଇଲା ବୃଦ୍ଧ ଯେ ବୟସ ॥
ଆଉ ଦଶ ବରଷରେ ଆମ୍ଭେ ମରିଯିବା ।
ଦୁଷ୍ଟ ଶତପୁତ୍ର ନେଇ କି ଫଳ ଲଭିବା ॥
ଯେବେ ଏକଗୋଟି ପୁତ୍ର ଗୁଣବନ୍ତ ହୋଇ ।
ସପତପୁରୁଷ ସେହୁ ଉଦ୍ଧାର କରଇ ॥
ମାତା ପିତାଙ୍କର ହେବ ହୃଦୟ ଚନ୍ଦନ ।
ସଂସାର ଲୋକେ ବୋଲିବେ ଦେଖି ଧନ୍ୟ ଧନ୍ୟ ॥
ଦୁଷ୍ଟ ପୁତ୍ରଗଣ ଯେବେ କୁଳେ ଜାତହୋଇ ।
ସଂସାରେ ତାହାକୁ ଭଲ ନ ବୋଲନ୍ତି କେହି ॥
ପାଠ ଶାସ୍ତ୍ର ନ ଜାଣିବେ ଆଉ ଧର୍ମପଥ ।
ଅତିହିଁ ଦାରୁଣ ମୂର୍ଖ ଅତି ଅପଣ୍ଡିତ ॥
ଏମନ୍ତ ଶତପୁତ୍ରଙ୍କୁ ନେବା କି କାରଣ ।
ମାତା ପିତାଙ୍କୁ ସେ ବଡ଼ ହୋଇବ ଦୂଷଣ ॥
ଏମନ୍ତ ସେ ଶତପୁତ୍ରେ ଆମ୍ଭର କି କାର୍ଯ୍ୟ ।
ଇହଲୋକେ ପରଲୋକେ ଉପୁଜିବ ଲାଜ ॥
ଶୂରବନ୍ତ ଗୁଣବନ୍ତ ପୁତ୍ର ଯେବେ ହେବ ।
ଅଳପ ବୟସରେ ସେ ମରି ପଛେ ଯିବ ॥
ଯେବେ ସମସ୍ତେ ବୋଲିବେ ତାକୁ ଧନ୍ୟ ଧନ୍ୟ ।
ତେବେ ସବୁଦିନେ ଜାଇଥିବାର ସମାନ ॥
ଷୋଳବରଷରେ ସେହୁ ମରି ପଛେ ଯାଉ ।
ଗୁଣବନ୍ତ ପୁତ୍ରଗୋଟି ଆମ୍ଭ ଜାତ ହେଉ ॥
ପୁତ୍ରର ଆଗରେ ଆମ୍ଭେ ଯିବା ଯେବେ ମରି ।
ଆମ୍ଭର ଭାଗ୍ୟ ତେବେତ କହିବ କି ପାରି ॥
ଯେବେ ଆମ୍ଭର ଆଗରେ ମରିବ କୁମର ।
ତେବେ ସେହୁ ପ୍ରଶଂସା ଯେ ପାଇବ ଅପାର ।
ସମସ୍ତ ଲୋକ ବୋଲିବେ ଏହାଙ୍କ ନନ୍ଦନ ।
ମରିଯାଇ ସ୍ୱର୍ଗପୁରେ ଅଛି ଧନ୍ୟ ଧନ୍ୟ ॥
ଏମନ୍ତେ ପ୍ରଶଂସାପଦ ପାଇବ ବହୁତ ।
ଈଶ୍ୱରଙ୍କୁ ବର ମାଗ ଗୁଣବନ୍ତ ସୁତ ॥

ତତକ୍ଷଣେ ବ୍ରାହ୍ମଣ ସେ ବେଗେ ଚଳିଗଲା ।
ପାଦେ ପଡ଼ ଉଠି ହାତ ଯୋଡ଼ ଉଭା ହେଲା ॥
ହସି ହସି ବ୍ରାହ୍ମଣଙ୍କୁ ପଚାରିଲେ ହର ।
କିସ କିସ କହିଲା ସେ ଭାରିଯା ତୋହର ॥
ବେଗକରି କହ ବର ଦେବା ତୋତେ ସୁତ ।
ଯେଉଁପରି ତୋର ବାଞ୍ଛା ହେବ ଯେହ୍ନମତ ॥
ଏମନ୍ତ ବୋଲି କହିଲେ ଯହୁଁ ଶୂଳଧର ।
ତହୁଁ ବ୍ରାହ୍ମଣ ବୋଇଲା ଯୋଡ଼ ବେନି କର ।
ଭାରିଯା ମୋର ବୋଇଲା ଗୁଣବନ୍ତ ସୁତ ।
ମାଗ ପ୍ରସନ୍ନ ହୋଇଲେ ଯେବେ ଶୂଳହସ୍ତ ॥
ଅଗୁଣବନ୍ତ ଆମ୍ଭର ଶତପୁତ୍ର ନୋହୁ ।
ଗୁଣବନ୍ତ ଏକଗୋଟି ପୁତ୍ର ଜାତ ହେଉ ॥
ଯେ ପୁତ୍ରର ଗୁଣ ହେବ ଜଗତ୍ରେ ବିଖ୍ୟାତ ।
ଏମନ୍ତ ପୁତ୍ର ଆମ୍ଭଙ୍କୁ ଦିଅ ବିଶ୍ୱନାଥ ॥
ଏମନ୍ତ ବୋଲିଣ ମୋର ବୋଇଲା ଘରଣୀ ।
ଗୁଣବନ୍ତ ପୁତ୍ରଗୋଟି ଦିଅ ଶୂଳପାଣି ॥
ଶୁଣିଣ ସନ୍ତୋଷ ମନ ହୋଇଲେ ତ୍ରିପୁରାରି ।
ବୋଇଲେ କି ଭାଗ୍ୟବତୀ ଅଟଇ ତୋ ନାରୀ ॥
ଯେସନେକ ତୋର ବାଞ୍ଛା ହେଉ ଏକ ପୁତ୍ର ।
ଏମନ୍ତ ବର ଦେଇଣ ଗଲେ ଉମାକାନ୍ତ ॥
ବର ପାଇ ସେ ବ୍ରାହ୍ମଣ ଗଲା ନିଜପୁର ।
ସମସ୍ତ କହିଲା ତାର ଭାରିଯା ଆଗର ॥
ଶୁଣିଣ ବ୍ରାହ୍ମଣୀମନ ହୋଇଲା ହରଷ ।
ଆନନ୍ଦରେ ବେନି ପ୍ରାଣୀ ଶିବେ କଲେ ଆଶ ।
ଏମନ୍ତେ ହୋଇଣ ତହୁଁ କେତେ ଦିନ ଗଲା ।
ବ୍ରାହ୍ମଣ ଘରଣୀର ସେ ଗର୍ଭବାସ ହେଲା ॥
ଦଶମାସ ସମ୍ପୂର୍ଣ୍ଣରେ ପୁତ୍ର ହେଲା ଜାତ ।
ରୂପ ସୌନ୍ଦର୍ଯ୍ୟରେ ତାକୁ ନାହିଁ ତୁଳାଇତ ॥
ଦେଖିକରି ମାତା ପିତା ହେଲେ ଆନନ୍ଦିତ ।
ଚନ୍ଦ୍ର ଉଦୟେ କୁମୁଦ ଯେହ୍ନେ ପ୍ରଫୁଲ୍ଲିତ ॥
ଦିନକୁଦିନ ବର୍ଦ୍ଧିତ ହୋଇଲା ନନ୍ଦନ ।
ଶୁକ୍ଳପକ୍ଷେ ଚନ୍ଦ୍ରମା ବଢଇ ଯେସନ ॥
ସପତ ବରଷରେ ସେ ହେଲା ବିଦ୍ୟାବନ୍ତ ।
ପଢିକରି ଜାଣିଲା ସେ ସର୍ବ ଶାସ୍ତ୍ର ଅର୍ଥ ॥
ଚଉଦିଗେ ବିଖ୍ୟାତ ସେ ହେଲା ନାମ ତାର ।
ଦେଖିବାକୁ ଆସନ୍ତି ଯେ ଭାଗ୍ୟବନ୍ତ ନର ॥
ଧନ୍ୟ ଧନ୍ୟ ବିଦ୍ୟାରେ ସେ ହେଲା ପରିପୂର୍ଣ୍ଣ ।
ଦେଖି ପ୍ରଶଂସା କରନ୍ତି ତାକୁ ସର୍ବଜନ ॥
ଏମନ୍ତ ହୋଇଲା ଆସି ପନ୍ଦର ବରଷ ।
ମାତା ପିତା ଦୁହିଙ୍କର ଉଡ଼ିଲା ସାହସ ॥
ଆଉ ବରଷକେ ଆମ୍ଭ ପୁତ୍ର ମରିଯିବ ।
କି କରିବା ଦେଖାଇଣ ହରିବ ଦଇବ ॥
ଏହାପରି ପୁତ୍ର ଯେବେ ହେବ ପ୍ରାଣ ନାଶ ।
ଆମ୍ଭେ ଖାଇଥାଇ ଆଉ କରିବାଟି କିସ ॥
ଏହି ପୁତ୍ର ଆଗେ ଆମ୍ଭେ ଯେବେ ଯିବା ମରି ।
ତାର ଦେଖନ୍ତେ ଯାଆନ୍ତେ ଏ ସଂସାରୁ ତରି ॥
ବ୍ରାହ୍ମଣୀ ବୋଇଲେ ବିଗ୍ରର କର ଆଉ କିସ ।
ଆମ୍ଭ ଖାଇବାରେ ଆଉ ଫଳ ନାହିଁ ଲେଶ ॥
ଆମ୍ଭେ ମଲେ ଗତି ମୁକ୍ତି କାରଣ କରିବ ।
ପଛେ ତାହାକୁ ଯାହା କରୁ ସେ ଦଇବ ॥
ଆମ୍ଭେ କି ଦେଖି ଅସିବା ଆଉ ତାକୁ ବେଳେ ।
ତାହାର ମରଣ ଆମ୍ଭେ ନ ଦେଖିବା ହେଲେ ॥
ବ୍ରାହ୍ମଣ ବୋଇଲା ତୁହି ଶୁଣ ଗୋ ସଙ୍ଗାତ ।
ବିଷ ଖାଇଣ ହୋଇବା ଯେବେ ପ୍ରାଣେ ହତ ॥
ଆମ୍ଭଙ୍କୁ ଲାଗିବ ନିଶ୍ଚେ ଆତ୍ମହତ୍ୟା ଦୋଷ ।
ଦେହ ଅନ୍ତେ ନରକରେ ହେବ ଆମ୍ଭବାସ ॥
ଅନେକ ଯତନେ ଏହି ପ୍ରାଣ ରଖିଥିବ ।
ଜାଣିକରି ମରିଲେ ଯେ ନର୍କେ ହୁଏ ଠାବ ॥
ପ୍ରାଣିଙ୍କର ପ୍ରାଣ ଛାଡ଼ ଗଲେ ଗୃହଠାରେ ।
ତେବେ ସେହି ଲୋକ ଯାଇ ବସେ ସ୍ୱର୍ଗପୁରେ
ବ୍ରାହ୍ମଣୀ ଯେ ପଚାରଇ କେଉଁ କେଉଁଠାରେ ॥
ମରିଲେ ସ୍ୱର୍ଗେ ବସଇ କହ ମୋ ଆଗରେ ।
ବ୍ରାହ୍ମଣ ବୋଇଲା ତୁହି ଶୁଣ ପ୍ରାଣସହି ।
ପତି ସଙ୍ଗେ ସତୀ ଯେବେ ଅନଳେ ପଶଇ ॥
ତାହାକୁ ବିଷ୍ଣୁଲୋକ ଯେ ହୁଏ ପରାପତ ।
ଆହୁରି କଥାଏ ତୁହି ଶୁଣ ଗୋ ସଙ୍ଗାତ ॥
କ୍ଷତ୍ରିମ୍ଭପଣ କରିଣ ଶସ୍ତ୍ର ଯେବେ ଧରି ।
ଏକମନ ହୋଇ ଯୁଦ୍ଧ କରେ ଆଗସରି ॥
କିଅବା ମାରଇ କିବା ମରେ ପରହାତେ ।
ଏହିପରି ମରିଲେ ସେ ବସେ ସ୍ୱର୍ଗପଥେ ॥
ସ୍ୱର୍ଗରେ ବସଇ ସେହୁ ଦେବତାଙ୍କ କତ ।
ବହୁତ ଦୟା କରନ୍ତି ତାକୁ ସୁରପତି ॥

ବହୁମେଳେ ରହି ଯେଉଁ ଦାନ ପୁଣ୍ୟ କରେ ।
ଏପରି ଲୋକ ମରିଲେ ବସେ ସ୍ୱର୍ଗପୁରେ ॥
ଗଙ୍ଗାରେ ଯେ ଲୋକ ଝାସ ଦେବ ଜାଣିକରି ।
ବାଞ୍ଛାସିଦ୍ଧି ପ୍ରାପତରେ ବସେ ସ୍ୱର୍ଗପୁରୀ ॥
ଶୁଣିଅ ଏସ ବ୍ରାହ୍ମଣୀର କାହିଁ ନ ସ୍ପୁରି ।
ଚିନ୍ତାଭରେ ବେଳପ୍ରାଣୀ ହେଲେ ମଳସରି ॥
ମାତା ପିତାଙ୍କୁ ବଚନ ଯେ ବୋଇଲା କୁମର ।
ଦୁର୍ବଳ ଆହ୍ମଙ୍କ ଦେଖି ତୁମ୍ଭର ଶରୀର ॥
ଏଥିର କାରଣ ତୁମ୍ଭେ ସେହି କହ ମୋତେ ।
ନୋହିଲେ ଅନ୍ନ ଆଜ ନ ଭୁଞ୍ଜିବି କଦାଚିତେ ॥
ଏହା ଶୁଣି ମାତା ପିତା କହିଲେ ବଚନ ।
ଷୋଳବର୍ଷରେ ମରିବୁ ତୁହିରେ ନନ୍ଦନ ॥
ଏବେ ହେଲଣି ତୋ ଦେହରେ ପନ୍ଦର ବରଷ ।
ଆଉ ବରଷେକ ବଳା ଅଛି ତୋ ଆୟୁଷ ॥
ଏଣୁକରି ଚିନ୍ତାରେ ଯେ ଆମ୍ଭ ଦେହ ଛିଡ଼େ ।
ପଶୁ ପ୍ରାଣ ଆମ୍ଭର ନ ଯାଏ କେଉଁ ଛିଡ଼େ ॥
ଶୁଣିକରି ତାହାଙ୍କୁ ସେ ବୋଲଇ କୁମର ।
ଏଥିକୁ ମନରେ କିଛି ଆନ ନ ବିଚାର ॥
ହୋଇବାର କଥା କିକ ଚିନ୍ତା କଲେ ଯାଇ ।
ଯାହାର କର୍ମେ ଯେମନ୍ତ ଲେଖିଅଛି ବିହି ॥
ଚିନ୍ତାକରିବାରେ ଆଉ ନାହିଁ କିଛି କାର୍ଯ୍ୟ ।
ବିପତ୍ତି କାଳରେ ସେବେ ହୋଇବା ଅଧୈର୍ଯ୍ୟ ।
ପୁତ୍ରବାକ୍ୟ ମାତାପିତା ବୋଇଲେ ଏସନ ।
ଧନ ସମ୍ପଦରେ ବାଛୁ ଅଛୁ କି କାରଣ ॥
ତୁମ୍ଭ ପାଇଁଥିଲେ ପିତା ଅଛୁ ଆମ୍ଭ ସବୁ ।
ଏଥିକି ବିକଳ୍ପ ନାହିଁ ଆମ୍ଭମାନେ ବାବୁ ॥
ଏଛାବୋଲି ପୁତ୍ର କରେ ସର୍ବଧନ ଦେଇ ।
ଲେଖିଲେ ହୋଇଲା ଧନ ସହସ୍ର ବାହାରି ॥
ତିନି ଦିନରେ ଭାବରେ ଏକ ଦାନ ଦେଇ ।
ଏମନ୍ତ ଦାତା ନ ଥିବେ ସଂସାରରେ କେହି ॥
ଦାନଗ୍ରାହୀମାନେ ଯାନ୍ତି କରିଣ କଲ୍ୟାଣ ।
ଚିରଞ୍ଜୀବୀ ହୋଇ ତୁହି ବଞ୍ଚିରେ ନନ୍ଦନ ॥
ଦୁଇମାସେ ଦାନ କଲା କୋଟିଏ କାହେଣ ।
ଅନ୍ନ ବସ୍ତ୍ର ଦାନମାନ କେତେ ସେ କରଇ ॥
ଦେଖୁଥିଲେ ଲୋକମାନେ ଅଇଲେ ଅପାର ।
ଏମନ୍ତ ହୋଇଲା ମାସ ଗଲେକ ଏଗାର ॥

ଆଉ ମାସେକ ଅଛଇ ତାହାର ଆୟୁଷ ।
ଏମନ୍ତ ସମୟେ ଆସି ହେଲା ମାଘମାସ ॥
ପୋଖରୀ ଗୋଟିଏ ଥିଲା ଗ୍ରାମର ପ୍ରାନ୍ତର ।
ଉତ୍ତମ କରାଣ ନର୍ତ୍ତା କଲା ବିପ୍ରବର ॥
ଚଉପାଖେ ରଚିଅଛି ଧର୍ମଶାଳାମାନ ।
ବହୁ ଛାମୁଣ୍ଡିଆ କଲା ଯତନେ ରଚନ ॥
ଧାନ୍ୟ ତଣ୍ଡୁଳ ଲବଣ ଆଦି ଘୃତ ଡାଲି ।
ନବାତ ଗୁଡ଼ ସଇଡ଼ ଛେନା ଦୁଧ ଦହି ॥
କମଳା ନାରଙ୍ଗ ଟଭା କଦଳୀ ବହୁତ ।
ସମସ୍ତ ପଦାର୍ଥ ଜର୍ଦ୍ଦା କଲା ବିପ୍ରସୁତ ॥
ଚରଣ୍ଣ ହେବାକୁ ଲୋକ ରଖିଲା ସେ ନେଇ ।
ଯେ ଯାହା ମାଗିବେ ଦେବ ନ କରିବ ନାହିଁ ॥
ସାଧୁ ସନ୍ଥଜନ ଆଉ ତପୀ ବ୍ରହ୍ମଚାରୀ ।
ଯୋଗୀ ସନ୍ନ୍ୟାସୀ ଆବର ଅତିଥ ଭିକାରୀ ॥
ବହୁ ବିପ୍ରଙ୍କୁ ଆଣିଲା କରି ନିମନ୍ତ୍ରଣ ।
ବେଦମନ୍ତ୍ରରେ ଜ୍ଞାତା ଯେ ଅଟନ୍ତି ବ୍ରାହ୍ମଣ ॥
ଯେ ଯାହା ଅନୁରୂପରେ ବସା ସଜ୍ଜା ଦେଇ ।
ରହିଲେ ଯେ ଯାହାରୂପେ ତୁଷ୍ଟମନ ହୋଇ ॥
ହରିଙ୍କ ନାମ କରନ୍ତି ସର୍ବେ ଉଚ୍ଚାରଣ ।
ଭାଗବତକୁ ସର୍ବଦା କରନ୍ତି ପଠନ ॥
ସବୁଙ୍କର ମୁଖେ ଶୁଭେ ହରି ହରି ଧ୍ୱନି ।
ସେ ନାମ ଶବ୍ଦ ପୂରିଛି ଆକାଶ ମେଦିନୀ ॥
ପ୍ରାତଃ କାଳରେ ମକର ସ୍ନାହାନ ସାରନ୍ତି ।
ସ୍ତ୍ରୀନଦବା ଗୋବିନ୍ଦଙ୍କ ପୂଜନ କରନ୍ତି ॥
ଏମନ୍ତେ ସମସ୍ତଙ୍କୁ ସେ ସତ୍କାର କରାଇ ।
ଆପଣେ ବସିଲା ବିପ୍ର ସୁମେନ୍ତ ହୋଇ ॥
ଆଉ ଦୁଇଦିନ ତାର ଅଛଇ ଆୟୁଷ ।
ଦିନ ଦିନ ଦାନପୁଣ୍ୟ କରଇ ବିଶେଷ ॥
ଅନଳରେ ଘୃତ ଦେଲା ବହ୍ନି ପୁରାଣ ।
ତତକ୍ଷଣେ ପ୍ରବେଶିଲେ ସାବିତ୍ରୀରମଣ ॥
ଶିବଙ୍କୁ ଧ୍ୟାଇ ଅଗ୍ନିରେ ଯଜ୍ଞେ ଦେଲା ଘୃତ ।
ବୃଷବାହନେ ଅଇଲେ ହୋଇ ଶୂଳହସ୍ତ ॥
ପୁଣି ହୋମ ଅଗ୍ନିରେ ଘୃତ ଦେଲାକ ସୁମରି ।
ଅଇଲେକ ସୁରଗଣ ଚଢ଼ିଲା ବଜ୍ରଧାରୀ ॥
ଅନ୍ୟ ଆକାଶେ ରହିଲେ ସେ ସକଳ ସୁର ।
ଆଶ୍ଚର୍ଯ୍ୟ ହୋଇଲ ଦେଖି ସବୁଙ୍କୁ ସୁନ୍ଦର ॥

ହିବର୍ଣ୍ଣାଗ ପାଇଣ ତେ ଆଇଲେ ଯମଦେସ୍ତ ।
ତାଙ୍କୁ ନେବାକୁ ଅଇଲେ ଚଣ୍ଡ ଯମଦୂତେ ॥
ଉରଧ ନ ପାରି ଦୂତେ ବାହୁଡ଼ି ଗଲେ ।
ଯମପୁରର ଆଗରେ ସମସ୍ତ କହିଲେ ॥
ଶୁଣିଣ ଯମରାଜ ଯେ କ୍ରୋଧଭର ହୋଇ ।
ଆପଣେ ଅଇଲ ଯମ ମହିଷି ଆରୋହି ॥
କରେ କାଳଦଣ୍ଡ ପୁଣି ମୁଖ ବିକରାଳ ।
ଗଳାରେ ଲମ୍ବିଛି ତାର ମନ୍ଦାରର ମାଳ ॥
ଦେଖିକରି ବିପ୍ର ଯେ କରେ ଜଳ୍ପତ ।
ଏମନ୍ତ ହୋଇଣ ଜଣେ ନ ଥିବ କେ ଖିତି ॥
ଏହି ସମୟରେ ଛୋଟେ ବ୍ରାହ୍ମଣର ସୁତ ।
ଚିରଞ୍ଜୀବ ହୁଅ ବୋଲିଣ ବୋଲେ ଜଗନ୍ନାଥ ॥
ଏମନ୍ତ ବୋଲି କଲ୍ୟାଣ ସର୍ବେ କଲେ ଯହିଁ ।
ଶିବଗଣ ବୋଲନ୍ତି ଯେ ଏହା ହେଉ ହୋଇ ॥
ତତକ୍ଷଣେ ବିଧାତାର ଆଗେ ଜାଣିକରି ।
ବୋଇଲା ଶୁଣିମା ହେଉ ପ୍ରଭୁ ମୋର ଗଉ ॥
ଏହି ବିପ୍ର ପୁତ୍ରର ଯେ ଆଜ ମୃତ୍ୟୁକାଳ ।
ଆପଣମାନେ ଚିରଞ୍ଜୀବୀ ବୋଇଲେ ସକଳ ॥
କେମନ୍ତ କରିଣ ତାଙ୍କୁ ନେବି ଆଜ ମୁହିଁ ।
ତେଣୁକରି ତୁମ୍ଭ ଆଗେ ଏହା କହିଲଇଁ ॥
ଆୟୁଷ ଶେଷ ହୋଇଲେ ମୋର ଅଧିକାର ।
ଆପଣେ ଏ ଆଜ୍ଞା ଦେଇ ଅଛ ବେଦବର ॥
ଶୁଣିକରି ଯମକୁ ଯେ ବୋଇଲେ ଦଇବ ।
ତୁହି ପ୍ରଥମେ ବୋଇଲୁ ହୁଅ ରେ ଚିରଞ୍ଜୀବ ॥
ଆମ୍ଭର ବୋଲ କରିବା ଆମ୍ଭେ କର୍ତ୍ତା ନାସ୍ତି
ସହସ୍ରେ ବରଷ ଯାଏ ଥାଉ ଏହି ବର୍ତ୍ତି ॥
ଏତେକ ଶୁଣିଲେ ଯମ ତୁହି ଯାକୁ ନେବୁ ।
ହିରଣ୍ମୟ ନେ ଉତ୍ତମ ସ୍ୱର୍ଗ ନେଇ ଦେବୁ ॥
ଦେଖ କେମନ୍ତ କରୁଛି ଏହି ବିପ୍ରସୁତ ।
ତେଣୁକରି ତାହାପ୍ରତି ହେଲୁ ତୋଷଚିତ୍ତ ॥
ଯେତେ କର୍ମମାନ ଏହୁ କଲକ ଚାତୁତ ।
ତେଣୁକରି ଧର୍ମେ ତାର ହୋଇଲା ହିତ ॥
ସେହି ପୁତ୍ରକୁ ସହସ୍ରେ ବରଷ ଆୟୁଷ ।
ଆମ୍ଭର ହୃଦଗତେ ଯେ ହେଲା ପରକାଶ ॥
ସହସ୍ରେ ବରଷକୁ ଏ ଆୟୁ ପାଇ ଥାଉ ।
ଅଧର୍ମ ଆଚରିଲେ ଯେ ଅଳ୍ପେ ନାଶ ଯାଉ ॥
ଯେଣୁ ସୁଧର୍ମ ମାର୍ଗରେ ଚଳିଲା କୁମର ।
ତେଣୁକରି ପରମାୟୁ ବୃଦ୍ଧି ହେଲା ତାର ॥
ଏଥିକୁ ବିପ୍ରର ତୁହି କର ଜଳ୍ପପତି ।
ଶୁଣିକରି ନାଶକର ସନ୍ତୋଷିତ ମତି ॥
ଏମନ୍ତ କହି ଚଳିଲେ ଯେ ଯାହା ଭୁବନ ।
କହନ୍ତି ଶୁକ ଧର୍ମର ଏତେବଡ ଗୁଣ ॥
ଷୋଳବରଷକୁ ଦେଖ ସହସ୍ରେ ବରଷ ।
ଧର୍ମ ଆଶ୍ରିତେ ବଢ଼ିଲା ବ୍ରାହ୍ମଣର ଶିଷ ॥
ଚାରିଲକ୍ଷ ବତିଶ ଯେ ସହସ୍ର ବରଷ ।
ତାର ସହସ୍ର ବର୍ଷରେ କଳି ହେବ ଶେଷ ॥
ଦୁଷ୍ଟଙ୍କ ଭାର ନ ସହି ଦେବୀ ବସୁନ୍ଧରୀ ।
ବହୁ ଆୟୁ ଥିଲେ ସୁଧା ଅଳ୍ପେ ଯିବେ ମରି ॥
ଶୁଣିକରି ଆନନ୍ଦିତ ସର୍ବ ମହାଋଷି ।
କହେ ମାଧବ ଉଦ୍ଧର ମୋତେ ବ୍ରହ୍ମଋଷି



## କଳିଯୁଗର କ୍ଷୟ ବିବରଣ ।

ଶୁକମୁନିଙ୍କି ପୁଛନ୍ତି ପୁଣି ଋଷିଗଣ ।
ଏ ଉତ୍ତାରୁ କଳିରେ ଯେ ହେବ କି ଘଟନ ॥
କେତେକାଳ ଗଲେ କଳି ହୋଇବ ଯେ ଶେଷ
କେତେକାଳେ ଆମ୍ଭର ଯେ କଷ୍ଟ ହେବ ନାଶ ॥
ଚାରିଲକ୍ଷ ବତିଶ ଯେ ସହସ୍ର ବରଷ ।
ଏ ମଧ୍ୟେ ଆମ୍ଭର ଆୟୁ କେତେକ ବରଷ ॥
ବଦନ୍ତି ଶୁକ ଶୁଣ ସିଦ୍ଧଋଷିଗଣ ।
ଧର୍ମରେ ବର୍ଜିତ ହୁଏ ପାପେ କ୍ଷୟ ଜାଣ ॥
ଦଶସହସ୍ର ବରଷ ଶେଷେ ନରହରି ।
ନୀଳାଚଳ ତେଜି ପ୍ରଭୁ ଯିବେ ଅପସରି ॥
ପାଞ୍ଚହଜାର ବରଷେ ଗଙ୍ଗା ହେବେ ଲୋପ
ଏହି ସମୟେ କରିବେ ଲୋକେ ବହୁ ପାପ ॥
ଚହୁଡ଼ ଅନ୍ୟାୟମାନ ହୋଇବ ସଂସାରେ ।
ଦେବତାମାନେ କେହି ନ ଥିବେ ପୃଥ୍ୱୀରେ ॥
କେବଳ ପାପମାନ ହୋଇବ ବିଶେଷ ।
ପିତା ଦୁହିତାରେ ଜାତ ହେବ ରତିରସ ॥
ମାତା ସହିତେ କୁମର ପୀରତି କରିବ ।
ଭଉଣୀକି ବଳତ୍କାରେ ଧରି ସେ ହରିବ ॥
ମାଉସି ପିଉସି ଆଉ ଖୁଡ଼ି ମଉଳାଣୀ ।
ଭଣଜା ପୁରୁଷଙ୍କୁ ସେ ଇଚ୍ଛିବେ ରମଣୀ ॥

ବ୍ରହ୍ମଘାତୀ ବାଉର ସଙ୍ଗତରେ ପ୍ରୀତ ।
ଜାତିଜାତକ ଲୋକେ ଯେ ହେବେ ବଡ଼ଜାତ ॥
ମାହାର ଜାତି କୁଳର ଗୋତ୍ର ପର୍ବ ନାହିଁ ।
ସେହୁମାନେ ବଡ଼ ହେବେ ପଣ୍ଡିତ ପନାଇ ॥
ଗୁରୁ ତାଙ୍କୁ କାଟିଣ ହେବେ ବଇଷ୍ଣବ ।
ମନ୍ତ୍ର ଉପଦେଶ ଦେବେ ଯାଇଁ ସର୍ବଠାବ ॥
ଉତ୍ତମଲୋକେ ଯେ ହେବେ ତାଙ୍କୁ ଦଣ୍ଡବତ ।
ପାପକୁ ତାଙ୍କ ମନରେ ନ ଥିବ ଯେ ଭୀତ ॥
ରାମ ଗୋବିନ୍ଦ ବୋଲି ସେ ନ ବୋଲିବେ ତୁଣ୍ଡେ
ଏହୁରୂପେ ବର୍ତ୍ତିଥିବେ ସେ ମୂର୍ଖ ପାଷଣ୍ଡେ ॥
ଗୁରୁ ବୋଲାଇବେ ସେହୁ ଦେଶ ଦେଶ ଯାଇ ।
ଶୁଣିଲ କଥାମାନ ସେ କଳିପ୍ରାୟ କହି ॥
ନୀଚକୁଳ ଲୋକମାନେ ଯେ ଜାତି ଲୁଚାଇବେ ।
ଉତ୍ତମ ଜାତି ଆମ୍ଭେ ବୋଲି କହୁଥିବେ ॥
ଉତ୍ତମ ଜାତିରୁ ସେ ଯେ କନ୍ୟାମାନ ନେଇ ।
କହୁଥିବେ ଲୋକଙ୍କୁ ସେ ଗୁପତ ଫୁଲାଇ ॥
ପାପ ପୁଣ୍ୟକୁ ତାଙ୍କ ନ ଥିବ କିଛି ଭ୍ରାନ୍ତି ।
କହୁଥିବେ ଆମ୍ଭେ ସେ ଯେ ଅଟୁ ଭଲଜାତି ॥
ଥୋଇଲ ସୋଇଲ ଆଣି ଗୃହବାସ ନେବେ ।
ଉତ୍ତମ ଘରର ଝିଅ ଆଣିଲୁଁ ବୋଲିବେ ॥
ଶଏବରଷର ବୃଦ୍ଧା ବଳିତାଙ୍କୁ ଆଣି ।
ଧନଲୋଭରେ କରିବେ ତାହାଙ୍କୁ ଘରଣୀ ॥
ଅଷ୍ଟଲୋହକାରେ ଯେବେ ଧନପତି ହେବେ ।
ସେହୁମାନେ ଉତ୍ତମ ଯେ ଜାତି ବୋଲାଇବେ ॥
ଶ୍ୱଶୁରମାନଙ୍କୁ ଥୋକେ କରି ସହୋଦର ।
ବାସ କରିବେ ଜ୍ୱାଇଁ ଶ୍ୱଶୁର ଗୃହର ॥
ମାତା ପିତା ସୋଦର ଏମାନେ ଦୂର ହେବେ ।
ଶ୍ୱଶୁର ଶଳା ପାଶରେ ଜ୍ୱାଇଁ ରହିବେ ॥
ନୀଚଜାତି ଲୋକମାନେ ଯାଉଥିବେ ମାଡ଼ି ।
ସେମାନେ ବ୍ରାହ୍ମଣଙ୍କୁ ନ ଦେବେ ବାଟ ଛାଡ଼ି ॥
ବ୍ରାହ୍ମଣମାନେ ତାହାଙ୍କୁ ବାଟ ଛାଡ଼ିଦେବେ ।
କହିଲେ ତାହାଙ୍କୁ ସେହୁ କଳି ଆରମ୍ଭିବେ ॥
ପଣ୍ଡିତ ଲୋକମାନଙ୍କୁ ମୂର୍ଖଲୋକମାନେ ।
ନିନ୍ଦା କରୁଥିବେ କେତେ ତମାଲି ବଚନେ ॥
ମହାସତୀମାନଙ୍କୁ ସେ ଦୋଷ୍ଟରଣୀ ନାରୀ ।
ନିନ୍ଦା କରୁଥିବେ କେତେ ମୁହଁଛଟା ମାରି ॥

ମହାସତୀମାନେ ତାଙ୍କ ଆଗେ କିଛି କଥା ।
କହି ନ ପାରିବେ ସେହୁ ନୁଆଁଇବେ ମଥା ॥
ଦୋଷ୍ଟରଣୀ ନାରୀମାନେ କରିଣ ବିଗର ।
କରିବେ କୁଳସ୍ତ୍ରୀଙ୍କି ବଳେ ନାରଖାର ॥
ତେଣୁ କୁଳସ୍ତ୍ରୀମାନେ କୁଳେ ନ ରହିବେ ।
ଦୁଷ୍ଟପୁରୁଷଙ୍କ ସଙ୍ଗେ ସର୍ବଦା ମାତିବେ ॥
ଏହିପରି ବହୁତ ଯେ ହେବ ଉତ୍ପାତ ।
ସଂସାରେ ଅଧର୍ମମାନ ହୋଇବ ବହୁତ ॥
ତେଣୁକରି ପାଇବ ସେ ହରି ବସୁନ୍ଧରୀ ।
ଈଶ୍ୱରଦେବତାଙ୍କୁ ସେ କରିବ ଗୁହାରି ॥
ଆହେ ପ୍ରଭୁ ଦେବଦେବ ଶୁଣ ତ୍ରୈଲୋକ୍ୟନାଥ ।
ମୋହ ମୁଖରୁ ରୁଧିର ବହେ ଅବିରତ ॥
ନିଶ୍ଚୟ ମୁହିଁ ପଶିବି ରସାତଳେ ଯାଇ ।
ଏଥିରୁ ଉଦ୍ଧାର ମୋତେ ପ୍ରଭୁ ଦୟା ବହି ॥
ଆଉ ନ ସହିବ ମୁହିଁ ଏ ଅନ୍ୟାୟମାନ ।
ଏ ସକଳ କଥା ପ୍ରଭୁ ତୁମ୍ଭେ କି ନ ଜାଣ ॥
ଶୁଣିକରି ସଦାଶିବ ପିନାକୀଙ୍କି ଗିରି ।
ବୋଇଲେ ତୁମ୍ଭେ ବ୍ରହ୍ମାଣ୍ଡ ବୁଲି ଏବେ ଯାଅ
ବହୁତର ଉତପାତ ହୋଇଲେ ମନୁଷ୍ୟ ।
ଧର୍ମର ଆଉ କେହି ଯେ ନ ରଖିଲେ ଲେଶ ॥
ତୁମ୍ଭେମାନେ ଥୋକାଏକ କରିଦିଅ ତ୍ରାସ ।
ତେବେ ସେ ବସୁଧାମାତ ହୋଇବ ଉଲ୍ଲାସ ॥
ତା ଦେଖି ନରେ କରିବେ ତପ ହୋମଦାନ ।
ନୋହିଲେ ଦେଶ ବହୁତ ହୋଉଛି ଅଧର୍ମ ॥
ଗ୍ରାମମାନଙ୍କରେ ଜରେ ପ୍ରବେଶ କରିବେ ।
ବ୍ରାହ୍ମଣେ ଭଲ ଭୋଜନ ନାନ ମଦା ଦେବେ ॥
ଯହିଁ ସେ ଧର୍ମର ମତେ ହୋଇବେ ଆୟତ ।
ତେଣୁ ଉଲ୍ଲାସ ହୋଇବ ବସୁନ୍ଧରୀ ମାତ ॥
ଏରୂପେ କଲେ ନରିବା ହୋଇବ ନିବୃତ୍ତ ।
କଥଞ୍ଚିତ ଧର୍ମ ରହିବ ସଭିଙ୍କର ଚିତ୍ତ ॥
କରୁଥିବେ ଦୟା ଧର୍ମ ଆଦି କର୍ମ ଯେତେ ।
ପାଷଣ୍ଡୀ ଦେବତାଙ୍କୁ ନ ମାନିବେ ଯେ ଚିତ୍ତେ
ନାନାଦି ଅକର୍ମମାନ କରିବେ ସେପରି ।
ତେଣୁ ଭୟ ପାଇବ ଯେ ଦେଖି ବସୁନ୍ଧରୀ ॥
ପ୍ରତି ବରଷରେ ନରେ ବହୁ ଯିବେ ନାଶ ।
କୋଟି କୋଟି ହୋଇଣ ଯେ ହେଉଥିବେ ଶେଷ

ଏ ପାପରେ କଳିଯୁଗ ଅଳ୍ପେ ହେବ କ୍ଷୟ ।
କେତେ ଯେ କ୍ଷୟ ହୋଇବ ନୁହଇ ନିଶ୍ଚୟ ॥
ଶତସହସ୍ର ଧାଇଁବ ଯେବେ ଯୁବାସ୍ତ୍ରିରୀ ।
ଶତେକ ଦିବସ ପୁଣି କଳି ଭୋଗ ସରି ॥
ଏ ପାପରେ କଳିଯୁଗ କ୍ଷୟ କେତେ ହେବ ।
ଅଧର୍ମମାନ ଏଥିରେ ବହୁତ ହୋଇବ ॥
ବ୍ରାହ୍ମଣ ଜଣେକ ଯେବେ ହତ ହୋଇଯିବ ।
ଦୁଇଶତଦିନ କଳି ଯୁଗରୁ କଟିବ ॥
ପୁଣି ଗୋଟାଏକ ଗୋରୁ ଯେବେ ବଧହୋଇ ।
କଳିଯୁଗ ତିନିଶତ ଦିନ କ୍ଷୟ ଯାଇ ॥
କାଳେହି ଗର୍ଭିଣୀ ସ୍ତ୍ରିରୀ ଯେବେ ଏକ ମରେ ।
ଚାରିଶତ ଦିବସଟି କଳି ଭୋଗ ସରେ ॥
ବାଳକ ଗୋଟିଏ ପୁଣି ଯେବେ ନାଶ ଯାଇ ।
ତିନିଶଦିବସ କଳି ଯୁଗରୁ ହଟଇ ॥
ଏମନ୍ତେ ମୁଁ ପାପକଥା କହିବଇଁ କେତେ ।
କଳିଯୁଗେ ଏହିରୂପେ ହେବ ନିତ୍ୟେ ନିତ୍ୟେ ॥
ଆହୁରି କ୍ଷୁଦ୍ରପାପ ଯେ କରିବେ ବହୁତ ।
ତେଣୁକରି କଳିଯୁଗ କଷ୍ଟ ହେବ ହତ ॥
ଚନ୍ଦ୍ର ଗ୍ରହଣରେ କଳି ସପ୍ତଦିନ ଯାଏ ।
ସୂର୍ଯ୍ୟପରାଗେ କଳିରୁ ସପ୍ତଦିନ କ୍ଷୟେ ॥
ତିନିଶ ଷାଠିଏ ଦିନେ ହୁଅଇ ବରଷ ।
ବିଶାଶଏ ବର୍ଷ ହେବ ମନୁଷ୍ୟ ଆୟୁଷ ॥
ଅଧର୍ମ ଆଚରଣରେ ଲୋକେ ଯାନ୍ତି ମରି ।
ବହୁ ଅନ୍ୟାୟ କରିବେ ଏହ୍ନେ ନରନାରୀ ॥
ଏମନ୍ତ ଫେଡ଼ି କହିଲେ ସବୁ ଶୁକମୁନି ।
ନୈମିଷା ଅରଣ୍ୟେ ସର୍ବେ ବୋଧ ହେଲେ ଶୁଣି
ଗୋବିନ୍ଦଙ୍କ ଶ୍ରୀଚରଣେ ନିବେଦିଲେ ଚରି ।
ଏ କଳିଯୁଗେ ସହାୟ ହୁଅ ରମାକାନ୍ତ ॥
ଆହେ ସାଧୁଜନେ ସଦା ହରିନାମ ଭଜ ।
ହିଂସା କପଟ ଏ ସବୁ ହୃଦୟରୁ ତେଜ ॥
କାମକ୍ରୋଧ ଲୋଭ ମୋହେ କେଭେ ନୁହ ବନ୍ଧ
ପିଣ୍ଡରୁ ପ୍ରାଣ ଗଲେଟି ଯମ ନେବ ବାନ୍ଧି ॥
ଯାତନା ପଥରେ ପୁଣି ବହୁଦଣ୍ଡ ଅଛି ।
ବହୁଦଣ୍ଡମାନ ଯମ ତହିଁ ଦେବ ବାଛି ॥
ଗୋବିନ୍ଦର ନାମଗୋଟି ଅଟେ ସୁଧାରସ ।
ମୁଖରେ ଉଚ୍ଚାରି ସଦା କର୍ଣ୍ଣେ କର ଗ୍ରାସ ॥

ଏ ନାମ ରସାମୃତେ ନ କର ଲୋଭ ହେଳା ।
ଭବସିନ୍ଧୁକୁ ଅଟଇ ହରିନାମ ଭେଳା ॥
ନ ପାରିଲେ ଦୂରଦେଶ ତୀର୍ଥ ନ ଯା କରି ।
ବସିବା ଠାବରେ ଏକା ଭଜୁଥାଅ ହରି ॥
ଏହି ହୃଦୟରେ ସେହି କରନ୍ତି ବିହାର ।
ଅନ୍ତର୍ଗତେ ଭଜ ଦେଖ ଛନ୍ତି ରମାବର ॥
ନିକଟରେ ପୂରିଛନ୍ତି ଦୂରେ କିପାଁ ଯିବ ।
ସକଳ ଜୀବରେ ବିଜେ ପ୍ରଭୁ ବାସୁଦେବ ॥
ଧ୍ୟାନ ମାର୍ଗରେ ଯେବେ କି ନୟନରେ ଚାହିଁ ।
ଲୀଳାକରନ୍ତି ତ୍ରିକୂଟ ପୁରେ ହବବ୍ରାହ୍ମୀ ॥
ଲକ୍ଷ୍ମୀନାରାୟଣ ପ୍ରଭୁ ଛନ୍ତି ସେହି ପୁରେ ।
ବ୍ରହ୍ମ ରନ୍ଧ୍ରକୁ ଭେଦିଲେ ଦେଖିବ ସେ ଦ୍ୱାରେ ।
ପାଞ୍ଚଗୋଟି ପ୍ରକୃତିକୁ ବାନ୍ଧ ଯତ୍ନ କରି ।
ଏକାଏ ଗମିଲେ ତେବେ ଭେଟିବ ମୁରାରି ॥
ଜନ୍ମ ମରଣରୁ ସେହି ହେବ ସୁଖେ ପାରି ।
ପଙ୍କଜ ଚରଣ ସେହୁ ଥିବ ଆଶ୍ରା କରି ॥
ସୁମନ ବୋଇଲେ ଦେଖିବା ଅଟଇ ଦୁର୍ଗମ ।
ନାମ ଭଜନକୁ ଆଉ କେହି ନୁହେ ସମ ॥
ଭାଗ୍ୟରେ ଥିଲେ ସିନା ହୋ ଦୟାଧର୍ମ କରି ।
ନୋହିଲେ ମୁଖେ ବୋଲୁଣ ଥିବ ରାମହରି ॥
ଏ ଦୁଇରୁ ଏକକଲେ ସୁରଲୋକେ ବାସ ।
ତାର ଦୃଷ୍ଟାନ୍ତରେ ଏକ ହୋଇଛି ପ୍ରକାଶ ॥
ଚକୁଆଣୀ ପକ୍ଷି ଯେ ନ ଛାଡ଼େ ଦୁଇ ମତ ।
ଦିବସେ ଆହାର ଆଦି ରାତ୍ରେ ବିଷ୍ଣୁ ଭକ୍ତ ।
ଏମନ୍ତ ଲୋକ ମାନଙ୍କ ଧନ୍ୟ ଧର୍ମ ପୁଣ୍ୟ ।
ସୁରନଦୀ ଯେସନେକ ସଦା ବହେ ସମ ॥
ଗଙ୍ଗାଜଳ ପ୍ରାୟେ ସେହୁ ଅଟଇ ନିର୍ମଳ ।
ତାହାଙ୍କୁ ଆକର୍ଷଣ ନ କରେ ମାୟା ଜାଲି ॥
ଶୁଣିଣ ସନ୍ତୋଷ ହେଲ ସୁମନ ନୃମଣି ।
ମୁନିଗଣ ମଧ୍ୟ ଯାହା କହିଲେକ ମୁନି ॥
ଶୁଣିକରି ସନ୍ତୋଷ ଯେ ସର୍ବ ମୁନି ହେଲେ ।
ଶୁକମୁନିଙ୍କି ଗୃହିଁଣ ସନକ ପୁଛିଲେ ॥
ହେ ମହାମୁନି ତୁମ୍ଭେତ ବ୍ୟାସଙ୍କର ଶିଷ୍ୟ ।
ତୁମ୍ଭଙ୍କ ସମସ୍ତ କଥା ହେଉଅଛି ଦୃଶ୍ୟ ॥
ଆଗମ ନିଗମ ଅଟେ ଯେବଣ ପୁରାଣ ।
ତୁମ୍ଭକଣ୍ଠେ ବାସକରେ ନୁହଇ ଏ ଆନ ।

ଶୁଣିମୁଁ ଯେ କହିଲ ମୁନି କଳିର ଉଦ୍ଦେଶ ।
କେମନ୍ତ ହୋଇଣ କଳି ହୋଇବ ଯେ ଶେଷ ॥
କେଉଁଜଣ ଜାତି କରିବେ କେତେ ଅଧିକାର ।
କେମନ୍ତ ଧର୍ମରେ ଏହୁ ଚଳିବ ସଂସାର ॥
କେଉଁପରେ କଳିଯୁଗ ହୋଇଯିବ ଦୂର ।
ଶୁଣି ଆମ୍ଭଙ୍କୁ ଲାଗୁଛି ଅତିଶୟ ଡର ॥
କଳିଯୁଗରେ କି କର୍ମ କରିବେ ଆତୁର ।
ଏ ସବୁ ଚରିତ୍ର ମୋତେ କହିବ ବିସ୍ତାର ॥
ଏମନ୍ତ ପୁଚ୍ଛା କରିଲେ ସଉନକ ଯତି ।
ତାଙ୍କ ସଙ୍ଗରେ ସମସ୍ତ ଋଷିଏ ଅଛନ୍ତି ॥
ଶୁଣି କରି ସାଧୁଜନେ ତୋଷ କର ଚିତ୍ତ ।
କହେ ମାଧବ ସୁମରି ପ୍ରଭୁ ଜଗନ୍ନାଥ ॥



ସୋମବଂଶର ଭୋଗବିଷୟ ବର୍ଣ୍ଣନ ।
ଏଥୁଅନ୍ତରେ କହନ୍ତି ବ୍ୟାସଙ୍କ ନନ୍ଦନ ।
ସାବଧାନ ହୋଇ ଶୁଣ ସର୍ବ ତପୋଧନ ॥
କଳିର ଆଦ୍ୟଭୋଗ ଯେ ସୋମବଂଶ କଲେ ।
ଉତ୍ତମ କରିଣ ସେହୁ ପରଜା ପାଳିଲେ ॥
ଏଗାରଶତ ବରଷ କଳି ଭୋଗ କରି ।
ଅଷ୍ଟାଦଶ ପୁରୁଷ ଯେ ହେଲେ ଦଣ୍ଡଧାରୀ ॥
ପରୀକ୍ଷିତଙ୍କର ବଂଶ ଏହିଠାରୁ ଗଲା ।
ଏ ଉତ୍ତାରୁ ଚନ୍ଦ୍ରଦ୍ୟୁମ୍ନ ନାମେ ରାଜା ହେଲା ॥
ତାହାଙ୍କର ବଂଶଲୋକେ ହୋଇଲେ ରାଜନ ।
ଚଉଦ ପୁରୁଷରେ ସେ ହୋଇଗଲେ ଲୀନ ॥
ମଗଧଦେଶରେ ସେହୁ ପୁଣ ହେଲେ ଜାତ ।
ପୁରଞ୍ଜନ ନାମରେ ସେ ହୋଇଲେ ବିଖ୍ୟାତ ॥
ରାଜାପଣେ ଚକ୍ରବର୍ତ୍ତୀ ମହା ପରତାପ ।
ମନ୍ତ୍ରିକି ଦିନେକ ରାଜା କଲା ମହାକୋପ ॥
ସେ ଅପମାନରେ ମନ୍ତ୍ରୀ ରାଜାକୁ ସଂହାରି ।
ତାହାର ପୁତ୍ରକୁ ସେହି କଲା ଦଣ୍ଡଧାରୀ ॥
ସାଥିଁପୁରୁଷେ ତାଙ୍କର ବଂଶ ହେଲା ଶେଷ ।
ତାହାଙ୍କର ଭୋଗ ଶଏ ଷାଠିଏ ବରଷ ॥
ଏହାପରେ ଚନ୍ଦ୍ରଧ୍ୱଜ ହୋଇଲେ ରାଜନ ।
ଦଶପୁରୁଷରେ ସେହୁ ହୋଇଗଲେ ଲୀନ ॥
ତିନିଶ ଷାଠିଏଦିନ ଭୋଗ ସେ କରିଲେ ।
ବିଷ୍ଣୁନାମରେ ରାଜନ ପୁନରପି ହେଲେ ॥
ତରିଶି ପୁରୁଷ ଭୋଗ କରିଲେ ସେ ରାଜା ।
ଛନ୍ଦକାଳ ସୁଖଭୋଗ କଲେ ତା ପରଜା ॥
ଆଠଶତ ଛୟାଶୀ ବର୍ଷ ଭୋଗ କରି ।
ଗୋପାଳ ନାମକ ରାଜା ହେଲେ ମଧୁପୁରୀ ॥
ସାତପୁରୁଷ ସେମାନେ ହୋଇଲେ ନୃପତି ।
ମୂର୍ଖପଣେ ହରାଇଲେ ଆପଣାର ପୃଥ୍ୱୀ ॥
ଶଏ ପତୁରି ବରଷ ସରୁଁ ଭୋଗ ତାର ।
ଏଥିଉତ୍ତାରୁ ହୋଇଲେ ଶମ୍ଭୁ ନୃପବର ॥
ତାଙ୍କର ଦଶପୁରୁଷ ହୋଇଲେ ନୃପତି ।
ଚାରିଶତ ଛୟାଶୀ ବର୍ଷ ଭୋଗ କ୍ଷିତି ॥
ଏ ଉତ୍ତାରୁ ବନନାମେ ହୋଇଲେକ ରାଜା ।
ପୁତ୍ରଙ୍କୁ ଅଧିକ କରି ପାଳିଲେ ପରଜା ॥
ପାଥିଁଶ ତରିଶବର୍ଷ ସେହୁ ଭୋଗ କଲେ ।
ତହିଁ ଉତ୍ତାରୁ ଅନନ୍ତନାମେ ରାଜା ହେଲେ ॥
ଅବନ୍ତିଦେଶରେ ସେହି ପାଇଲେକ ପୂଜା ।
ପାଥିଁପୁରୁଷ ତାଙ୍କର ତହିଁ ହେଲେ ରାଜା ॥
ଏ ଉତ୍ତାରୁ ନନ୍ଦନାମେ ତହିଁ ରାଜା ହେଲା ।
ବହୁତ ଅନ୍ୟାୟରେ ପରଜା ପାଳିଲା ॥
ମ୍ଲେଚ୍ଛାଦି ଆଶ୍ରେରେ ସେହି ରାଜା ହୀନ ହୋଇ ।
ଅଧର୍ମ ଆଚରଣରେ ଭୋଗ କଲା ମହୀ ॥
ଷୋଳପୁରୁଷ କରିଲା ସେହି ରାଜପଣ ।
ଛଅଶବରଷ ପୃଥ୍ୱୀ କରିଲା ପାଳନ ॥
ତହିଁର ଉତ୍ତାରୁ ହିନ୍ଦୁଜାତି ହେଲେ ରାଜା ।
ସ୍ୱଧର୍ମପଣେ କରିଣ ପାଳିଲେ ପରଜା ॥
ଆଶ୍ରେରେ ରହି ପାଳିଲେ ସେହି କଷ୍ଟ ଧର୍ମ ।
ବେଦବାକ୍ୟରେ କରିଲେ ସେହି ସର୍ବ କର୍ମ ॥
ଦଶପୁରୁଷ ସେହି ଯେ ହୋଇଲେ ନୃପତି ।
ସାତଶବରଷ ସେହି ପାଳିଲେକ କ୍ଷିତି ॥
ତୁରୁକ ରାଜ୍ୟ ପାଳିଲେ ଚଉଦ ପୁରୁଷ ।
ମ୍ଲେଚ୍ଛାଦି ଆଶ୍ରେରେ ସେହୁ ଶାସିଲେକ ଦେଶ ॥
ପାଥିଁଶ ବରଷ ଭୋଗ ହୋଇଲା ତାହାଙ୍କର ।
ମରହଟ୍ଟା କରିଲେକ ତହୁଁ ଅଧିକାର ॥
ଆଠପୁରୁଷ କରିଣ ସେହି ମହୀଭୋଗ ।
ତିନିଶ ତରିଶ ବର୍ଷେ ସର୍ବେ ଗଲେ ସ୍ୱର୍ଗ ॥
ସେତେବେଳେ ଏହାଙ୍କର ଭୋଗ ସରିଗଲା ।
ଫିରିଙ୍ଗି ଜାତିଙ୍କ ପୁଣି ଅଧିକାର ହେଲା ॥

ବଚନ ସତ୍ୟ କହି ସେ ଫେରିଙ୍ଗା ପାଳିଲେ ।
ଏକଜାତି ପ୍ରାୟ କରି ସଭିଙ୍କୁ ମଣିଲେ ॥
ଗୋ ଛାଗଳ ମଦ ସେମାନେ କଲେ ଆହାର ।
ପ୍ରକୃତି କରି ସେମାନେ ନ ଘେନିଲେ ଗାର ॥
ଜାତି ଜାତି ଗୋ ଛାଗଳ କେହ୍ନ ବଧ କରି ।
ଭସ୍ମତ ପୃଥ୍ୱୀରେ ସେହୁ ହେବେ ଅଧିକାରୀ ॥
ନୃପତି କରିଣ ସେହ୍ନୁ ନ ରଖିବେ କାହିଁ ।
ଫିରିଙ୍ଗି ବୋଲିଣ ରାଜ୍ୟ ଠମକ ଦଆଇ ॥
ତେରପୁରୁଷ ତାଙ୍କର ମହୀ ଭୋଗ ହେବ ।
ତାଙ୍କର ପ୍ରତଙ୍କ ପୁଣି ସେଠାରୁ ବୁଡ଼ିବ ॥
ଦୁଇଶତ ପଚାଶୋଇ ବର୍ଷ ଭୋଗ ପରେ ।
ରାଜା ହୋଇବେ ପୁନଶ୍ଚ ମୁଗଲ ତହିଁରେ ॥
ଏଗାରପୁରୁଷ ତାଙ୍କ ହେବ ଅଧିକାର ।
ବଳେ ବଳବନ୍ତ ସେହୁ ହେବେ ମହାବୀର ॥
ତିନିଶ ଛପନବର୍ଷ ଭୋଗିବେ ସେ ପୁଣ ।
ତାହାଙ୍କର ଭୋଗ କ୍ଷୟ ହୋଇଯିବ ଜାଣ ॥
କାହାର ଜାତି ଗୋତ୍ର ଯେ ନ ରଖିବ କେହି
ସମସ୍ତ ଜାତି ରହିବେ ଏକାକାର ହୋଇ ॥
ଓଡ଼ିଆ ପଠାଣ ଦୁହେଁ ହୋଇବେ ଯେ ବନ୍ଧୁ ।
ସମସ୍ତ ଏକତ୍ର ହେବେ କାହାକୁ କେ ନିନ୍ଦୁ ॥
ସମସ୍ତଙ୍କ ଆଗର ଯେ ହୋଇବ ଏକହି ।
ସଭିଙ୍କର ଘରେ ସର୍ବେ ଭୁଞ୍ଜିବେ ଯେ ଭାତ ॥
ଝିଅ ପୁଅ ଦଆ ନିଆ ବରଘର ହେବ ।
ଯାହାର ମନକୁ ଯେଉଁ ଜାତି ଯୋଗାଇବ ॥
ନୀଚଜାତି ବୋଲି ଆଉ ନ ବୋଲିବେ କେହି ।
ଛୁଆଁ ଛୁଇଁରେ ବାରଣ ରହିବ ଯେ ନାହିଁ ॥
ଏହାରୁପରେ ତିନିଶ ଛପନ ବରଷ ।
ଭୋଗ ତାହାଙ୍କର ଯହୁଁ ହୋଇଯିବ ଶେଷ ॥
ଦୁଇଭାଇଙ୍କ ମଧ୍ୟରେ ଲାଗିବ ଯେ କଳି ।
ଏକକୁ ଆରେକ ପୁଣି ହୋଇବେକ ମେଳି ॥
ଏମନ୍ତ ହେଇଣ ତହିଁ ଯିବ କେତେଦିନ ।
ଦୁଇଭାଗ କରିଣ ସେ ବାଣ୍ଟିନେବେ ସୈନ୍ୟ ॥
ବହୁତ ଘୋଡ଼ା ହାତୀ ଯେ ବହୁ ସୈନ୍ୟବଳ ।
ଦୁଇଭାଇଙ୍କ ଲାଗିବ ତହିଁ ରଣଗୋଳ ॥
ଷୋଳଶଲକ୍ଷ ଘୋଡ଼ା ଯେ ଦଶଲକ୍ଷ ଗଜ ।
ସତୁରି ଲକ୍ଷ ପାଇକ ଦୁଇଦଳ ସଜ ॥
ଏମନ୍ତେ କରିବେ ଦୁଇ ଦଳ ରଣଗୋଳ ।
ପୃଥିବୀଦେବୀ କମ୍ପିବ ହୋଇ ଟଳ ଟଳ ॥
ଏମନ୍ତେ ଦ୍ୱାଦଶବର୍ଷ ଯାଏ ହେବ ରଣ ।
ପୃଥ୍ୱୀ ହଜିଯିବ ଆଉ ହେବ ରଣଭଣ ॥
ଘୋଡ଼ାଙ୍କର ପାଦଘାତେ ମହୀ ହେବ ନାଶ ।
ବହୁତ ପୀଡ଼ା ପାଇବେ ସକଳ ମନୁଷ୍ୟ ॥
ରୁହି ଭଳି ପଡ଼ିବ ଯେ ହୋଇ କୁଢ଼ କୁଢ଼ ।
ବହୁ ଲୋକଙ୍କର ପ୍ରାଣ ନେବ ଯମଦାଢ଼ ॥
ଦଶ ପାଞ୍ଚ ଗ୍ରାମରେ ଯେ ଲୋକ ଦୁଇ ଚାରି ।
ଏତେକ ରହିବେ ଆଉ ସର୍ବେ ଯିବେ ମରି ॥
ପଶ୍ଚିମଦେଶରେ ଏକା ଥୋକାଏ ରହିବେ ।
ବିଷ୍ଣୁ ଅଂଶେ ଯେତେଲୋକ ଜାତ ହୋଇଥିବେ
ଏହାପରେ ଏକଶତ ବର୍ଷ ଭୋଗ ହେବ ।
ଗଙ୍ଗାନଦୀ ହନୁଦାନ ସ୍ରୋତ ନ ବହିବ ॥
ପୂର୍ବର ଗ୍ରାମମାନତ ନ ହେବ ଗୋଚର ।
ସଂସାରଯାକ ହଜିଣ ହେବ ଜାରଖାର ॥
କୋଶକେ ଦଶକେ ସାତପାଞ୍ଚ ଘର ଥିବେ ।
ଅନ୍ୟଗ୍ରାମମାନ ଯେହ୍ନୁ ବୁଲିଣ ଦେଖିବେ ॥
ଦେଉଳ ମଣ୍ଡପ ଆଉ ଗ୍ରାମମାନ ଚିହ୍ନି ।
ବୋଲିବେ ପୂର୍ବେ ମନୁଷ୍ୟ ଏଥେଁ ଥିଲେ ତିହ୍ନି
ଏଥିଁ ଦେଉଳ ମଣ୍ଡପ ଦେବଗଣ ଥିଲେ ।
ବହୁଲୋକ ରହିଥିଲେ ଏଠି ପୂର୍ବକାଳେ ॥
ପୂର୍ବର ସଁଥିମାନତ ସବ ଅଛି ରହି ।
ନଦୀମାନଙ୍କୁ ସେମାନେ ବୋଲୁଥିବେ ଚିହ୍ନି ॥
ପୂର୍ବକାଳେ ଏ ବାଟରେ ନଦୀ ବହୁଥିଲା ।
ସେ ନଦୀ ପୋତି ହୋଇଣ ଆନ ନଦୀ ହେଲା ॥
ଏହା ପରକାରେ ସପ୍ତବର୍ଷ ବହିଯିବ ।
ସଂସାରଯାକ ପୂରିଣ ରହିବେ ମାନବ ॥
ବାଉନ ଆଙ୍ଗୁଳ ହେବେ ନରମାନେ ଉଚ୍ଚ ।
ବହୁତ ବୃଦ୍ଧି ହୋଇବ ସ୍ୱଭାବ ପ୍ରପଞ୍ଚ ॥
ସପତ ବୟସ କ୍ରମରେ ହେବେ ଯୁବାସ୍ତ୍ରୀ ।
ଆଠବରଷରେ ତାଙ୍କୁ ବନ୍ଧାପନା କରି ॥
ଦଶବର୍ଷେ ହେବ ତାଙ୍କ ପୁଅ ଝିଅ ଜାତ ।
ଏହାପରେ ସଂସାରରେ ହେବ ଆତଯାତ ॥
ଅଷ୍ଟବିଂଶ ବର୍ଷ ତାଙ୍କ ହେବ ପରମାୟୁ ।
ମ୍ଳକମାନଙ୍କୁ ଆଉ ନ କରିବେ କେହୁ ॥

ଧର୍ମଗାଣ୍ଠିମାନ ଭଜ ଯିବଟି ସକଳ ।
ବନ୍ଧ ପୋଖରେ ଆଉ ନ ରହିବ ଜଳ ॥
ଯେଉଁଠାରେ ରହିଥିବ ପୁରୁଷେକ ନାର ।
ତୀର୍ଥବୋଲି କହୁଥିବେ ସେ କାଳରନର ॥
ବେଦପୁରାଣ ଶାସ୍ତ୍ର ଆଦି ଗୁପ୍ତହେବ ।
ତିଥିବାର ନକ୍ଷତ୍ର ଯେ ନ ଜାଣିବେ ସର୍ବ ॥
କାଶୀକ୍ଷେତ୍ରରେ ରହିବେ ବେଦବିଦ୍ୟା ଯେତେ
ଆଗମ ନିଗମ ଶାସ୍ତ୍ର ପୁରାଣ ସହିତେ ॥
ବାରମାସ ସାତବାର ପକ୍ଷ ରାଶି ତିଥି ।
ସତାଇଶ ନକ୍ଷତ୍ର ଯେ ବାରଣ କରନ୍ତି ॥
ପୀଡ଼ାପାଇ ଗ୍ରହଯାଗ ଯାଗ ଶୁଭକର୍ମ ।
ଦେବଶାସ୍ତ୍ର ନିମନ୍ତେ ଯେ ହୋମଯଜ୍ଞଦାନ ॥
ଏ ସମସ୍ତ କାଶୀକ୍ଷେତ୍ରେ ରଖିବେ ଗୁପତେ ।
ଏମାନେ ପ୍ରଚଳ ପୁଣି ହୋଇବେ ଜଗତେ ॥
କାଶୀକ୍ଷେତ୍ର କଳିକାଳ ନ କରିବ ଗ୍ରସ୍ତ ।
ଯହୁଁ ସେହୁ ଭୁବନରେ ବସେ ଶୂଳହସ୍ତ ॥
ଏହାପରେ ଶୁଣି କରି ସନକ ପୁଛନ୍ତି ।
ତହିଁର ଚରିତ୍ର ମୋତେ କହ ମହାଯତି ॥
କାହିଁକି ସେ ଭୁବନରେ କଳି ଅଧିକାର ।
ନ କରିବ ବୋଲି କିପାଁ କହ ମୁନିବର ॥
ତାହା ଶୁଣିଣ କହନ୍ତି ବ୍ୟାସଙ୍କ କୁମର ।
ସବୁକାଳରେ କଳିର ଦୁଷ୍ଟ ବ୍ୟବହାର ॥
ସତ୍ୟ ତ୍ରେତୟା ଦ୍ୱାପର ଆଉ କଳିଯୁଗ ।
ଏମନ୍ତ ଏହି ମେଦନୀ କରେ ଭୋଗାଭୋଗ ॥
ପୂର୍ବେ ଦେଖିଣ ଏମନ୍ତ କଳିର ଆଚାର ।
ତାର ପ୍ରତି କୋପରେ ହୋଇଥିଲେ ହର ॥
କଳିକି ବୋଇଲେ ଆମ୍ଭେ ନିଡ଼ାଇବୁ ତୋତେ
ବହୁତ ଅନ୍ୟାୟ ତୁ କରୁଛୁ ଜଗତେ ॥
ତୋତେ ନାଶି ରଖିବ ମୁଁ ଆଉ ତିନିଯୁଗ ।
ସେ ତିନି କରିବେ ଏହି ମହୀ ଭୋଗାଭୋଗ ॥
ଗୁରୁଲଘୁ ବତିଶ ଯେ ସହସ୍ର ବରଷ ।
ଯେବେ ଭୋଗ କରିବୁ ତୁ ଅକାଳେ ହେବୁ ନାଶ
ତେଣୁ କରି ତୋତେ ମୁହିଁ ପକାଇବ ମାରି ।
ତେବେ ଉଶ୍ୱାସ ପାଇବ ଏହି ବସୁନ୍ଧରୀ ॥
ଶୁଣି କରି କଳିଯୁଗ ହୋଇଲା ତରସ୍ତ ।
ଈଶ୍ୱରଙ୍କ ଚରଣରେ ହୋଇଲା ପ୍ରଣମିତ ॥
ମସ୍ତକେ କରଯୋଡ଼ ସେ କରଇ ବନ୍ଦନା ।
ବୋଇଲା ବିନୟେ ମୋର ଘେନ ପଶୁପତି ॥
ଯାର ଯେମନ୍ତ ସ୍ୱଭାବ ପ୍ରକୃତି ଅଟଇ ।
ମଲାଯାଏ କଦାପି ନ ଛାଡ଼ିବ ସେହି ॥
ଆପଣ ତ ଅଟ ପ୍ରଭୁ ଜଗତ ଈଶ୍ୱର ।
ତୁମ୍ଭଙ୍କୁ ନ ମିଳଇ କି ସୁବର୍ଣ୍ଣର ହାର ॥
ନରଶିର ଗୁଡ଼ାଏକ ଗଳେ ହାର କରି ।
ବସ୍ତ୍ର ନ ମିଳଇ କିମ୍ପେ ହେଲ ଦିଗମ୍ବର ॥
ତୁମ୍ଭଙ୍କୁ କି ନବରତ୍ନ ପୁର ନ ମିଳଇ ।
ଶ୍ମଶାନ ଭୂମିରେ କିପାଁ ବାସ କର ଯାଇ ॥
ନାମିଳେ ତୁମ୍ଭଙ୍କୁ କିବା କର୍ପୂର ଚନ୍ଦନ ।
ଭସ୍ମ କାହିଁକି ଶରୀରେ କରୁଛ ଲେପନ ॥
ରତ୍ନଖଟ ପଲଙ୍କ କି ନ ମିଳଇ ତୋତେ ।
ପଶୁ ଚର୍ମରେ ଶୟନ କରୁ କି ନିମନ୍ତେ ॥
ଗଜ ବାଜି ତୁମ୍ଭଙ୍କୁ କି ଅବା ନ ମିଳଇ ।
ଆପଣେ ବଳେ କରୁଛ ବୃଷଭ ଆରୋହ ॥
ଏହାପରି ସଂସାରରେ ଛନ୍ତି ଯେତେ ପ୍ରାଣୀ ।
କେହି ନ ଛାଡ଼ନ୍ତି ଜାଣ ନିଜ ଗୁଣମାନ ॥
ସତ୍ୟ ତ୍ରେତୟା ଦ୍ୱାପର ଆଉ କଳିଯୁଗ ।
ଏହା ସେ ଆପଣେ ପ୍ରଭୁ ଭିଆଇଛ ଭୋଗ ॥
ମୋର ନାମ କଳିଯୁଗ ଦେଲ ଗଙ୍ଗାଧର ।
ମିଥ୍ୟା ପରଶ୍ୱର କଲ ମୋହର ବେଭାର ॥
ବଡ଼ମାନ ବୁଝିଲେ ମୁଁ ବଡ଼ ଅଟଇ ।
ଅଳପକେ ମୋ ଯୁଗର ଲୋକେ ମୁକ୍ତିପାଇ ॥
ଏବେ ସେ ତିନିଯୁଗଙ୍କୁ ଡକାଇଣ ଆଣ ।
ନ୍ୟାୟ କରିଣ ବୁଝନ୍ତୁ କେହୁ ବଡ଼ସାନ ॥
ଶୁଣିଣ ସେ ସଦାଶିବ ତିନିଯୁଗ ଘେଇ ।
ସେମାନଙ୍କୁ ପୁଚ୍ଛାକଲେ ଦେବ ଉମାସାଇଁ ॥
କୁହ ହେ ତୁମ୍ଭମାନଙ୍କ ଯୁଗର ଆଚାର ।
ସାନବଡ଼ କେହୁ ଆମ୍ଭେ କରିବା ବିଚାର ॥
ସତ୍ୟଯୁଗ ବୋଇଲାକ ମୁଁ ବଡ଼ ଅଟଇ ।
ମୋହର ସାନ ଅଟନ୍ତି ଏହୁ ତିନିଭାଇ ॥
ତ୍ରେତୟା ଯୁଗ ବୋଇଲା ମୁହିଁ ବଡ଼ ଜାଣ ।
ମୋ ତହୁଁ ସାନ ଅଟନ୍ତି ଏହି ତିନିଜଣ ॥
ଦ୍ୱାପର ବୋଇଲା ବଡ଼ ସବୁଠାରୁ ମୁହିଁ ।
ମୋହର ଏହି ଅଟନ୍ତି ସାନ ତିନିଭାଇ ॥

କଳିଯୁଗ ବୋଇଲେ ଶୁଣ ହେ ଦେବଈଶ୍ୱର ।
ଏ ତିନିଙ୍କୁଁ ବଡ଼ ମୁହିଁ ଅଟଇ ନିକର ॥
ଏହା ଶୁଣି ସେମାନଙ୍କୁ ବୋଇଲେ ଈଶାନ ।
ଚାରିହେଁ ବଡ଼ ବୋଲିଲ କିଏ ଅଟ ସାନ ॥
ସତ୍ୟଯୁଗକୁ ଚାହିଁଣ ପଚାରନ୍ତି ହର ।
ଅଧର୍ମ କରଇ ଯେବେ ତୋ ଯୁଗର ନର ॥
ତାକୁ କି ଦଣ୍ଡ କେମନ୍ତ ଦେଉ କହ ଶୁଣା ।
ସତ୍ୟଯୁଗ କହିଲେକ ଶିବ ମୁଖ ଚାହିଁ ॥
ରାଜ୍ୟ ଦେଶଙ୍କରେ ଯେହୁ ଅଧର୍ମ ଆଚରେ ।
ସେ ରାଜ୍ୟଯାକ ବିନାଶ କରେ ମୁଁ ସତ୍ୱରେ ॥
ତ୍ରେତୟା ବୋଇଲେ ଶୁଣିମା ହେଉ ପଶୁପତି ।
ଗ୍ରାମକରେ ଜଣେ ଯେବେ କରଇ ଅନୀତି ॥
ଗ୍ରାମଯାକ ନାଶ ମୁହିଁ କରଇଁ ଅବଶ୍ୟ ।
ଏ କଥା ସତ୍ୟ ମୋହର ଶୁଣ ଦିଗବାସ ॥
ଦ୍ୱାପରଯୁଗ ବୋଇଲା ଶୁଣ ପଶୁପତି ।
ଘରେକେ ଜଣେ ଯେବେ କି କରଇ ଅନୀତି ॥
ସେ ଘରେ ଯେତେକ ଜଣ ଥାଆନ୍ତି ମନୁଷ୍ୟ ।
ସମସ୍ତ କୁଟୁମ୍ବ ତାର କରଇ ବିନାଶ ॥
କଳିଯୁଗ ବୋଇଲେକ ଶୁଣ ଦେବ ହର ।
ଅଧର୍ମ ଆଚରଣଟି କରେ ଯେଉଁ ନର ॥
ତାହାକୁ ଯେ ଏକା ମୁହିଁ କରଇ ବିନାଶ ।
ଏହାପରି କରେଁ ମୁହିଁ ଶୁଣନ୍ତୁ ମହେଶ ॥
ଶୁଣି ମନେ ବିଚାରନ୍ତି ଦେବ ସଦାଶିବ ।
ସବୁଙ୍କୁଁ ବଡ଼ ଅଟଇ କଳିଯୁଗ ଭାବ ॥
ଜଣିକର ଯୋଗେ ରାଜ୍ୟଯାକ ପ୍ରାଣ ହରେ ।
ଏମନ୍ତ ବୁଝାମଣା ଏ ସତ୍ୟଯୁଗ କରେ ॥
ଗ୍ରାମକରେ ଅଧର୍ମଟି କରେ ଜଣେ ଯେବେ ।
ଗ୍ରାମଯାକ ନାଶକରେ ତ୍ରେତାଯୁଗ ତେବେ ॥
ଘରକେ ଜଣେ ଅନ୍ୟାୟ ଯେବେ ଆଚରିଲା ।
କୁଟୁମ୍ବଯାକ ଦ୍ୱାପରଯୁଗ ନାଶ କଲା ॥
ମନକୁ ମୋ ନ ଆସଇ ତୁମ୍ଭ ବୁଝାମଣା ।
କଳିର ବୁଝାମଣାଟି ଅଟଇ ଠିକଣା ॥
ଯେ ଦୋଷ କରଇ ତାକୁ କଳି କରେ ନାଶ ।
ଏଣୁକରି କଳିଯୁଗ ଅଟଇ ବିଶେଷ ॥
ଏମନ୍ତ ବୋଲିଣ ଯହୁଁ ବୋଇଲେକ ହର ।
ଶୁଣିକରି ତିନିଯୁଗ କୋପେ ଥରହର ॥
ବୋଇଲେ କନିଷ୍ଠ ହୋଇ ହେଲୁ ଶ୍ରେଷ୍ଠତର
ପୋଡୁ ପୋଡୁ ତୋର ମୁହଁ ତୋ ବୁଦ୍ଧି ବିଚାର
ଚାରିଲକ୍ଷ ବତିଶ ଯେ ସହସ୍ର ବରଷ ।
ଏତେକେ ତୋହର ଭୋଗ ହୋଇଯିବ ଶେଷ ॥
ଏତେକାଳ ଯେତେଦିନ ହେବ ତୋର ଭୋଗ ।
ପୃଥିବୀଦେବୀ କପାଳେ ଅଛି ଦୁଃଖ ଯୋଗ ॥
ମିଛ ସତ ମିଶାଇଣ କହିବେ ବହୁତ ।
ବୃଦ୍ଧାଙ୍କୁ ବାକ୍ୟ ଜିଣିବେ ତୋ ଯୁଗ ବାଳୁତ ॥
ବୁଦ୍ଧିବଳେ ଆମ୍ଭଙ୍କୁ ତୁ ହରାଇଲୁ ପୁଣି ।
ତେଣୁକରି ବଡ଼ ତୋତେ କଲେ ଶୂଳପାଣି ॥
ବାର ସହସ୍ର ବରଷ ହୋଇବ ତୋ ଭୋଗ ।
ଏ ଉତ୍ତାରୁ ପରବେଶ ହେବ ସତ୍ୟଯୁଗ ॥
ଏତେ ବୋଲି ତିନିଯୁଗ ତହୁଁ ଚଳିଗଲେ ।
କଳିର ମୁଖକୁ ଚାହିଁ ଈଶ୍ୱର ବୋଇଲେ ॥
କାଶୀକ୍ଷେତ୍ରଟି ଅଟଇ ମୋର ନିଜସ୍ଥଳୀ ।
ତହିଁରେ କଳିଯୁଗ ତୁ ନୋହିବୁ ପ୍ରବଳ ॥
ସକଳ ବେଦ ବିଦ୍ୟାଦି ସେହିଠାରେ ଥିବ ।
ତୋ ଭୋଗ ଅନ୍ତେ ସେ ପୁଣ ପ୍ରବଳ ହୋଇବ
ଶୁଣିକରି କଳିଯୁଗ ସନମତ କଲା ।
ଏ ତୋହର ଆଜ୍ଞା ଦେବ ପାଳିବି ବୋଇଲା ।
ଏତେକ କହି ଈଶ୍ୱର କଇଲାସ ଗଲେ ।
ଶଉନକ ଆଗେ ଶୁକ ଏ ସବୁ କହିଲେ ॥
ଶୁଣିକରି ସର୍ବ ମୁନି ହୋଇଲେକ ତୋଷ ।
କହେ ମାଧବ ଉଦ୍ଧର ମୋତେ ପୀତବାସ ॥



## କଳ୍କିଅବତାର ।

ଏଥିଅନ୍ତରେ କହନ୍ତି ମହାମୁନି ଶୁକ ।
ସାବଧାନେ ଶୁଣ ତୁମ୍ଭେ ଆହେ ସଉନକ ॥
ଅନେକ ଅଧର୍ମମାନ କଳିଯୁଗେ ହେବ ।
ସଂସାରରେ ଧର୍ମଭାଗ କିଛି ନ ରହିବ ॥
ପୃଥିବୀଦେବୀ ବହୁତ ପାଇବଟି ତ୍ରାସ ।
ବିକଳେ କାନ୍ଦିବ ହୋଇ ଅତ୍ୟନ୍ତ ଅଧୀରା ॥
ନିର୍ଘାତ ଭୂମିକମ୍ପ ଯେ ହୋଇବ ବହୁତ ।
ସଜ୍ଜନେ ପାଇବେ ଯେ ଦୁଃଖ ଅପ୍ରମିତ ॥
ସୁଜନଜନମାନେ ଯେ ହୋଇବେ କାତର ।
ଆନନ୍ଦରେ ଦୁର୍ଜ୍ଜନଙ୍କ ବଢ଼ିବ ଶରୀରା ॥

ନିର୍ମଳଲୋକଙ୍କ ଧନ ନେବେ ବଳବନ୍ତ ।
ମହନ୍ତଜନମାନେ ଦୁଃଖ ପାଇବେ ବହୁତ ॥
ତାଙ୍କ ଦୁଃଖ ଦେଖି ଦୟା ନ କରିବେ କେହି ।
ଦୁଷ୍ଟଲୋକମାନେ ସର୍ବ ଘେନିବେ ଛଡ଼ାଇ ॥
ଯେହୁ ବଳୀ ହେବ ମନ୍ତ୍ରୀ କରିବ ସେ ଭୋଗ ।
ନିର୍ବଳଲୋକଙ୍କରନ୍ତି ହେବ ମୃତ୍ୟୁଯୋଗ ॥
ଆତ୍ମାର ଉଦ୍ଧାରପାଇଁ ନ କରିବେ ମନ ।
ନିଶି ଦିବସରେ ନରେ ସଞ୍ଚିଥିବେ ଧନ ॥
ଧନ ଅର୍ଜିବେ କେବଳ ଚାତୁରୀ କରି ।
ମୁଖରେ ନ ବୋଲିବେ ସେ ରାମ କୃଷ୍ଣ ହରି ॥
ମାଗନ୍ତା ଜନମାନଙ୍କୁ କରିବେ ନିରାଶ ।
କ୍ଷୁଧାର୍ତ୍ତିଜନଙ୍କୁ ଯେ ନ ଦେବେ ଅନ୍ନଗ୍ରାସ ॥
କୁକର୍ମରେ ରହିବେ ନ କରିବେ ସୁକର୍ମ ।
ପରଜାଏ ହେବେ ମତ୍ତା ରାଜା ହେବ ଯମ ॥
ଯାହାର ଯେ କର୍ମମାନ କେହି ନ ରଖିବେ ।
ଅନାଚାରରେ ସକଳେ ପ୍ରବର୍ତ୍ତି ହୋଇବେ ॥
ନୃତ୍ୟ ଗୀତ ବାଦ୍ୟାଦିରେ ଶ୍ରଦ୍ଧା ସବୁଙ୍କର ।
ଶୁଣିଲେ ସେଠାରେ ଭ୍ରଷ୍ଟ ହେବେ ନର ନାରୀ
ହାସ ପରିହାସମାନ ଖେଳ କଉତୁକ ।
ଏଥିରେ ଶ୍ରଦ୍ଧା କରିବେ ଭଲ ଭଲ ଲୋକ ॥
ବିଷ୍ଣୁଙ୍କ ଚରିତ୍ର ଆଉ ନୋହିବ ବଖାଣ ।
ବ୍ରାହ୍ମଣେ କରିବେ ପୁଣି ଶୂଦ୍ର ଆଚରଣ ॥
ଥାଉଁ ଥାଉଁ ବୋଲିବେ ଯେ କିଛି ନାହିଁ ମୋର
ଦୁର୍ଦ୍ଦଶା କଥା କହିବେ ହୋଇ ଆଗୁଁସାର ॥
ପଣକରପାଇଁ ବିପ୍ରେ ଦାନ ସେ ଘେନିବେ ।
କଉଡ଼ି ପାଇଲେ ସେହୁ ଦୁହିତା ବିକିବେ ॥
ବେଶ୍ୟାମାନେ ଧନବନ୍ତେ କରିବେ ଆଦର ।
କୁଳସ୍ତ୍ରୀଏ ଛାଡ଼ିବେ କୁଳର ଆଚାର ॥
ଯେ ଯାହାର କୁଳଧର୍ମ ନ ରଖିବେ କେହି ।
ଅଧର୍ମରେ ପ୍ରବର୍ତ୍ତିବେ ଧର୍ମ ଛାଡ଼ିଦେଇ ॥
ଆପଣାର ଘରଯାକୁ ନେଇଥିବ ପର ।
ଛଳ ନ ଧରିବ ସେହି ଆପଣା ହୃଦର ॥
ବନ୍ଧୁଭାବରେ ତାହାକୁ କରିବେ ଆଦର ।
ତିଳେ ଲଜ୍ଜା ନ ଥିବନ୍ତି ତାହାଙ୍କ ମୁଖର ॥
ଜାତକଳ ସନ୍ତାନକୁ ହସ୍ତେ ବଧ କରି ।
ବିଧବା ନାରୀମାନେତ କରିବେ ଏମରି ॥

ଧନ ଅରଜିଣ କେବେ ଧର୍ମ ନ କରିବେ ।
ଗୋବିନ୍ଦଙ୍କ ନାମ ପୁଣି କର୍ଣ୍ଣେ ନ ଶୁଣିବେ ॥
ଏମନ୍ତମ୍ଲେଚ୍ଛାଦି କର୍ମ କରିବେ ଜଗତ ।
ଯହିଁ ସେହୁ ଛାଡ଼ିଦେବେ ସର୍ବ ଧର୍ମପଥ ॥
ଭାର ପାଇଣ ବିକଳ ହୋଇବ ଧରଣୀ ।
ପୃଥ୍ୱୀର ବିକଳ ଜାଣି ପ୍ରଭୁ ଚକ୍ରପାଣି ॥
ବାୟୁବେଗଗାମୀ ଅଶ୍ୱ କରି ଆରୋହଣ ।
ଦକ୍ଷିଣ ହସ୍ତରେ ଧରିବ ପ୍ରଚଣ୍ଡ କୃପାଣ ॥
ତାମସଗୁଣ ଘେନିଣ ଯେତେକ ଭକତ ।
ପ୍ରଭୁଙ୍କ ହସ୍ତେ ସେମାନେ ହୋଇବେ ନିହତ ॥
ମାୟା ନ ଥିବନ୍ତି ଯେଉଁ ଜନ ହୃଦୟରେ ।
ସେହି ଜୀଇବେ ମରିବେ ଆଉ ସର୍ବ ଦରେ ॥
ବିଷ୍ଣୁର ଅଂଶରେ ଯେତେ ବାଳକ ବାଳିକା ।
ଦୁଷ୍ଟଙ୍କୁ ସଂହାରି ତାଙ୍କ ରଖିବେ ଏକା ॥
ଏମନ୍ତେଣ ସତ୍ୟଯୁଗ ହୋଇବ ପ୍ରଚାର ।
ମିଥ୍ୟା ନ କହିବେ ଆଉ ସେହିଠାରୁ ନର ॥
ଛନ୍ଦ ମନ୍ଦ ଦ୍ୱନ୍ଦ୍ୱ ନାହିଁ କୁଟିଳ ସ୍ୱଭାବ ।
ପରଧନ ପରସ୍ତ୍ରୀରେ ହୋଇବେ ନିର୍ଲୋଭ ॥
ପରହିଂସା ତେଜିକରି ଧର୍ମେ ରଖି ଆଶ ।
କରିବେ ଧର୍ମକାର୍ଯ୍ୟ ସକଳେ ବିଶ୍ୱାସ ॥
ଗୋ ବ୍ରାହ୍ମଣ ଅତିଥିଙ୍କୁ କରିବେ ପୂଜା ।
ରାଜାଏ ପୁତ୍ରସମାନ ପାଳିବେ ପରଜା ॥
ବେଦବାକ୍ୟରେ କରିବେ ସର୍ବେ ଯଥାକର୍ମ ।
ବ୍ରହ୍ମ ଶାସ୍ତ୍ରର ନିୟମେ କରିବେ ଯେ ହୋମ ॥
ବିଷ୍ଣୁ ପୁରାଣ ଚରିତ୍ର କର୍ଣ୍ଣପଥେ ଶୁଣି ।
ସମସ୍ତେ ଧ୍ୟାନେ ରହିବେ ଦେବ ଚକ୍ରପାଣି ॥
ଅଦାତା କୃପଣ କେହି ଏ ଯୁଗେ ନୋହିବେ ।
ସତ୍ୟ ସର୍ବଦା କହିଣ ମିଥ୍ୟାକୁ ଛାଡ଼ିବେ ॥
ପରପୁରୁଷରେ କେବେ ନମିବ ରେ ପ୍ରୀତି ।
ଗେରସ୍ତକୁ ପତିବ୍ରତାମାନେ ସେବା କରି ॥
କ୍ଷତ୍ରିୟମାନେ ରଣରେ ନୋହିବେ ନିବୃତ ।
ମାଇଲେ ଯଶ ମରିଲେ ମିଳେ ସ୍ୱର୍ଗପଥ ॥
ଇନ୍ଦ୍ର ବରଷା କରିବେ ଯେ ବେଳକାଳ ଜାଣି ।
ବହୁତ କୃଷି ହୋଇବ ସୁଖୀ ହେବେ ପ୍ରାଣୀ ॥
ଅନ୍ନକଷ୍ଟ ବୋଲି ଆଉ ନ ଥିବ କାହାର ।
ସର୍ବଦା ଧର୍ମ ଆଚରନ୍ତି କେବେ ନରନାରୀ ॥

ତେଣୁକରି ଅଧର୍ମ ଯେ ନ କରିବ ଗ୍ରାସ ।
ଲକ୍ଷେକ ବରଷଯାଏ ବଞ୍ଚିବେ ମନୁଷ୍ୟ ॥
କଲ୍ୟାବୋଲି ମନରେ ଯେ ନ ଥିବ କାହାର ।
ଘୃଣରେ ଧନ କାଢ଼ିବେ ସର୍ବ ନର ନାରୀ ॥
ବ୍ରାହ୍ମଣମାନେ କରିବେ ଯଥାତଥା କର୍ମ ।
ଅଗ୍ନିରେ ହୋମ କରିଣ ହରଷିବେ ମନ ॥
ତ୍ରିସନ୍ଧ୍ୟା କରିବେ ବିପ୍ର ବେଳକାଳ ଜାଣି ।
ଇଷ୍ଟରେ ଜଳ ନ ଦେଇ ନ ପିଇବେ ପାଣି ॥
ବେଦମନ୍ତ୍ରରେ ଜ୍ଞାତା ଯେ ହୋଇବେ ବ୍ରାହ୍ମଣ ।
ସେ ଯାହା କହିବେ ତାହା ଘଟିବ ପ୍ରମାଣ ॥
ତେବେ ସେହି ବ୍ରାହ୍ମଣରେ ବାକ୍ୟ ହେବ ସିଦ୍ଧି ।
ନିତ୍ୟକର୍ମ କରି ଯେହୁଁ ହୋଇବେ ସତ୍ୟବାଦୀ ॥
ନିଜକର୍ମରେ ରହିଲେ ସର୍ବେ ହେବେ ସୁଖୀ ।
ତେବେ ଧର୍ମ୍ମ କରିବେ ତାଙ୍କୁ ଅଷ୍ଟଆଖି ॥
ଯେ ଯାହାର କୁଳଧର୍ମ କରିବେ ଆଦର ।
ତେଣୁ ସ୍ୱର୍ଗରେ ରହିବେ ଜାଣ ସର୍ବନର ॥
ଅଧର୍ମରେ [illegible] କେହୁ ନ ମଜାଇ କାହିଁ ।
ସେ ଲୋକର ମୁକ୍ତିମାର୍ଗ ଯମ ଦେବ ରୋକି ॥
ଧର୍ମରେ ସଂସାର ଲୋକେ ହୁଏ ଆତଯାତ ।
ଈଶ୍ୱରପୁରେ ଦେଖ ଧର୍ମ ଅଛଇଟି ସତ ॥
ଧର୍ମେ ସ୍ୱର୍ଗଶିରୀ ପାଇ ଅଧର୍ମରେ ଦୁଃଖ ।
ଇହ ପରଲୋକେ ତାକୁ କାହିଁ ନାହିଁ ସୁଖ ॥
ଅଧର୍ମର ପ୍ରାଣୀକି ନ ସହେ ବସୁନ୍ଧରା ।
ସେ ଲୋକଙ୍କୁ ଦୟା କେବେ ନ କରନ୍ତି ହରି ॥
ନାରାୟଣ ନ କରନ୍ତି ତାହାପ୍ରତି ଦୟା ।
ବୃଥା ଜନ୍ମ ତାହାର ଅକାରଣ କାୟା ॥
ଏହି ସକଳ ଚରିତ୍ର ନୈମିଷ ଅରଣ୍ୟ ।
କହୁଛନ୍ତି ଶୁକ ସର୍ବ ଋଷି ସନ୍ନିଧାନେ ॥
ସୌନକ ମୁନି ଆଦିଏ ଶୁଣି କୃତକୃତ ।
ଭବିଷ୍ୟ ପୁରାଣ ଏହା କହିଲେ ଯା ମତ ॥
ସେହି ସାଧୁଜନଙ୍କର ଚରଣେ ଶରଣ ।
କହେ ମାଧବ ଉଦ୍ଧର ମୋତେ ନାରାୟଣ ॥
ଏହି କଳିଯୁଗ କଥା ଅଟେ ଅକଳିତ ।
[illegible] ଯାହା ବ୍ୟାସସୁତ ॥
[illegible] ମୁହିଁ କଲି ଗୀତଯୋଗେ ।
[illegible] କୃପା ଅନୁରାଗେ ॥

ସକଳ ହୃଦୟ ମଧ୍ୟେ ଦେଖେ ନାରାୟଣ ।
ସେ ଯାହା କରନ୍ତି ତାହା ଅଟଇ ପ୍ରମାଣ ॥
ସେହି ମହାପ୍ରଭୁ ମୋତେ କୃପା କଲେ ଯାହା ।
ତେଣୁକରି ଗୀତଯୋଗେ ଲେଖିଲି ମୁଁ ତାହା ॥
ଶ୍ରୀ ଶ୍ରୀ ନାରାୟଣଙ୍କର ଅଭୟ ଚରଣ ।
ମାଧବଦାସ ନିରତେ ପଶିଲା ଶରଣ ॥
ଆହେ ସାଧୁଜନେ ଏହି ପୁରାଣକୁ ଶୁଣି ।
ସନ୍ତୋଷେ ଦକ୍ଷିଣା ଦେବ ବ୍ରାହ୍ମଣକୁ ଆଣି ॥
ଶକ୍ୟ ଅନୁକ୍ରମେ କିଛି ତୋଷମନେ ଦେବ ।
ନୋହିଲେ ଶ୍ରୋତାମାନଙ୍କ ବଡ଼ ଦୋଷ ହେବ
ଦେବାବିଷୟେ କୁଣ୍ଠିତ ନ ହୋଇବେ କେହି ।
ଦେଇଥିଲେ ପାଇ ଏହା ସର୍ବଶାସ୍ତ୍ରେ କହି ॥
କେତେକ ଲୋକ ଅଛନ୍ତି ଏ ଭବସାଗରେ ।
ଦକ୍ଷିଣା ଦେବା ସମୟେ ନ ଆସନ୍ତି ଘରେ ॥
ଶୁଣିଲାବେଳେ ଭେଦିବେ ବ୍ରହ୍ମାଣ୍ଡଯାଏ ।
ଦେଲାବେଳେ ଗଳିଯିବେ ନ ଦେଇ କଉଡ଼ାଏ ॥
ଦକ୍ଷିଣା ନ ଦେଲେ ବିପ୍ର ହୁଅନ୍ତି ଅସନ୍ତୋଷ ।
ମାଗେ ପଣେ ନିଶ୍ଚେ ଦେବ ଶାସ୍ତ୍ର ହେଲେ ଶେଷ
ଏଥିକି ବିଚାରକରି ଶୁଣିବ ପୁରାଣ ।
ବହୁତ କଷ୍ଟ ପାଉଣ ପଢ଼ଇ ବ୍ରାହ୍ମଣ ॥
ଶୁଣ ହେ ସୁଜନେ ମୋର ପକ୍ଷପାତ୍ର ନାହିଁ ।
ଏହା ଶୁଣାଇଲି ମୁହିଁ ତୁମ୍ଭ ହିତପାଇଁ ॥
ଏ ପୁରାଣ ଶୁଣିଲେଟି ଶାନ୍ତ ହେବ ମନ ।
କରିବାକୁ ଇଚ୍ଛାହେବ ସତତ ଧରମ ॥
ବିଷ୍ଣୁଙ୍କର ଚରିତ୍ର ଏ ଶ୍ରୀ ମୋକ୍ଷପୁରାଣ ।
ଶୁଣିଲେ ଧନ ସନ୍ତାନ ବୃଦ୍ଧି ହେବ ଜାଣ ॥
ଅନେକ ଅରିଷ୍ଟମାନ ତାର କ୍ଷୟ ଯିବ ।
ଏକମନ ହୋଇ ଯେବେ ଏହାକୁ ଶୁଣିବ ॥
ମାତୃହରଣ ଯେ ସୁରାପାନାଦି ପାତକ ।
ଗୋହତ୍ୟା ବ୍ରହ୍ମହତ୍ୟାଦି କୃତଘ୍ନ ଯେତେକ ॥
ଏକମନ ହୋଇ ଯେବେ ଶୁଣ ଏ ପୁରାଣ ।
ଏତେକ ପାତକ ନାଶି ଯିବ ସ୍ୱର୍ଗେ ଜାଣ ॥
କହେ ମାଧବ ଶ୍ରୀକୃଷ୍ଣ ଗୁଣର ସମ୍ବାଦ ।
ଆଠହଜାର ଦୁଇଶ ପଞ୍ଚାଶ ଏ ପଦ ॥
ସଂଖ୍ୟା କରିବାରେ ଯାକୁ ଏତେପଦ ହେଲା ।
ମୋକ୍ଷପୁରାଣ ଏତେକେ ସମ୍ପୂର୍ଣ୍ଣ ହୋଇଲା ॥

→ ସମ୍ପୂର୍ଣ୍ଣ । ←



Printed by Nityananda Sahoo Arunodaya Press Cuttack